# ଉତ୍କଳ ସଂଗୀତ ପଦ୍ଧତି

ସାମନ୍ତ ଶ୍ୟାମସୁନ୍ଦର ଧୀର



ଓଡିଶା ସଂଗୀତ ନାଟକ ଏକାଡେମୀ
ଭୁବନେଶ୍ୱର - ୭୫୧୦୧୪

# ଉତ୍କଳ ସଂଗୀତ ପଦ୍ଧତି

ସାମନ୍ତ ଶ୍ୟାମସୁନ୍ଦର ଧୀର



ଓଡିଶା ସଂଗୀତ ନାଟକ ଏକାଡେମୀ
ଭୁବନେଶ୍ୱର - ୭୫୧୦୧୪

# ଉତ୍କଳ ସଂଗୀତ ପଦ୍ଧତି

ଓଡିଶା ସଂଗୀତ ନାଟକ ଏକାଡେମୀ
ଭୁବନେଶ୍ୱର



ମୁଦ୍ରଣ : ଶ୍ରୀମା' ପ୍ରିଣ୍ଟର୍ସ, ଭୁବନେଶ୍ୱର
ମୂଲ୍ୟ : ୮୭ଟଙ୍କା (ସତାଅସିଟଙ୍କା ମାତ୍ର)

ମୂଲ୍ୟ : ୭୮ ଟଙ୍କା (ଅଠସ୍ତରି ଟଙ୍କା ମାତ୍ର)

# ସଂକ୍ଷିପ୍ତ ବିବୃତି

ଉତ୍କଳର ସଙ୍ଗୀତଜ୍ଞମାନଙ୍କ କୃତ କେତେଗୁଡ଼ିଏ ଗ୍ରନ୍ଥ ଅବଧି ଅପ୍ରକାଶିତ ଭାବେ (ପୋଥି ଆକାରରେ) ରହିଅଛି। ଏଗୁଡ଼ିକରୁ ଓଡ଼ିଶୀ ସଙ୍ଗୀତର ସ୍ୱତନ୍ତ୍ରତା ପ୍ରତିପାଦିଦ ହୁଏ। ସେଥିମଧ୍ୟରୁ କେତେଖଣ୍ଡି ଓଡ଼ିଶାର ସ୍ୱାଧୀନତା ଲୋପ ପୂର୍ବରୁ ଲିଖିତ। ଅବଧିପ୍ରାପ୍ତ ପୋଥିମାନଙ୍କ ମଧ୍ୟରେ ''ଗୀତ ପ୍ରକାଶ'' ହିଁ ପୁରାତନ। ଅନ୍ୟାନ୍ୟ ଗ୍ରନ୍ଥ; ଯଥା:-ନାଟ୍ୟ ମନୋରମା, ସଙ୍ଗୀତ ସରଣୀ, ସଙ୍ଗୀତ କଳ୍ପଲତା, ସଙ୍ଗୀତ ମୁକ୍ତାବଳୀ, ସଙ୍ଗୀତ କୌମୁଦୀ ଏବଂ ସଙ୍ଗୀତ ନାରାୟଣ ପ୍ରଭୃତି ଗ୍ରନ୍ଥ-ଲେଖକମାନେ 'ଗୀତ ପ୍ରକାଶ'ର ନିର୍ଦ୍ଦେଶ ଅନୁସରଣ କରିଥିବାର ଉଲ୍ଲେଖ ଦେଖାଯାଏ। ଓଡ଼ିଶୀ ସଙ୍ଗୀତ ଭରତ ମୁନି-ନିର୍ଦ୍ଧାରିତ ଉଡ୍ରମାଗଧୀ ପ୍ରବୃତ୍ତିରେ ପରିଚାଳିତ। ଧ୍ୱନି, ଭାଷା, ରୀତି, ସାମାଜିକ ଚଳଣୀ, ଚିତ୍ରାଙ୍କନ, ସ୍ଥାପତ୍ୟ, ବେଶ ଓ ଖାଦ୍ୟପେୟ ଇତ୍ୟାଦି ସମସ୍ତ ବିଷୟରେ ଉତ୍କଳୀୟ ସ୍ୱତନ୍ତ୍ରତା ବିଦ୍ୟମାନ ଦୃଷ୍ଟେ ସଙ୍ଗୀତରେ ଯେ ସ୍ୱତନ୍ତ୍ରତା ରହିଛି, ଏହା ଅନସ୍ୱୀକାର୍ଯ୍ୟ।

ଓଡ଼ିଆ ଲିପିରେ ସଙ୍ଗୀତ ସମ୍ବନ୍ଧୀୟ କେତେକ ପୁସ୍ତକ ଏଥିପୂର୍ବରୁ ପ୍ରକାଶିତ ହୋଇ ଓଡ଼ିଶୀ ସଙ୍ଗୀତ ସମ୍ବନ୍ଧେ ବିଷମ ବିଭ୍ରାଟ ସୃଷ୍ଟି କରିଅଛି। ସେଗୁଡ଼ିକ କର୍ଣ୍ଣାଟକ ସଙ୍ଗୀତ ରୀତିର ଓଡ଼ିଆ 'ତର୍ଜମା' କହିଲେ ଅତ୍ୟୁକ୍ତି ହେବ ନାହିଁ। ଏପରିକି ତହିଁରେ ଥିବା ଅଧିକାଂଶ ଗୀତ ଓ ସ୍ୱରଲିପି ତେଲଗୁ ଗୀତାନୁକୃତି।

ସ୍ୱାଧୀନତା ବିଲୋପ ସଂଗେ ସଂଗେ ଓଡ଼ିଶାର କଳା-କୃଷ୍ଟି ଲିଭିଯାଇଅଛି। ସେହି କାଳରୁ ବିଭିନ୍ନ ରାଜନୀତିକ କାରଣରୁ ଉତ୍ତର-ଭାରତୀୟ ଓ ଦକ୍ଷିଣ-ଭାରତୀୟ ସଙ୍ଗୀତର ପ୍ରାଦୁର୍ଭାବ ଉତ୍କଳରେ ଦେଖାଦେଇଅଛି। ଏଠାରେ ତାହାର ଆଲୋଚନାର ଅବକାଶ ନାହିଁ।

ସ୍ୱର୍ଗୀୟ ମଧୁପର ପଟ୍ଟାୟତ ବଳଦେବଚନ୍ଦ୍ର ଧୀର ମହାଶୟଙ୍କ ଅଜସ୍ର ଧନ, ସମୟ, ଶ୍ରମ ଓ ସାଧନାଦ୍ୱାରା ଓଡ଼ିଶୀ ସଙ୍ଗୀତର ପୁନରୁଦ୍ଧାର କଳ୍ପେ ବହୁ ମୂଲ୍ୟବାନ୍ ତଥ୍ୟ ସଂଗ୍ରହ କରିଥିଲେ। ସୁପରିଚିତ ସଙ୍ଗୀତଜ୍ଞ ଶ୍ରୀ ଶ୍ୟାମସୁନ୍ଦର ଧୀର ତାଙ୍କର ସହକର୍ମ୍ମୀ, ସହଯୋଗୀ ଓ ଛାତ୍ର।

ଏ ପୁସ୍ତକ ମଧୁପର ପଟ୍ଟାୟତଙ୍କ ସଂଗ୍ରହ ଓ ଶ୍ୟାମବାବୁଙ୍କ ସଂପୂର୍ଣ୍ଣ ସହଯୋଗିତାରେ ଲିଖିତ।

ମୋର ମନେ ଅଛି, ପ୍ରାୟ ୧୯୫୪-୫୫ରେ ଏହାର ପାଣ୍ଡୁଲିପି ଥରେ ଓଡ଼ିଶାର ସଙ୍ଗୀତ ନାଟକ ଏକାଡ଼େମୀ ନିକଟରେ ଉପସ୍ଥାପନ କରାଯାଇଥିଲା, ପ୍ରକାଶଲାଭର ନିବେଦନ ସହ। କାର୍ଯ୍ୟକାରୀ ସଭାର କେହି କେହି ସଭ୍ୟ ମଧ୍ୟ ଅନୁକୂଳ ମନ୍ତବ୍ୟ ଦେଇଥିଲେ। ତଥାପି କିଜାଣି କି ହେତୁରୁ ଏହା ଉପରେ ଶୁଭଦୃଷ୍ଟି ପଡ଼ିଲା ନାହିଁ। ଶ୍ରୀ ଧୀର ନିଜର ଆର୍ଥିକ ଅବସ୍ଥାକୁ ଭ୍ରୂକ୍ଷେପ ନ କରି ବହୁ ଅର୍ଥବ୍ୟୟରେ ଏ ଖଣ୍ଡିକ ଆଜି ଲୋକଲୋଚନକୁ ଆଣି ଦେଶ ଓ ଜାତିର ଅଶେଷ ଉପକାର ସାଧନ କରିଛନ୍ତି; ଏଥିରେ ସନ୍ଦେହ ନାହିଁ।

ଗ୍ରନ୍ଥରେ କେତେକ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକ ସଙ୍ଗୀତ ପଦ୍ଧତିର ପ୍ରଚଳିତ ରାଗରାଗିଣୀର ପରିଚୟ ସ୍ଥାନ ପାଇଅଛି। ଶତାବ୍ଦୀ ଯାବତ୍ ଏପରି ଆଗନ୍ତୁକ ରାଗରେ ଅଥଚ ଓଡ଼ିଶୀ-ଶୈଳୀରେ ଗୀତମାନ ପ୍ରଚଳିତ ଅଛି।

ଓଡ଼ିଶୀ ସଙ୍ଗୀତ ରୀତିର ଆଲୋଚନା ସମ୍ବଳିତ ଏପ୍ରକାର ପ୍ରାମାଣିକ ଗ୍ରନ୍ଥର ପ୍ରକାଶ ସର୍ବପ୍ରଥମ ବୋଲି କହିବାକୁ ହେବ। ଗ୍ରନ୍ଥରେ କେତେଗୁଡ଼ିଏ ଛାପାଦୋଷ ରହିଯାଇଅଛି ଏବଂ କେତେକ ସ୍ଥଳରେ ଭାଷାଗତ ତ୍ରୁଟିପ୍ରତି ଦୃଷ୍ଟି ଦିଆଯାଇ ପାରିନାହିଁ। ତାହା ସତ୍ତ୍ୱେ ସଙ୍ଗୀତର ବିଶେଷ ଅନୁଶୀଳନୀ ସ୍ଥାନ ପାଇଅଛି।

କଳେବର ବୃଦ୍ଧି ଆଶଂକାରେ ଏ ସ୍ଥଳରେ ମୁଁ ଗ୍ରନ୍ଥର ବିଶଦ ଆଲୋଚନାରୁ ବିରତ ହେଉଛି। ମୋର ଦୃଢ଼ ବିଶ୍ୱାସ ଯେ ଏ ଗ୍ରନ୍ଥଟି ଉତ୍କଳୀୟ ସଙ୍ଗୀତ-ଶୈଳୀର ସ୍ୱତନ୍ତ୍ରତା ଓ ବିଶେଷତ୍ୱର ପ୍ରକାଶ ଓ ପ୍ରଚାର ଲାଗି ସଂପୂର୍ଣ୍ଣ ସହାୟକ ଓ ପଥ ପ୍ରଦର୍ଶକ ହେବ ଏବଂ ଓଡ଼ିଶୀ ସଙ୍ଗୀତ ଯେ ସର୍ବ ଭାରତୀୟ ସଙ୍ଗୀତ-ଶାସ୍ତ୍ରର ନିଷ୍ଠାପର ଅନୁସୃତି, ତାହା ନିଶ୍ଚିତଭାବରେ ପ୍ରତିପାଦିତ କରାଇ ପାରିବ।

ଶ୍ରୀ କାଳୀଚରଣ ପଟ୍ଟନାୟକ

# ସଂପାଦକଙ୍କ କଲମରୁ

'ଓଡ଼ିଶୀ ସଙ୍ଗୀତ'ର ଶାସ୍ତ୍ରୀୟ ପଦ୍ଧତି ବହୁ ପ୍ରାଚୀନ । ଏହାର ଚର୍ଚ୍ଚା ଓ ଆଲୋଚନା ପାଇଁ ସଂପ୍ରତି ଉତ୍ତର ଦାୟାଦଙ୍କ ମଧ୍ୟରେ ଉପଯୁକ୍ତ ବାତାବରଣ ଆସିଥିବା ବେଳେ ପ୍ରାମାଣିକ ତତ୍ତ୍ୱସିଦ୍ଧ ଗ୍ରନ୍ଥ ସମୂହର ପ୍ରକାଶନ ଦିଗରେ ଥିବା ବଳିଷ୍ଠ ଉଦ୍ୟମକୁ 'ଉତ୍କଳ ସଙ୍ଗୀତ ପଦ୍ଧତି'ର ପୁନଃ ପ୍ରକାଶନ ଏକ ନୂତନ ବାର୍ତ୍ତା ଯୋଗାଇବ । ଆଗାମୀ ଦିନର ଶିଳ୍ପୀ କଳାକାରଗଣ ଏହି ସଙ୍ଗୀତ ପରଂପରାପ୍ରତି ଆଗ୍ରହୀ ହେଲେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଉଦ୍ୟମ ସାର୍ଥକ ହେବ ।

ଡଃ (ଶ୍ରୀମତୀ) ସୁଧା ମିଶ୍ର
ସଂପାଦିକା
ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ

ତା ୩ . ୧ . ୯୬ରିଖ

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ୧. ସୂଚନା | ୧-୨୨ |
| ୨. ମଙ୍ଗଳାଚରଣ | ୨୩ |
| ୩. ଗ୍ରନ୍ଥ ନାମ | ୨୪ |
| ୪. ଗ୍ରନ୍ଥସ୍ତୁତି | ୨୪ |
| ୫. ସଙ୍ଗୀତୋତ୍ପତ୍ତି | ୨୫ |
| ୬. ସଙ୍ଗୀତପ୍ରଶସ୍ତିଃ | ୨୫ |
| ୭. ଗୀତପ୍ରାଧାନ୍ୟ | ୨୭ |
| ୮. ସଙ୍ଗୀତଫଳିତାର୍ଥଃ | ୨୭ |
| ୯. ସଙ୍ଗୀତଶବ୍ଦାର୍ଥଃ | ୨୮ |
| ୧୦. ସଙ୍ଗୀତବିଭାଗ | ୨୮ |
| ୧୧. ମାର୍ଗଲକ୍ଷଣମ୍ | ୨୮ |
| ୧୨. ଦେଶୀଲକ୍ଷଣମ୍ | ୨୯ |
| ୧୩. ନିବଦ୍ଧଶ୍ଚାନିବଦ୍ଧଲକ୍ଷଣମ୍ | ୩୦ |
| ୧୪. ନାଦଲକ୍ଷଣମ୍ | ୩୧ |
| ୧୫. ନାଦୋତ୍ପତ୍ତିଲକ୍ଷଣମ୍ | ୩୧ |
| ୧୬. ନାଦଶବ୍ଦାର୍ଥଃ | ୩୨ |
| ୧୭. ନାଦ-ଭେଦ କଥନମ୍ | ୩୨ |
| ୧୮. ନାଦପ୍ରକାରଭେଦାଃ | ୩୩ |
| ୧୯. ଅନାହତ ନାଦଲକ୍ଷଣମ୍ | ୩୪ |
| ୨୦. ଆହାତ ନାଦଲକ୍ଷଣମ୍ | ୩୪ |
| ୨୧. ଶ୍ରୁତି ବିବେଚନମ୍ | ୩୫ |
| ୨୨. ଶ୍ରୁତିଶବ୍ଦ-ବ୍ୟୁତ୍ପତ୍ତିଃ | ୩୫ |
| ୨୩. ଶ୍ରୁତିଭେଦା | ୩୫ |

୨୪. ଶ୍ରୁତି-ସ୍ୱର ଲକ୍ଷଣମ୍ ୩୭
୨୫. ଅବ୍ୟବହାର୍ଯ୍ୟ ଶ୍ରୁତି ୩୮
୨୬. ଶ୍ରୁତିନାମାନି ୩୯
୨୭. ଶ୍ରୁତି-ବଣ୍ଟନମ୍ ୩୯
୨୮. ଉହଳୀୟମତେ ଶ୍ରୁତି-ବ୍ୟବସ୍ଥିତିଃ ୪୦
୨୯. ଶାସ୍ତ୍ର-ଦୃଷ୍ଟେ ସ୍ୱରସ୍ଥିତି ୪୧
୩୦. ଉହଳୀୟମତେ ସ୍ୱରସ୍ଥିତି ୪୧
୩୧. ଶ୍ରୁତି-ଜାତୟଃ ୪୧
୩୨. ଶ୍ରୁତିଜାତି-ବିଭାଗଃ ୪୧
୩୩. ଶ୍ରୁତିଜାତି-କୋଷ୍ଠକଃ ୪୩
୩୪. ଶ୍ରୁତିନାଂବାବ ବର୍ଣ୍ଣନମ୍ ୪୪
୩୫. ଶ୍ରୁତିଜାତିଭେଦେ ରସନିର୍ଣ୍ଣୟ ୪୫
୩୬. ସ୍ୱର-ବ୍ୟୁପତ୍ତିଃ ୪୬
୩୭. ସ୍ୱରଧ୍ୱନି ନିର୍ଣ୍ଣୟ ୪୭
୩୮. ସ୍ୱରନାମାନି ୪୮
୩୯. ସ୍ୱରଶ୍ରୁତିସ୍ଥିତି ୪୮
୪୦. ଷଡ୍‌ଜାଦୀନାଂ ବୟସ ୪୯
୪୧. ସ୍ୱରସ୍ୟ ଉଦାତ୍ତାଦି ବିସ୍ତର ୪୯
୪୨. ସ୍ୱରାଣାଂ ବାତପିତ୍ତାଦିଭେଦାଃ ୫୦
୪୩. ବାତପିତ୍ତପ୍ରକୋପାଦୟଃ ୫୦
୪୪. ସ୍ୱରାଣାଂ ରସନିର୍ଣ୍ଣୟଃ ୫୦
୪୫. କାର୍ଯ୍ୟଭେଦେ ସ୍ୱରାଣାଂ ସ୍ଥାପନମ୍ ୫୧
୪୬. ବାଦୀଭେଦେ ରସ ନିର୍ଣ୍ଣୟଃ ୫୧
୪୭. ଷଡ୍‌ଜଲକ୍ଷଣ ୫୨
୪୮. ଋଷଭଲକ୍ଷଣମ୍ ୫୩
୪୯. ଗାନ୍ଧାରଲକ୍ଷଣମ୍ ୫୪

୫୦. ମଧ୍ୟମଲକ୍ଷଣମ୍ ୫୪
୫୧. ପଞ୍ଚମଲକ୍ଷଣମ୍ ୫୫
୫୨. ଧୈବତଲକ୍ଷଣମ୍ ୫୬
୫୩. ନିଷାଦଲକ୍ଷଣମ୍ ୫୬
୫୪. ସ୍ୱରାଣାଂ ସ୍ଥାନନିର୍ଣ୍ଣୟଃ ୫୭
୫୫. ସ୍ୱରବିଭାଗ ବର୍ଣ୍ଣନମ୍ ୫୮
୫୬. ବିକୃତସ୍ୱରଃ ୫୯
୫୭. ଉତ୍କଳୀୟମତେ ସଂଜ୍ଞା .. ୫୯
୫୮. ଉତ୍କଳୀୟମତେ ବୀଣାୟାଂ ସ୍ୱରସ୍ଥାପନମ୍ ୬୦
୫୯. ବିକୃତସ୍ୱରାଃ ୬୨
୬୦. ସ୍ୱରସ୍ଥାପନକୋଷ୍ଟକମ୍ .. ୬୩
୬୧. ସ୍ୱରଆନ୍ଦୋଳନ ସଂଖ୍ୟା ନିରୂପଣ ୬୫
୬୨. ସପ୍ତକାନି ୬୬
୬୩. ବିକୃତ ସ୍ୱର ସଂକେତ ୬୭
୬୪. ବାଦ୍ୟାଦି ଲକ୍ଷଣମ୍ ୬୮
୬୫. ବାଦୀସଂବାଦୀ ସଂଜ୍ଞା ୬୯
୬୬. ବାଦ୍ୟାଦିଶବ୍ଦବ୍ୟୁତ୍ପତ୍ତିଃ .. ୭୧
୬୭. ବାଦୀ ସଂବାଦୀ ଅନୁବାଦୀ ବିବାଦୀ କୋଷ୍ଟକମ୍ ୭୨
୬୮. ଗ୍ରହନ୍ୟାସାଦିଲକ୍ଷଣମ୍ ୭୩
୬୯. ଗ୍ରହ ୭୩
୭୦. ଅଂଶ ୭୩
୭୧. ଜୀବସ୍ୱରଃ ୭୩
୭୨. ମନ୍ଦ୍ର ୭୪
୭୩. ତାରଃ ୭୪
୭୪. ନ୍ୟାସ ୭୪
୭୫. ଅପନ୍ୟାସ ୭୪

୭୬. ସନ୍ୟାସ ବିନ୍ୟାସ ୭୫
୭୭. ଅଲଂଘନ-ଲଂଘନ ୭୫
୭୮. ଉତ୍ପଳୀୟମତେ ଗ୍ରହନ୍ୟାସଃ ୭୬
୭୯. ବର୍ଣ୍ଣାଳଙ୍କାରାଃ ୭୮
୮୦. ବର୍ଣ୍ଣଶବ୍ଦବ୍ୟୁତ୍ପତ୍ତିଃ ୭୮
୮୧. ଅଳଙ୍କାର ଲକ୍ଷଣମ୍ ୭୯
୮୨. ଅଳଙ୍କାର ନାମାନି ୮୦
୮୩. ଅଳଙ୍କାର ପ୍ରକରଣ ୮୧
୮୪. ବିସ୍ତୀର୍ଣ୍ଣ ୮୧
୮୫. ନିଷ୍ପୃର୍ଯଃ ୮୧
୮୬. ଅଭ୍ୟୁନ୍ନୟ ୮୧
୮୭. ଗାତ୍ରବର୍ଣ୍ଣ ୮୨
୮୮. ପ୍ରେଂଖିତଃ ୮୨
୮୯. ଭଦ୍ର ୮୩
୯୦. ନନ୍ଦଃ ୮୩
୯୧. ଆକ୍ଷେପ ୮୪
୯୨. ସଦାନନ୍ଦ ୮୪
୯୩. ଆକ୍ଷିପ୍ତ ୮୪
୯୪. ପ୍ରସ୍ତାର ୮୫
୯୫. ପ୍ରେଙ୍ଖଃ ୮୫
୯୬. ହୁଁ କୃତି ୮୫
୯୭. ଶଙ୍ଖଃ ୮୬
୯୮. ତ୍ରି ବର୍ଣ୍ଣଃ ୮୬
୯୯. ହସିତ ୮୬
୧୦୦. ଶ୍ୟେନ ୮୭
୧୦୧. ମହାବଜ୍ର ୮୭

୧୦୨. କୋକିଳଃ ୮୮
୧୦୩. ଜବ ୮୮
୧୦୪. ସ୍ୱର୍ଣାଲଙ୍କାର ୮୯
୧୦୫. ମୌକ୍ତିକ ଅଲଙ୍କାର ୯୦
୧୦୬. ହୀରକାଲଙ୍କାର ୯୦
୧୦୭. କୁଣ୍ଡଳ ୯୧
୧୦୮. କଙ୍କଣ ୯୧
୧୦୯. ଅଙ୍ଗଦଃ ୯୨
୧୧୦. ଟାଟଂକଃ ୯୨
୧୧୧. ନୂପୁର ୯୨
୧୧୨. ରତ୍ନାଲଙ୍କାର ୯୩
୧୧୩. ହାରଃ ୯୩
୧୧୪. ଅଲଙ୍କାର-ନିରୂପଣେ ଫଳମ୍ ୯୪
୧୧୫. ଗମକ-ବ୍ୟୁତ୍ପତ୍ତି ୯୪
୧୧୬. ଗମକଭେଦାଃ ୯୫
୧୧୭. ଗମକ-ଲକ୍ଷଣମ୍ ୯୬
୧୧୮. ଗ୍ରାମ-ଲକ୍ଷଣମ୍ ୯୮
୧୧୯. ଗ୍ରାମ-ନାମାନି ୯୯
୧୨୦. ଗ୍ରାମ-ବିଭାଗ-ଲକ୍ଷଣମ୍ ୯୯
୧୨୧. ଗ୍ରାମେଷୁ ଶ୍ରୁତି ବଣ୍ଟନମ୍ .. .. ୧୦୦
୧୨୨. ସଙ୍ଗୀତ ପାରିଜାତମତେ ଗ୍ରାମସ୍ୱର ପରିଚୟ ୧୦୧
୧୨୩. ଉତ୍କଳୀୟମତେ ଗ୍ରାମସ୍ୱର ପରିଚୟ ୧୦୨
୧୨୪. ମୂର୍ଚ୍ଛନା ବ୍ୟୁତ୍ପତ୍ତି ୧୦୨
୧୨୫. ମୂର୍ଚ୍ଛନା ଲକ୍ଷଣମ୍ ୧୦୨
୧୨୬. ମୂର୍ଚ୍ଛନା-ଭେଦାଃ .. ୧୦୩
୧୨୭. ଷଡ଼ଜ ଗ୍ରାମମୂର୍ଚ୍ଛନା ସ୍ୱରାନ୍ତର୍ଗତ ଶ୍ରୁତିସଂଖ୍ୟା.. ୧୦୪

୧୨୮. ମଧ୍ୟମ ଗ୍ରାମମୂର୍ଚ୍ଛନା ସ୍ୱରାନ୍ତର୍ଗତ ଶ୍ରୁତିସଂଖ୍ୟା.. ୧୦୪
୧୨୯. ସଙ୍ଗୀତ ପାରିଜାତମତେ ମୂର୍ଚ୍ଛନାଗତ ସ୍ୱର ପରିଚୟ ୧୦୫
୧୩୦. ଗାନ୍ଧାର ଗ୍ରାମାନ୍ତର୍ଗତ ମୂର୍ଚ୍ଛନା ନାମାନି .. ୧୦୬
୧୩୧. ଉତ୍କଳୀୟମତେ ମୂର୍ଚ୍ଛନାଗତ ସ୍ୱର ପରିଚୟ ୧୦୬
୧୩୨. ମଧ୍ୟଯୁଗ ମତ ୧୦୭
୧୩୩. ମେଳଲକ୍ଷଣମ୍ ୧୦୮
୧୩୪. ମେଳ-ଭେଦାଃ .. ୧୦୮
୧୩୫. ମେଳଗତ ମୂର୍ଚ୍ଛନାୟାର୍ନବ-ଭେଦାଃ ୧୦୮
୧୩୬. ମୂର୍ଚ୍ଛନାଜନ୍ୟ ରାଗନିରୂପଣମ୍ ୧୧୦
୧୩୭. ମେଳ-ପ୍ରସ୍ତାରଃ ୧୧୦
୧୩୮. ଉତ୍କଳୀୟମତେ ସ୍ୱର-ସ୍ଥିତିଃ ୧୧୦
୧୩୯. ଉତ୍କଳୀୟମତେ ମେଳ ନିରୂପଣମ୍ ୧୧୨
୧୪୦. ଉତ୍କଳୀୟମତେ ମେଳ ସଂସ୍ଥାନମ୍ ୧୧୩
୧୪୧. ଉତ୍କଳୀୟ ଦଶମେଳ ଲକ୍ଷଣମ୍ .. ୧୧୪
୧୪୨. ଉତ୍କଳୀୟ ମେଳାନାଂ ହିନ୍ଦୁସ୍ଥାନି କର୍ଣ୍ଣାଟକି ସ୍ୱର ପରିଚୟ ୧୧୬
୧୪୩. ଜନକରାଗନାମାନି କଲ୍ୟାଣ ମେଳ ୧୧୬
୧୪୪. ନଟ ମେଳ ୧୧୭
୧୪୫. ଶ୍ରୀରାଗମେଳ ୧୧୭
୧୪୬. ଗୌରୀ-ମେଳଃ ୧୧୮
୧୪୭. ବରାଡ଼ି - ମେଳ ୧୧୮
୧୪୮. ପଞ୍ଚମ ମେଳ ୧୧୮
୧୪୯. ଧନାଶ୍ରୀ ମେଳ ୧୧୯
୧୫୦. କର୍ଣ୍ଣାଟ ମେଳ ୧୧୯
୧୫୧. ଭୈରବୀ ମେଳ ୧୨୦
୧୫୨. ଶୋକବରାଡ଼ି ମେଳ ୧୨୦
୧୫୩. ତାନଶବ୍ଦବ୍ୟୁତ୍ପତ୍ତିଃ ୧୨୦

୧୫୪. ତାନମୂର୍ଚ୍ଛ ନୟୋର୍ଭେଦାଃ ୧୨୧

୧୫୫. ତାନଭେଦା ୧୨୧

୧୫୬. ଏକସ୍ୱର-ତାନବିବେକଃ ୧୨୨

୧୫୭. ଦ୍ୱିସ୍ୱରତାନ- ବିବେକଃ ୧୨୨

୧୫୮. ତ୍ରିସ୍ୱରତାନ-ବିବେକଃ ୧୨୩

୧୫୯. ଚତୁଃସ୍ୱରତାନ-ବିବେକଃ ୧୨୩

୧୬୦. ପଞ୍ଚସ୍ୱରତାନ-ବିବେକଃ ୧୨୪

୧୬୧. ଷାଡ଼ବତାନ-ବିବେକଃ ୧୨୪

୧୬୨. ସମ୍ପୂର୍ଣ୍ଣ ତାନ ବିବେକଃ ୧୨୫

୧୬୩. କୂଟତାନଃ ୧୨୫

୧୬୪. ଦେଶଭେଦେ ଚତୁଃସ୍ୱର ପ୍ରୟୋଗଃ ୧୨୭

୧୬୫. ରାଗଶବ୍ଦବ୍ୟୁତ୍ପତ୍ତିଃ ୧୨୮

୧୬୬. ରାଗ-ଲକ୍ଷଣମ୍ ୧୨୯

୧୬୭. ରାଗ-ସ୍ଥାପନମ୍ ୧୨୯

୧୬୮. ରାଗ-ଭେଦାଃ ୧୨୯

୧୬୯. ଗ୍ରାମରାଗାଦି ଭେଦ-ଲକ୍ଷଣମ୍ ୧୩୦

୧୭୦. ରାଗାଙ୍ଗମ୍ ୧୩୧

୧୭୧. ଭାଷାଙ୍ଗମ୍ ୧୩୧

୧୭୨. ଦେଶାଙ୍ଗମ୍ ୧୩୨

୧୭୩. କ୍ରିୟାଙ୍ଗମ୍ ୧୩୩

୧୭୪. ନିଷାଦାନ୍ତଃ ୧୩୩

୧୭୫. ଧୈବତାନ୍ତଃ ୧୩୪

୧୭୬. ପଞ୍ଚମାନ୍ତ ୧୩୪

୧୭୭. ଜନ୍ୟାସମ୍ପୂର୍ଣ୍ଣରାଗଃ ୧୩୪

୧୭୮. ଘନରାଗଃ ୧୩୫

୧୭୯. [illegible]

୧୮୦. ଦେଶୀୟଃ ୧୩୫
୧୮୧. ଗାୟନ-ବିଧି ୧୩୬
୧୮୨. ମାର୍ଗଗୀତ ୧୩୬
୧୮୩. ଦେଶୀ ୧୩୭
୧୮୪. ବିବିଧ ଦେଶୀ-ଲକ୍ଷଣମ୍ ୧୩୭
୧୮୫. ଭାଷାଗୀତି-ଲକ୍ଷଣମ୍ ୧୩୮
୧୮୬. ଚତୁଃବିଧ ଗୀତ-ସଂଜ୍ଞା ୧୩୮
୧୮୭. ମାଗଧୀ-ଲକ୍ଷଣମ୍ ୧୩୯
୧୮୮. ଅର୍ଦ୍ଧ-ମାଗଧୀ ୧୪୦
୧୮୯. ସମ୍ଭାବିତା-ଲକ୍ଷଣମ୍ ୧୪୧
୧୯୦. ପୃଥୁଳା-ଲକ୍ଷଣମ୍ ୧୪୧
୧୯୧. ଚତୁର୍ବିଦାପ୍ରବୃତ୍ତି .. ୧୪୧
୧୯୨. ପୂର୍ବୋକ୍ତଗୀତାନାଂ ତାଳଲକ୍ଷଣମ୍ ୧୪୨
୧୯୩. ଗୀତଭେଦ .. ୧୪୩
୧୯୪. ଷାଡ଼ବୌଡ଼ବରାଗେ ବାଦୀ-ନିର୍ଣ୍ଣୟଃ ୧୪୫
୧୯୫. ଆଳାପ-ଲକ୍ଷଣମ୍ ୧୪୬
୧୯୬. ରୂପକାଳାପ-ଲକ୍ଷଣମ୍ ୧୪୭
୧୯୭. ଆଳପ୍ତିକା ୧୪୮
୧୯୮. ଆଳପ୍ତି ଲକ୍ଷଣମ୍ ୧୫୦
୧୯୯. ଗାୟନାଦୌସ୍ୱରସନ୍ନିବେଶଃ ୧୫୨
୨୦୦. ନାୟକ-ଲକ୍ଷଣମ୍ ୧୫୨
୨୦୧. ସଙ୍ଗୀତସ୍ନେହୀ ୧୫୩
୨୦୨. ବିଦ୍ୟା-ବିଘ୍ନକାରୀ ୧୫୪
୨୦୩. ସୁଗାୟକଃ ୧୫୪
୨୦୪. ଦୁର୍ଗାୟକ ୧୫୫
୨୦୫. ଗୀତଗୁଣାନାହ ୧୫୭

୨୦୬. ରାଗପ୍ରକରଣ ୧୫୮
୨୦୭. ଆରବୀ .. .. ୧୫୮
୨୦୮. ଆନନ୍ଦଭୈରବ-ଆନନ୍ଦଭୈରବୀ ଓ ଆନନ୍ଦ ରାଗର ଲକ୍ଷଣ ୧୫୯
୨୦୯. ଆନନ୍ଦଭୈରବୀ ୧୬୧
୨୧୦. ଆହାରୀ ୧୬୧
୨୧୧. ଆଶାବରୀ ୧୬୨
୨୧୨. ଯମନକଲ୍ୟାଣ ୧୬୪
୨୧୩. କାଫି ୧୬୫
୨୧୪. କଲ୍ୟାଣି ୧୬୭
୨୧୫. କେଦାର ୧୬୮
୨୧୬. କେଦାରଗୌଡ଼ା ୧୬୯
୨୧୭. କାମୋଦୀ ୧୭୦
୨୧୮. କାନଡ଼ ଗୌଡ଼ ୧୭୨
୨୧୯. କାଲଙ୍ଗଡ଼ା ୧୭୨
୨୨୦. କୁମ୍ଭ ୧୭୩
୨୨୧. କର୍ଣ୍ଣାଟ ୧୭୪
୨୨୨. କଳହଂସକେଦାର ୧୭୫
୨୨୩. କୌଶିକ ୧୭୭
୨୨୪. କାନାଡା ୧୭୮
୨୨୫. କୋଳାହଳ ୧୭୯
୨୨୬. ଖମ୍ବଜ ୧୮୦
୨୨୭. ଖରହରପ୍ରିୟା ୧୮୧
୨୨୮. ଗୁର୍ଜରୀ ୧୮୨
୨୨୯. ଗୌଡ଼ ୧୮୫
୨୩୦. ଗୌଳ ୧୮୫
୨୩୧. ଗୌରୀ ୧୮୬

୨୩୨. ଗୁଣ୍ଡକିରୀ ୧୮୮
୨୩୩. ଘଣ୍ଟାରବ ୧୯୦
୨୩୪. ଜୌନପୁରୀ ତୋଡ଼ୀ ୧୯୦
୨୩୫. ଜୟନ୍ତ ୧୯୧
୨୩୬. ଜୟଜୟନ୍ତୀ ୧୯୩
୨୩୭. ଜଙ୍ଗଲା ୧୯୪
୨୩୮. ରାଗ ଝିଂଝୋଟ ୧୯୬
୨୩୯. ରାଗ ଢୁକସର ୧୯୬
୨୪୦. ରାଗ ତୋଡ଼ି ୧୯୭
୨୪୧. ରାଗ ତୋଡ଼ିପରଜ ୧୯୯
୨୪୨. ରାଗ ଦ୍ରାବିଡ ୨୦୦
୨୪୩. ରାଗ ଦେଶାକ୍ଷ ୨୦୦
୨୪୪. ରାଗ ଦେଶମଲ୍ଲାର ୨୦୨
୨୪୫. ରାଗ ଧନାଶ୍ରୀ ୨୦୨
୨୪୬. ରାଗ ନାଟକୁରଙ୍ଗୀ ୨୦୪
୨୪୭. ରାଗ ନଟ ୨୦୫
୨୪୮. ରାଗ ନଳିନୀଗୌଡ଼ା ୨୦୬
୨୪୯. ରାଗ ପଞ୍ଚମ ୨୦୬
୨୫୦. ରାଗ ବରାଡ଼ୀ ୨୧୦
୨୫୧. ରାଗ ପଞ୍ଚମବରାଡ଼ୀ ୨୧୧
୨୫୨. ରାଗ ପରଜ ୨୧୧
୨୫୩. ରାଗ ପାହାଡ଼ୀ ୨୧୩
୨୫୪. ରାଗ ପିଲୁ ୨୧୫
୨୫୫. ରାଗ ପୂରବୀ ୨୧୬
୨୫୬. ରାଗ ପୂରା (ପୂରାଆ) ୨୧୮
୨୫୭. ରାଗ ପୁନ୍ନାଗ ୨୧୯

| | |
|---|---|
| ୨୫୮. ରାଗ ପଞ୍ଚମଞ୍ଜରୀ | ୨୧୯ |
| ୨୫୯. ରାଗ ବଙ୍ଗଳା | ୨୨୦ |
| ୨୬୦. ରାଗ ବସନ୍ତ | ୨୨୨ |
| ୨୬୧. ରାଗ ବେଲାବଳୀ | ୨୨୫ |
| ୨୬୨. ରାଗ ବିଭାସ | ୨୨୬ |
| ୨୬୩. ରାଗ ବସନ୍ତବରାଢ଼ୀ | ୨୨୮ |
| ୨୬୪. ରାଗ ବିଳାହରି | ୨୨୯ |
| ୨୬୫. ବେଗଡ଼ା ଓ ବେହାଗ | ୨୩୦ |
| ୨୬୬. ଧନାଶ୍ରୀ | ୨୩୨ |
| ୨୬୭. ବସନ୍ତଭୈରବ | ୨୩୨ |
| ୨୬୮. ଭୂପାଳ | ୨୩୩ |
| ୨୬୯. ଭୈରବୀ | ୨୩୪ |
| ୨୭୦. ଭୈରବ | ୨୩୬ |
| ୨୭୧. ଭାଟିଆରୀ | ୨୩୮ |
| ୨୭୨. ମାଳଶ୍ରୀ | ୨୩୯ |
| ୨୭୩. ମାଳବ | ୨୪୦ |
| ୨୭୪. ମାରୁଆ | ୨୪୧ |
| ୨୭୫. ମୋହନା | ୨୪୨ |
| ୨୭୬. ମାଳବଗୌଡ଼ | ୨୪୩ |
| ୨୭୭. ମୁଖାରୀ | ୨୪୪ |
| ୨୭୮. ମଙ୍ଗଳ | ୨୪୫ |
| ୨୭୯. ମେଘମଲ୍ଲାର | ୨୪୭ |
| ୨୮୦. ରାମକରୀ | ୨୪୮ |
| ୨୮୧. ରାଜବିଜେ | ୨୪୯ |
| ୨୮୨. ରେଗୁପ୍ତ | ୨୫୦ |
| ୨୮୩. ଲଳିତ | ୨୫୨ |

୨୮୪. ଶାବେରୀ ୨୫୩
୨୮୫. ଶଙ୍କରାଭରଣ ୨୫୫
୨୮୬. ସୁରଟ ୨୫୫
୨୮୭. ସୌରାଷ୍ଟ୍ର ୨୫୬
୨୮୮. ସାହାନା ୨୫୮
୨୮୯. ସୋମ ୨୫୯
୨୯୦. ଶୋକବରାଡ଼ି ୨୬୦
୨୯୧. ଶ୍ୟାମକଲ୍ୟାଣ ୨୬୧
୨୯୨. ଶ୍ରୀରାଗ ୨୬୨
୨୯୩. ସାରଙ୍ଗ ୨୬୪
୨୯୪. ସିନ୍ଧୁଡ଼ା ୨୬୫
୨୯୫. ହୁସେନୀ .. .. ୨୬୬
୨୯୬. ଓଡ଼ିଶାରେ ଚର୍ଚ୍ଚା ହେଉଥିବା କେତେକ ପ୍ରସିଦ୍ଧ ରାଗପ୍ରକରଣ ୨୬୮
୨୯୭. ଯମନ ୨୭୦
୨୯୮. ହିନ୍ଦୋଳ ୨୭୦
୨୯୯. ହମୀର ୨୭୦
୩୦୦. ଛାୟାନଟ ୨୭୦
୩୦୧. ଗୌଡ଼ ସାରଙ୍ଗ ୨୭୨
୩୦୨. ଅହ୍ଲୈୟା ବିଲାବଳ ୨୭୨
୩୦୩. ଶୁକଳ ବିଲାବଳ ୨୭୨
୩୦୪. ନଟ ବିଲାବଳ ୨୭୪
୩୦୫. ଦେବଗିରି ୨୭୪
୩୦୬. ଇମନୀ ୨୭୪
୩୦୭. ସର୍ପଧା ୨୭୪
୩୦୮. ଲଚ୍ଛାସାଖ ୨୭୪
୩୦୯. କକୁଭା ୨୭୪

୩୧୦. ଔଡ଼ବ ବିଲାବଲ ୨୭୬
୩୧୧. ଭିନ୍ନଷଡ଼ଜ ୨୭୬
୩୧୨. ଦେଶକାର ୨୭୬
୩୧୩. ହଂସଧ୍ୱନୀ ୨୭୬
୩୧୪. ଦୁର୍ଗା ୨୭୬
୩୧୫. ବିହାଗ ୨୭୬
୩୧୬. ପଟ ବିହାଗ ୨୭୬
୩୧୭. ବିହାଗଡ଼ା ୨୭୮
୩୧୮. ଶଙ୍କରା ୨୭୮
୩୧୯. ହେମକଲ୍ୟାଣ ୨୭୮
୩୨୦. ସାବନୀ ୨୭୮
୩୨୧. ମାଲୁହା କେଦାର ୨୭୮
୩୨୨. ଜଳଧର କେଦାର ୨୮୦
୩୨୩. ନବରୋଚିକା ୨୮୦
୩୨୪. ଭବସାଖି ୨୮୦
୩୨୫. ମାଁଡ଼ ୨୮୦
୩୨୬. ଆଶାଗୌଡ଼ୀ ୨୮୦
୩୨୭. ତିଲଙ୍ଗ ୨୮୨
୩୨୮. ଖମ୍ବାବତୀ ୨୮୨
୩୨୯. ଦୁର୍ଗା ୨୮୨
୩୩୦. ରାଗେଶ୍ୱରୀ ୨୮୨
୩୩୧. ତିଲକ କାମୋଦ ୨୮୨
୩୩୨. ଗାରା ୨୮୪
୩୩୩. ନାରାୟଣୀ ୨୮୪
୩୩୪. ପ୍ରତାପ ବରାଳୀ ୨୮୪
୩୩୫. ନାଗସ୍ୱରାବଳୀ ୨୮୪

୩୩୬. ମଞ୍ଜରୀ ୨୮୪
୩୩୭. ହରିକାମ୍ବୋଜୀ ୨୮୪
୩୩୮. ଶିବମତ ଭୈରବ ୨୮୬
୩୩୯. କୋମଳ ଭୈରବ ୨୮୬
୩୪୦. ଅହିର ଭୈରବ ୨୮୬
୩୪୧. ହିଜାଜ ୨୮୬
୩୪୨. ଯୋଗିୟା ୨୮୬
୩୪୩. ଦେଶଗୌଡ଼ ୨୮୮
୩୪୪. ପ୍ରଭାତ ୨୮୮
୩୪୫. ମୋଧାତୋଓନୀ ୨୮୮
୩୪୬. ଝିଲଫ ୨୮୮
୩୪୭. ନାଦରାମକ୍ରିୟା ୨୮୮
୩୪୮. ପୂରିୟା ଧନାଶ୍ରୀ ୨୯୦
୩୪୯. ଦୀପକ ୨୯୦
୩୫୦. ତ୍ରିବେଣୀ ୨୯୦
୩୫୧. ଟଙ୍କି ୨୯୦
୩୫୨. ମାଳବୀ ୨୯୨
୩୫୩. ହଂସନାରାୟଣୀ ୨୯୨
୩୫୪. ଗୌରୀ ୨୯୨
୩୫୫. ଜେତ ୨୯୪
୩୫୬. ମାଳିଗୌରା ୨୯୪
୩୫୭. ବରାଟି ୨୯୬
୩୫୮. ସାଜଗିରୀ ୨୯୬
୩୫୯. ସୋହିନୀ ୨୯୬
୩୬୦. ଲଳିତ ୨୯୮
୩୬୧. ଭଂଖାର ୨୯୮

୩୬୨. ଭୀମପଲାସୀ ୨୯୮
୩୬୩. ଧାନୀ ୨୯୮
୩୬୪. ପଟଦୀପକୀ ୩୦୦
୩୬୫. ଅହୀରୀ ୩୦୦
୩୬୬. ହଂସ କଂକଣୀ ୩୦୦
୩୬୭. ବାଗୀଶ୍ୱରୀ ୩୦୦
୩୬୮. ମାଲଗୁଞ୍ଜି ୩୦୦
୩୬୯. ସୁହାକାନଡ଼ା ୩୦୨
୩୭୦. ସୁଘରାଇ କାନାଡ଼ା ୩୦୨
୩୭୧. ଦେବଶାଖୀ ୩୦୨
୩୭୨. ନାୟକୀ କାନଡ଼ା ୩୦୨
୩୭୩. ବାହାର ୩୦୨
୩୭୪. ମଧ୍ୟମାଦି ସାରଙ୍ଗ ୩୦୪
୩୭୫. ବୃନ୍ଦାବନି ସାରଙ୍ଗ ୩୦୪
୩୭୬. ବଡ଼ହଂସ ସାରଙ୍ଗ ୩୦୪
୩୭୭. ସାମନ୍ତ ସାରଙ୍ଗ ୩୦୪
୩୭୮. ମିୟାଁ ସାରଙ୍ଗ ୩୦୬
୩୭୯. ଲଙ୍କ ଦହନ ୩୦୬
୩୮୦. ସାବନ ଲଙ୍କଦହନ ୩୦୬
୩୮୧. ସୁରମହ୍ଲାର ୩୦୬
୩୮୨. ମିୟାଁ ମହ୍ଲାର ୩୦୬
୩୮୩. ମିରାବାଇ ମହ୍ଲାର ୩୦୬
୩୮୪. ଗୌଡ଼ ମହ୍ଲାର ୩୦୮
୩୮୫. ପିଲୁ ୩୦୮
୩୮୬. ବରବା ୩୦୮
୩୮୭. ଜିଲା ୩୦୮

୩୮୮. କିର୍ବାଣୀ ୩୦୮
୩୮୯. ଦେବଗାନ୍ଧାର ୩୧୦
୩୯୦. ଆଭିରୀ ୩୧୦
୩୯୧. ସିଂଧ ଭୈରବୀ ୩୧୦
୩୯୨. ଦେଶୀ ୩୧୦
୩୯୩. ଷଡ଼ାଙ୍ଗ ୩୧୦
୩୯୪. ଆଭାଣୀ ୩୧୨
୩୯୫. ଦରବାରି କାନାଡ଼ା ୩୧୨
୩୯୬. ମାଲକୋଣ ୩୧୪
୩୯୭. ଲାଗ୍ୱରୀ ତୋଡ଼ି ୩୧୪
୩୯୮. ମିୟାଁନୀ ତୋଡ଼ି ୩୧୪
୩୯୯. ବାହାଦୁର ତୋଡ଼ି ୩୧୪
୪୦୦. ମୁଲତାନୀ ୩୧୪
୪୦୧. ପ୍ରବନ୍ଧ ପ୍ରକରଣମ୍ ୩୧୬
୪୦୨. ପ୍ରବନ୍ଧ ବ୍ୟୁତ୍ପତ୍ତି ୩୧୬
୪୦୩. ଗୀତ-ଲକ୍ଷଣମ୍ ୩୧୬
୪୦୪. ଦ୍ୱିବିଧ ଗୀତମ୍ ୩୧୭
୪୦୫. ଗାନ୍ଧର୍ବ ଲକ୍ଷଣମ୍ ୩୧୭
୪୦୬. ଗାନ ଲକ୍ଷଣମ୍ ୩୧୮
୪୦୭. ତଦ୍ ଦ୍ୱିବିଧ ୩୧୮
୪୦୮. ଅନିର୍ଯୁକ୍ତ ୩୧୯
୪୦୯. ନିର୍ଯୁକ୍ତଃ ୩୧୯
୪୧୦. ଉଭୟାତ୍ମିକାଃ ୩୧୯
୪୧୧. ଶୁଦ୍ଧ ୩୧୯
୪୧୨. ଆଳାପଃ ୩୧୯
୪୧୩. ପ୍ରବନ୍ଧ-ଲକ୍ଷଣମ୍ ୩୨୦

| | |
|---|---|
| ୪୧୪. ବସ୍ତୁ ତସ୍ତୁ (ଧାତୁଲକ୍ଷଣମ୍) | ୩୨୦ |
| ୪୧୫. ମାତୁମାହ (ମାତୁଲକ୍ଷଣମ୍) | ୩୨୦ |
| ୪୧୬. ପ୍ରବନ୍ଧ-ବିଭାଗଃ .. | ୩୨୧ |
| ୪୧୭. ତତ୍ର ନିବଦ୍ଧମାହ (ନିବଦ୍ଧ ଲକ୍ଷଣମ୍) | ୩୨୧ |
| ୪୧୮. ପ୍ରବନ୍ଧାବୟବଃ | ୩୨୧ |
| ୪୧୯. ଉଦ୍‌ଗ୍ରାହ | ୩୨୨ |
| ୪୨୦. ମେଳାପକ | ୩୨୩ |
| ୪୨୧. ଧ୍ରୁବ | ୩୨୩ |
| ୪୨୨. ଆଭୋଗ | ୩୨୩ |
| ୪୨୩. ପ୍ରବନ୍ଧୋଙ୍ଗାନି | ୩୨୩ |
| ୪୨୪. ପଦମ୍ | ୩୨୪ |
| ୪୨୫. ସ୍ୱରାଃ | ୩୨୪ |
| ୪୨୬. ତେନାଃ | ୩୨୪ |
| ୪୨୭. ପାଟାଃ | ୩୨୫ |
| ୪୨୮. ତାଳଃ | ୩୨୫ |
| ୪୨୯. ବିରୁଦଃ | ୩୨୬ |
| ୪୩୦. ସ୍ୱଚ୍ଛାୟଃ | ୩୨୭ |
| ୪୩୧. ବିରୁଦଃ | ୩୨୭ |
| ୪୩୨. ପଦମ୍ | ୩୨୮ |
| ୪୩୩. ତନ୍ନକାରଃ | ୩୨୮ |
| ୪୩୪. ବାକ୍ୟମ୍ | ୩୨୮ |
| ୪୩୫. ପ୍ରବନ୍ଧଃ | ୩୨୮ |
| ୪୩୬. ପ୍ରବନ୍ଧସ୍ୟ ଜାତିଃ | ୩୨୮ |
| ୪୩୭. ତେଷାଂ ଲକ୍ଷଣମ୍ | ୩୨୯ |
| ୪୩୮. ସୂଳାଦ୍ୟାଦିଲକ୍ଷଣମ୍ | ୩୨୯ |
| ୪୩୯. ସୂଳାଦି | ୩୨୯ |

୪୪୦. ନାମାବଳୀ ୩୨୯
୪୪୧. ଚୂର୍ଣ୍ଣିକା ୩୩୦
୪୪୨. ନାଟକ ୩୩୦
୪୪୩. ଆଳପ୍ତି ୩୩୦
୪୪୪. ରାଗାଳପ୍ତି ୩୩୦
୪୪୫. ରୂପକାଳପ୍ତି ୩୩୦
୪୪୬. ଶୁଦ୍ଧାଦିଭେଦାଃ ୩୩୧
୪୪୭. ଛାୟାଲଗମ୍ ୩୩୧
୪୪୮. ଏଳା ୩୩୧
୪୪୯. ସୂଡ଼ ୩୩୨
୪୫୦. କ୍ଷୁଦ୍ରଃ (କ୍ଷୁଦ୍ର ଗୀତ) ୩୩୩
୪୫୧. ଏତଦ୍‌ଭେଦମାହ ୩୩୩
୪୫୨. ଚତ୍ତକଳାମାହ ୩୩୪
୪୫୩. ଚିତ୍ରପଦା ୩୩୪
୪୫୪. ଧ୍ରୁବ (ଧ୍ରୁବପଦ) ୩୩୫
୪୫୫. ପାଞ୍ଚାଳୀମାହ ୩୩୬
୪୫୬. ତ୍ରିଭଙ୍ଗୀପ୍ରବନ୍ଧଃ ୩୩୭
୪୫୭. କୈବାଡ଼ ପ୍ରବନ୍ଧଃ ୩୩୮
୪୫୮. ଧ୍ରୁବ-ଲକ୍ଷଣମ୍ ୩୩୮
୪୫୯. ମଣ୍ଠ-ଲକ୍ଷଣମ୍ ୩୪୦
୪୬୦. ଅନିବଦ୍ଧ ଲକ୍ଷଣମ୍ ୩୪୧
୪୬୧. ଗାନଭେଦାଃ ୩୪୧
୪୬୨. ଗଦ୍ୟ-ଲକ୍ଷଣମ୍ ୩୪୫
୪୬୩. ଉତ୍କଳୀୟ ପ୍ରବନ୍ଧ ୩୪୬
୪୬୪. ପ୍ରବନ୍ଧ ଶୁଦ୍ଧଗୀତ ୩୫୦
୪୬୫. ଅଥ ଛାୟାଲଗ ୩୫୧

୪୬୬. କ୍ଷୁଦ୍ର ଗୀତର ଉଦାହରଣ ୩୫୨
୪୬୭. ଧ୍ରୁବପଦ ୩୫୨
୪୬୮. ଚିତ୍ରପଦ ୩୫୩
୪୬୯. ଚିତ୍ରକଳା ୩୫୩
୪୭୦. ପାଞ୍ଚାଳୀ ୩୫୩
୪୭୧. ଛନ୍ଦ ୩୫୪
୪୭୨. ଚୌପଦୀ ୩୬୦
୪୭୩. ଚୌତିଶା ୩୬୦
୪୭୪. ଚମ୍ପୂ ୩୬୧
୪୭୫. ଭଜନ ଜଣାଣ .. .. ୩୬୧
୪୭୬. ପୁରାଣ, ଶାସ୍ତ୍ର ଏବଂ ଗଦ୍ୟ ଓ କାବ୍ୟ-କବିତା ୩୬୨
୪୭୭. ଗଦ୍ୟ ୩୬୪
୪୭୮. ଅମିତ୍ରାକ୍ଷର .. ୩୬୪
୪୭୯. ଢଗଢମାଳି, ପହଳି, ପ୍ରବାଦବାକ୍ୟ ୩୬୫
୪୮୦. ଛାୟାଲଗ ୩୬୮
୪୮୧. କ୍ଷୁଦ୍ର ୩୬୮
୪୮୨. ଚିତ୍ରପଦ ୩୭୨
୪୮୩. ଚିତ୍ରକଳା ୩୭୩
୪୮୪. ପାଞ୍ଚାଳୀ ୩୭୪
୪୮୫. ସଧ୍ରୁବା ପାଞ୍ଚାଳୀ ୩୭୫
୪୮୬. ଅଧ୍ରୁବା ପାଞ୍ଚାଳୀ (ଛାନ୍ଦ) .. ୩୭୬
୪୮୭. ଓଡ଼ିଶା ସଂଗୀତର ସଂକ୍ଷିପ୍ତ ବିଭାଗ .. ୩୮୧
୪୮୮. ଦିବା ଓ ରାତ୍ରିର ରାଗମାନଙ୍କର ସମୟ ନିରୂପଣ ୩୮୫
୪୮୯. ସଂଗୀତ-ଲକ୍ଷଣଯୁକ୍ତ ଗାନର କେତେକ ଆଦର୍ଶ ୩୮୫
୪୯୦. ବାଦ୍ୟ ପ୍ରକରଣ .. ୪୦୮
୪୯୧. ଓଡ଼ିଶାରେ ପ୍ରଚଳିତ ତାଳ ପ୍ରକରଣ ୪୧୫
୪୯୨. ବାଦ୍ୟାକ୍ଷର ପାଟ ୪୧୮

୪୯୩. ନବତାଳାନାଂ ଧ୍ରୁବ ମଣ୍ଠାଦିଭେଦା.. ୪୨୨
୪୯୪. ଲୟ ପ୍ରବୃତ୍ୟାଦି ୪୨୩
୪୯୫. ଯତିମାହ ୪୨୪
୪୯୬. ଅଥ ଗ୍ରହାଲ୍ଲକ୍ଷଯତି ୪୨୪
୪୯୭. ଲୟ ୪୨୫
୪୯୮. ମାନମାହ ୪୨୫
୪୯୯. ତାଳ ପକାଇବା ନିୟମ ୪୨୫
୫୦୦. ଆଦି ତାଳ ୪୨୭
୫୦୧. ଯତି ତାଳ .. ୪୩୦
୫୦୨. ନିସାରୁ ତାଳ .. ୪୩୨
୫୦୩. ଆଡ୍ ତାଳ ୪୩୩
୫୦୪. ତ୍ରିପୁଟ ତାଳ ୪୩୪
୫୦୫. ରୂପକ ତାଳ ୪୩୫
୫୦୬. ଝମ୍ପା ତାଳ ୪୩୬
୫୦୭. ଗଜଝମ୍ପା ତାଳ ୪୩୬
୫୦୮. ମଠ ତାଳ ୪୩୭
୫୦୯. ଏକ ତାଳ ୪୩୮
୫୧୦. ପହପଟ ତାଳ ୪୩୮
୫୧୧. ଆଠ ତାଳ ୪୩୯
୫୧୨. କୁଡୁକ ତାଳ ୪୩୯
୫୧୩. ଅଟ ତାଳ ୪୪୦
୫୧୪. ଚୌତାଳ ୪୪୨
୫୧୫. ଧାମାର ତାଳ ୪୪୩
୫୧୬. ତେ-ତାଳ ୪୪୩
୫୧୭. କହରବା ୪୪୪
୫୧୮. ଖେମଟା .. .. ୪୪୪
୫୧୯. ଉତ୍କଳର ପ୍ରଚଳିତ ତାଳ ସହିତ ମେଳ ଥିବା ଶାସ୍ତ୍ରୀୟ ତାଳ ଓ ଦେଶଭେଦେ ପ୍ରଚଳିତ ତାଳମାନଙ୍କ ନାମ ୪୪୬

# ଉତ୍କଳ ସଙ୍ଗୀତ-ପଦ୍ଧତି ସୂଚନା

ଭରତ ନାଟ୍ୟଶାସ୍ତ୍ରରେ ଉଡ୍ରମାଗଧୀ ପ୍ରବୃତ୍ତିର ଉଲ୍ଲେଖ ଅଛି। ଉଡ୍ରପ୍ରଦେଶ ପ୍ରାଚୀନ ବିଶାଳ କଳିଙ୍ଗର ଅନ୍ତର୍ଗତ। ଉତ୍କଳ, କଳିଙ୍ଗଠାରୁ ପୃଥଗ୍‌ଭାବରେ ପୁରାଣରେ ବର୍ଣ୍ଣିତ ହେଲେହେଁ କାଳକ୍ରମେ କଳିଙ୍ଗର ଅନ୍ତର୍ଗତ ଉଡ୍ର ଓ ତୋଷଳ ମିଶି ଉଡ୍ର ବା ଉତ୍କଳ ନାମରେ ପରିଚିତ ହେଲା। ବ୍ରହ୍ମ-ପୁରାଣରେ ଉଡ୍ର ଓ ଉତ୍କଳ ଏକ ପ୍ରଦେଶରୂପେ କଥିତ। ଖୁବ୍ ସମ୍ଭବତଃ ଭରତ ନାଟ୍ୟଶାସ୍ତ୍ର ବ୍ରହ୍ମ ପୁରାଣର ଉଡ୍ର ବା ଉତ୍କଳକୁ ଲକ୍ଷ୍ୟକରି ଉଡ୍ରମାଗଧୀ ପ୍ରବୃତ୍ତିର ଉଲ୍ଲେଖ କରିଅଛି। ଉଡ୍ର ମଗଧର ନିକଟବର୍ତ୍ତୀ ହେତୁ ତହିଁରେ ପ୍ରଚଳିତ ରୀତି ଏକ ଥିଲା। ବର୍ତ୍ତମାନ ଓଡ଼ିଶା ଉତ୍କଳ ନାମରେ ମଧ୍ୟ କଥିତ। ଉତ୍କଳର କଳାବିଦ୍ୟା ପ୍ରଶସ୍ତ। ତେଣୁ ସଙ୍ଗୀତ-କଳା ବିଷୟକ ଗ୍ରନ୍ଥର ନାମ ଉତ୍କଳ ସଙ୍ଗୀତ-ପଦ୍ଧତି ରଖାଗଲା।

ଭାରତବର୍ଷର ଅନ୍ତର୍ଗତ ଆମ୍ଭର ଓଡ଼ିଶା ପ୍ରଦେଶରେ ସଙ୍ଗୀତ-କଳା ବହୁ ପୁରାକାଳରୁ ବିଦ୍ୟମାନ ଅଛି। ଏହି ଓଡ଼ିଶା ସ୍ୱାଧୀନ ଥିବା ସମୟରେ ବିଶେଷଭାବେ ସଙ୍ଗୀତ ଶାସ୍ତ୍ରୀୟ ଉଚ୍ଚାଙ୍ଗ ରୀତିରେ ସାଧନା କରାଯାଉଥିଲା ଓ ଗବେଷଣା ମଧ୍ୟ ହେଉଥିଲା। ତାହା ସାମବେଦରୁ ଜାତ; ଭାରତୀୟ ସଙ୍ଗୀତ-ଶାସ୍ତ୍ର, ନାରଦଶିକ୍ଷା, ଭରତ ସୂତ୍ର, ସଙ୍ଗୀତ ରତ୍ନାକର, ସଙ୍ଗୀତ ପାରିଜାତ ଓ ଶିବ ସଂହିତା ଇତ୍ୟାଦି ପୁରାତନ ଗ୍ରନ୍ଥକୁ ଅନୁସରଣ କରି ସଙ୍ଗୀତ ଅନୁଶୀଳନ ହେଉଥିଲା। ତାହା ଓଡ଼ିଶାର ସଙ୍ଗୀତ ଗ୍ରନ୍ଥ, ଗୀତ

ପ୍ରକାଶ, ସଙ୍ଗୀତ ସରଣୀ, ସଙ୍ଗୀତ ମୁକ୍ତାବଳୀ ଓ ସଙ୍ଗୀତ ନାରାୟଣ ପୁସ୍ତକମାନଙ୍କରୁ ପ୍ରମାଣ ମିଳୁଅଛି। ସୂର୍ଯ୍ୟବଂଶୀ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ଏହି ସଙ୍ଗୀତ-ଚର୍ଚ୍ଚା ପରାକାଷ୍ଠା ଲଭିଥିଲା। ଭାରତର ପ୍ରସିଦ୍ଧ କ୍ଷେତ୍ର ପୁରୀଧାମରେ ୰ହରିଦାସ ସ୍ୱାମୀ ବହୁବର୍ଷ ବାସ କରିଥିଲେ। ତାଙ୍କରି ପ୍ରଭାବରୁ ଓଡ଼ିଶାର ସଙ୍ଗୀତ-ଚର୍ଚ୍ଚା ମଧ ଉତ୍କର୍ଷ ଲାଭ କରିଥିଲା। ସେ ବୃନ୍ଦାବନରେ ରହିବାବେଳେ ତାଙ୍କଠାରୁ ମୋଗଲ ବାଦଶାହ ଆକବରଙ୍କ ଦରବାରର ସଙ୍ଗୀତଜ୍ଞ ମିଆଁ ତାନ୍‌ସେନ୍ ହିନ୍ଦୁ ବ୍ରାହ୍ମଣ ସନ୍ତାନ ଥିବା ସମୟରେ ଶିକ୍ଷା କରିଥିଲେ। ବର୍ତ୍ତମାନ ତାହାର ସମ୍ପୂର୍ଣ୍ଣ ବିଭାଗ ପ୍ରାୟ ପ୍ରକାଶ ପାଉନାହିଁ। ବର୍ତ୍ତମାନ ପ୍ରଚଳିତ ହିନ୍ଦୁସ୍ଥାନୀ ସଙ୍ଗୀତର ମୂଳରୀତି ତାନେସନ୍‌ଙ୍କ ପ୍ରଚାରିତ ସଙ୍ଗୀତକୁ ବିଶେଷ ଅନୁସରଣ କରେ। ତାହା ଭାରତୀୟ ସଙ୍ଗୀତ ଶାସ୍ତ୍ର ଭିତ୍ତିରେ ଓଡ଼ିଶାର ସଙ୍ଗୀତ ଚଳିଆସୁଥିବା ଚିରାଚରିତ ନୀତି ଅଟେ। ଶାସ୍ତ୍ରୀୟ ଉଚ୍ଚାଙ୍ଗ ରୀତିରେ ଶୁଦ୍ଧ ରାଗ, ଶୁଦ୍ଧ ତାଳ, ଶୁଦ୍ଧ ଉଚ୍ଚାରଣ, ଶୁଦ୍ଧବାଣୀ, ଶୁଦ୍ଧ ତାନ, ଗମକ, ଅଳଙ୍କାର, ବିଳମ୍ବିତ, ମଧ, ଦ୍ରୁତଲୟ ଶୁଦ୍ଧ ଓ ଗୌଡ଼ୀ ଅନୁସାରେ ରାଗାନୁଗତ ଓ ଲୟାନୁଗତ ପ୍ରବନ୍ଧ ସହିତ ବିଶେଷତଃ ସୂଡ଼ ନିୟମରେ ଓ କ୍ଷୁଦ୍ର ଗୀତ ଅନୁସାରେ ଗାନବାଦନ କରିବା ଉତ୍କଳ ବା ଓଡ଼ିଶୀ ସଙ୍ଗୀତର ରୂପ ଅଟେ। ତାହା ପୁରାକାଳରୁ ଚଳି ଆସୁଥିଲା। ୧୬୦୦ ଶତାବ୍ଦୀରେ ଓଡ଼ିଶାର ଶାସନରେ ନାନା ବିପର୍ଯ୍ୟୟ ହେତୁ ଓଡ଼ିଶା ନାନା ଶାସନାଧୀନ ହେଲା। ଓଡ଼ିଶାବାସୀଙ୍କର ଧନ-ଜୀବନ ଉପରେ ନାନା ବିପଦ ଆସି ପଡ଼ିବାରୁ ସଙ୍ଗୀତକଳାର ଗବେଷଣା ଓ ସାଧନାରେ ବିଶେଷ

ବ୍ୟାଘାତ ଘଟିଲା। ଲକ୍ଷଣଯୁକ୍ତ ଉଚ୍ଚାଙ୍ଗ ସଙ୍ଗୀତ ଓ ତାହାର ଭାଷା କେହି ଚର୍ଚ୍ଚା କି ସାଧନା କରିପାରିଲେ ନାହିଁ। ତାହା ଚାପାପଡ଼ି ରହିଲା ଏବଂ ତାହା ସହିତ ସଙ୍ଗୀତରେ ବ୍ୟବହାର କରାଯାଉଥିବା ଭାଷା ଓ ରାଜକୀୟ ଓଡ଼ିଆ ଭାଷାର କ୍ରମେ ଅବସାନ ହେଲା। ଲୋକଙ୍କ ଭାଷାରେ ଓଡ଼ିଆମାନେ ଯାବତୀୟ କାର୍ଯ୍ୟ ସମାହିତ କରିବାକୁ ଅଭ୍ୟସ୍ତ ହେଲେ। ଏହି ସମୟରେ ଓଡ଼ିଆ ସାହିତ୍ୟିକ କବିମାନେ ଲୋକଙ୍କ ଭାଷାରେ ନାନା ଗୀତ ଛାନ୍ଦମାନ ଆଦିରସରେ ରଚନା କଲେ। ରାଧାକୃଷ୍ଣ ପ୍ରେମ ବର୍ଣ୍ଣନା ଓ ନାୟକ-ନାୟିକା-ପ୍ରେମ ବର୍ଣ୍ଣନାରେ ଛାନ୍ଦ ଓ ଗୀତମାନ ଲେଖି ପ୍ରଚାର କରି ସେମାନେ ମାତ୍ର ଓଡ଼ିଆ ଲୋକ ଭାଷାକୁ ବଞ୍ଚାଇ ରଖିଲେ; କିନ୍ତୁ କବିମାନେ ଓଡ଼ିଶାର ଚିରାଚରିତ ସଙ୍ଗୀତ ବିଧି ଅନୁସାରେ ରାଗ ଓ ତାଳ ନାମ କେବଳ ଲେଖି ଦେଶର ପ୍ରଚଳିତ ଭାଷାରେ ଗୀତ ଓ ଛାନ୍ଦ ରଚନା କରିବା ଛଡ଼ା ସେହି ରାଗ ତାଳରେ ରଚିତ ଗୀତ ଛାନ୍ଦ ସବୁ ଠିକ୍ ନିୟମରେ ତାଳଲୟ, ରାଗରାଗିଣୀ, ଅଳଙ୍କାର, ଗମକ ସହିତ ଗାଇ ହେଉଛି କି ନା ତାହାର ସିଦ୍ଧାନ୍ତ ପ୍ରମାଣ କରିବା ସମ୍ବନ୍ଧେ କିଛି କରିପାରି ନାହାନ୍ତି। ପୁରାତନ ସଙ୍ଗୀତରେ ନାୟକ-ନାୟିକା-ପ୍ରେମ ବର୍ଣ୍ଣନା ଆଦି ରସାତ୍ମକ ଭାବ ପ୍ରାୟ ଦେଖାଯାଏ ନାହିଁ। ତାହାର ଭାଷା ପୃଥକ୍ ଓ ସ୍ତବ ସ୍ତୁତି ବିଷୟକ ଅଟେ ଓ ତାହା ରାଗ ତାଳ ଛନ୍ଦ ନିୟମର ଅନ୍ତର୍ଗତ। ବର୍ତ୍ତମାନ ଓଡ଼ିଆ ଭାଷାରେ କବିମାନଙ୍କର ଯେଉଁ ଗୀତ ପ୍ରଚାର ହୋଇ ବୋଲାଯାଉଅଛି ତାହା ଲୋକଗୀତ ବା ପଦ୍ୟାବୃତ୍ତି ମାତ୍ର। ଦେଶୀୟ ଭାଷାଗୀତ ଯାହା କୁହାଗଲା,

ତାହା ଉଚ୍ଚାଙ୍ଗ ସଙ୍ଗୀତ ରୂପେ ଧରାଯାଇ ନ ପାରେ। ଅକ୍ଷର-ଚିହ୍ନାଳିଙ୍କର ଗୀତ ଗାଇଲାଭଳି ତାହା ଅଟେ।

ଏଠାରେ ଗୀତ ଗାଇବା ଲୋକ ସଙ୍ଗୀତ-ଶାସ୍ତ୍ରରେ ସାଧନା-ହୀନ ଓ ଅନଭିଜ୍ଞଙ୍କୁ ବୁଝାଉଛି; କିନ୍ତୁ ସେ ଉଚ୍ଚାଙ୍ଗ ସଙ୍ଗୀତ ଗାଇପାରେ ନାହିଁ। ଦୁଃଖର କଥା, ସଙ୍ଗୀତର ସାଧନା ଓ ଗବେଷଣା ପରିବର୍ତ୍ତେ ଲୋକେ ଇଛା ଅନୁସାରେ ରାଗରାଗିଣୀ ପ୍ରତି ଦୃଷ୍ଟି ନରଖି ଗାନ କରୁଥିବାରୁ ଓଡ଼ିଆ ସଙ୍ଗୀତର ଗୌରବହାନି ହେଉଅଛି। ଏଭଳି ସଙ୍ଗୀତ ପ୍ରତି ଅନାସ୍ଥା ଦେଖି ମଧୁପୁରର ସଙ୍ଗୀତ ବିଶାରଦ ୰ପଟ୍ଟାୟତ ବଳଦେବ ଚନ୍ଦ୍ର ଧୀର ଓଡ଼ିଶାର ଉଚ୍ଚାଙ୍ଗ ସଙ୍ଗୀତର ପୁନରୁଦ୍ଧାର ଓ ପ୍ରଚାର ନିମନ୍ତେ ଆଜୀବନ ସଙ୍ଗୀତ ଗବେଷଣା କରି, ଉତ୍କଳର ପ୍ରକୃତ ସଙ୍ଗୀତର ପୁନରୁଦ୍ଧାର ଓ ପ୍ରଚାର ନିମିତ୍ତ ବହୁ ଶାସ୍ତ୍ର ଆଲୋଚନା କରି ଓ ଭାରତର ପ୍ରଧାନ ସଙ୍ଗୀତଜ୍ଞଙ୍କ ସହିତ ପରାମର୍ଶ କରି ସଙ୍ଗୀତ ବିଷୟକ ନାନା ତତ୍ତ୍ୱପୂର୍ଣ୍ଣ ଲେଖା ଲେଖି ଯାଇଅଛନ୍ତି। ସେହି ଅମୂଲ୍ୟ ସଙ୍ଗୀତ ବିଷୟକ ତତ୍ତ୍ୱମାନ ଅବଲମ୍ବନ କରି ଏହି ଗ୍ରନ୍ଥ ସଂକଳନ କରାଯାଇଅଛି। ସେ ଯାହାସବୁ ଲେଖି ଯାଇଅଛନ୍ତି, ତାହା ସଂକଳନ କଲେ ଏକ ଅମୂଲ୍ୟ ବିଶାଳ ଗ୍ରନ୍ଥ ହେବ।

ଓଡ଼ିଶାର ସଙ୍ଗୀତ ଗ୍ରନ୍ଥମାନ ଲେଖାଥିବା ଯାହା ଉପରୋକ୍ତମତେ ଲେଖିଅଛୁ, ସେହି ଗ୍ରନ୍ଥ ଲିଖିତ ବିଷୟମାନ ଅତି ଦୁର୍ବୋଧ ଓ ମୂଳ ଶାସ୍ତ୍ରର ସାମାନ୍ୟ ଅଂଶ ସଂକ୍ଷେପରେ ଲେଖା ଅଟେ। ତାହା ସବୁ ଅନୁଶୀଳନ ଓ ଗବେଷଣାରେ ମୂଳ

ଶାସ୍ତ୍ର ସହିତ ମେଳ ରଖି ଏ ଗ୍ରନ୍ଥ ଲେଖା ହୋଇଅଛି। ଓଡ଼ିଶୀ ଗୀତ ମଧ୍ୟରେ ଯେତେ ରାଗ-ରାଗିଣୀର ନାମ ଲେଖାଅଛି, ତନ୍ମଧ୍ୟରେ ପ୍ରାଚୀନ ସଙ୍ଗୀତ ପାରିଜାତ ଓ ସଙ୍ଗୀତ ରତ୍ନାକର ଶାସ୍ତ୍ରର ଅଂଶକୁ ନିଆଯାଇଛି କେତେକ ରାଗିଣୀ ଉକ୍ତ ମୂଳ ଗ୍ରନ୍ଥକୁ ଅନୁସରଣ କରି ପୂର୍ବାଚାର୍ଯ୍ୟ ଓ କବିମାନେ ପ୍ରଚାର କରିଥିବା ଶାସ୍ତ୍ରରୁ ସୃଷ୍ଟି ହୋଇଥିବା ସଙ୍ଗୀତ ଗ୍ରନ୍ଥ ହେଲା— ରାଗଲକ୍ଷଣ, ଲକ୍ଷ୍ୟସଙ୍ଗୀତ, ରାଗ କଳ୍ପଦ୍ରୁମାଙ୍କୁର, ସଂଗ୍ରହ ଚୂଡ଼ାମଣି, ଗୀତ ପ୍ରକାଶ, ସଙ୍ଗୀତ ମୁକ୍ତାବଳୀ, ସଙ୍ଗୀତ ନାରାୟଣ ଓ ସଙ୍ଗୀତ ସରଣୀ। ତାହା ସବୁ ଯେଉଁ ଯେଉଁ ଗ୍ରନ୍ଥରେ ପ୍ରମାଣ ଅଛି, ତାହାର ସଂଜ୍ଞମାନ ବିଷ୍ଣୁପୁରାଣ, ଶିବ ପୁରାଣ, ନାରଦ ଶିକ୍ଷା, ବିଶ୍ବାବସୁ, ମତଙ୍ଗ, ଦତ୍ତିଲ, ତୁମ୍ବୁରୁ, କୋହଳ, ଅହୃଦୟ ଆଦି ଗ୍ରନ୍ଥ ଅନୁଶୀଳନ କରାଯାଇଅଛି। ସାମବେଦ ସଙ୍ଗୀତର ମୂଳ ଅଟେ। ତହିଁରୁ ପୁରାଣ, ସଂହିତା ଓ ଭରତ ସୂତ୍ର ଆଦି ଗ୍ରନ୍ଥ ଓ ନାଟ୍ୟ ମନୋରମା, ସଙ୍ଗୀତ ଦର୍ପଣ, ସଙ୍ଗୀତ ସୁଧାକର, ସଙ୍ଗୀତ ସାରାମୃତ ପ୍ରଭୃତି ସଙ୍ଗୀତଶାସ୍ତ୍ରମାନ ରଚିତ ହୋଇଅଛି। ଏକାଦଶ ଦ୍ଵାଦଶ ଶତାବ୍ଦୀ ମଧ୍ୟରେ ଶାର୍ଙ୍ଗଦେବଙ୍କ ସଙ୍ଗୀତ ପାରିଜାତ ରଚନା ହୋଇଅଛି। ସଙ୍ଗୀତ ପାରିଜାତ ମତକୁ ମଧ୍ୟ ହନୁମାନ ମତ କହନ୍ତି। ସଙ୍ଗୀତ ପାରିଜାତ ଲିଖିତ ବିଷୟମାନ ପ୍ରାଚୀନ ଗ୍ରନ୍ଥଲିଖିତ ବିଷୟ ଅପେକ୍ଷା ସମ୍ୟକ୍ ସରଳ ସୁବୋଧ ହେବାରୁ ତାହା ସମସ୍ତ ଭାରତରେ ବିଶେଷ ପ୍ରଚାର ହୋଇଥିଲା। ସେଥିରେ ୧୨୫ ଗୋଟି ରାଗ ଲକ୍ଷଣ ଦିଆଯାଇଅଛି। ସଙ୍ଗୀତ ପାରିଜାତରେ ସରଳ ସୁବୋଧ ଭାବେ ରାଗ-ଲକ୍ଷଣ ଦିଆଯାଇଅଛି। ସଙ୍ଗୀତ ରତ୍ନାକରରେ ୨୬୪

ଗୋଟି ରାଗ ଲକ୍ଷଣ ଦିଆଯାଇଅଛି। ସେସବୁ ଓଡ଼ିଶାରେ ପ୍ରଚଳିତ ପୁରାତନ ରାଗନାମ ସହିତ ମେଳ ହେଉଅଛି। ଏହି ହେତୁ ସଙ୍ଗୀତ ପାରିଜାତ ପୁରାତନ ଭାରତୀୟ ସଙ୍ଗୀତ-ଶାସ୍ତ୍ର ପ୍ରାମାଣିକ ଗ୍ରନ୍ଥ ବ୍ୟତୀତ ଅନ୍ୟ ଗ୍ରନ୍ଥ ସେପରି ନୁହେଁ କି ମିଳେ ନାହିଁ। ସେହି ସଙ୍ଗୀତ ପାରିଜାତ ଗ୍ରନ୍ଥ ଓ ଉତ୍କଳ ସଙ୍ଗୀତ ଓ ଅନ୍ୟାନ୍ୟ ସଙ୍ଗୀତଗ୍ରନ୍ଥ, ରତ୍ନାକରକୁ ଅନୁସରଣ କରି ଆସୁଅଛନ୍ତି। ସେହି ଅନୁସାରେ ଓଡ଼ିଶାର ସଙ୍ଗୀତ ଓ ରାଗରାଗିଣୀ ଚଳୁଥିଲା- ଏହା ପ୍ରମାଣ ଅଟେ। ସଙ୍ଗୀତ ପାରିଜାତ ମତର ରାଗରାଗିଣୀ ଦକ୍ଷିଣ ଭାରତ ଓ ଉତ୍ତର ଭାରତ ରାଗରାଗିଣୀ ଲକ୍ଷଣ ସହିତ ଅଧିକାଂଶ ମେଳ ଅଛି। ସଙ୍ଗୀତ ପାରିଜାତ ମତ ବହୁତ ବର୍ଷ ଭାରତରେ ଚଳିବା ପରେ ଦକ୍ଷିଣ ଭାରତରେ ପ୍ରାୟ ୧୭ଶ ଶତାବ୍ଦୀରେ ବେଙ୍କଟ ମଖୀ ଚତୁର୍ଦ୍ଦଣ୍ଡି ପ୍ରକାଶିକା ଗ୍ରନ୍ଥ ପ୍ରଣୟନ କରି ତହିଁରେ ୭୨ ମେଳ ଅନୁସାରେ ବହୁତ ରାଗରାଗିଣୀ ନାମ ସୃଷ୍ଟି କରି ପ୍ରାୟ ୯୨୮ଟି ରାଗର ବର୍ଣ୍ଣନା କରିଅଛନ୍ତି ତାହା କର୍ଣ୍ଣାଟକୀ ନାମରେ ଅଭିହିତ। ଏଥିରେ ମଧ ବହୁତ ଅଚଳ ଓ ଅପ୍ରସିଦ୍ଧ। ତନ୍ମଧ୍ୟରୁ ଅଳ୍ପ କେତେକ ବିଶେଷତଃ ଦକ୍ଷିଣ ଭାରତରେ ଚଳୁଅଛି ଏବଂ ଏହା ଛଡ଼ା ଆହୁରି ଅନେକ ପୁସ୍ତକ ସରଳ ସୁବୋଧଭାବେ ପ୍ରଣୀତ ହୋଇଅଛି; ଯଥା:- ରାଗଲକ୍ଷଣ, ସଙ୍ଗୀତ ସାରାମୃତ, ରାଗବିରୋଧ, ରାଗ କଳ୍ପଦ୍ରୁମାନଙ୍କୁର, ଚନ୍ଦ୍ରିକା ସାର, ଦର୍ପଣ, ଅଭିନବ ରାଗ ମଞ୍ଜରୀ, ଲକ୍ଷ୍ୟସଙ୍ଗୀତ ପ୍ରଭୃତି ଗ୍ରନ୍ଥ। ତନ୍ମଧ୍ୟରୁ ଯେସବୁ ସରଳ ସୁବୋଧ, ତାହାସବୁ ଗବେଷଣା କରାଯାଇଅଛି। ଏସବୁ ଗବେଷଣାରେ ପ୍ରାଚୀନ ସଙ୍ଗୀତ ପାରିଜାତ ଗ୍ରନ୍ଥ ସହିତ

ପ୍ରାୟ ଅଧିକାଂଶ ମେଳ ହେଉଅଛି। ଯାହା ବା ବିଚାର ଅନୁସାରେ ସ୍ୱରସଂଯୋଗଦ୍ୱାରା ଘଟିଥିବା ଜଣାଯାଏ। ସେହି ସଙ୍ଗୀତ ଶାସ୍ତ୍ରମାନଙ୍କ ସହିତ ଓଡ଼ିଶାର ସଙ୍ଗୀତ ମେଳ ହେଉଥିବାରୁ ପ୍ରାଚୀନ ସଙ୍ଗୀତ ଶାସ୍ତ୍ର ଭିତ୍ତିରେ ଓଡ଼ିଶାରେ ପ୍ରଚଳିତ ରାଗରାଗିଣୀ ଓ ତାଳର ପୁନରୁଦ୍ଧାର କରାଯାଇ ତହିଁର ଲକ୍ଷଣ ଦିଆଯାଇଅଛି।

ପ୍ରାଚୀନ ସଙ୍ଗୀତ-ଶାସ୍ତ୍ରରେ ୨୨ଗୋଟି ଶ୍ରୁତି ନିର୍ଣ୍ଣୟ କରାଯାଇ ତହିଁ ଉପରେ ସ୍ୱର ସ୍ଥିତି କରାଯାଇ ରାଗରାଗିଣୀ ନିରୂପଣ କରାଯାଇଅଛି; କିନ୍ତୁ ପ୍ରାଚୀନ ମତେ ଶୁଦ୍ଧ ବିକୃତ ସହିତ ୧୨ଗୋଟି ସ୍ୱର ଧରାଯାଇଥିଲେ ମଧ୍ୟ ପ୍ରଥମେ ଶ୍ରୁତି ବିଚାର ଉପରେ ମୂର୍ଚ୍ଛନା ଓ ରାଗ ରାଗିଣୀର ଲକ୍ଷଣ ଲେଖାହୋଇଅଛି। ସେହିଯୋଗେ ତାହା ଅତି ଜଟିଳ ଓ ଦୁର୍ବୋଧ ହେତୁ ତାହାର ପ୍ରଚାର ବର୍ତ୍ତମାନ ନାହିଁ। ବର୍ତ୍ତମାନ ଯୁଗାନୁରୂପ ଏହି ଗ୍ରନ୍ଥ ଯେତେଦୂର ସରଳ, ସୁବୋଧ ଓ ସର୍ବବ୍ୟାପୀ ହେବ ତଦନୁସାରେ ପ୍ରାଚୀନ ରାଗରାଗିଣୀ ଅନୁଯାୟୀ ଏହି ଗ୍ରନ୍ଥ ପ୍ରଣୟନ ସିଦ୍ଧାନ୍ତ କରାଯାଇଅଛି।

ପ୍ରାଚୀନ ଗ୍ରନ୍ଥକର୍ତ୍ତାମାନେ ପ୍ରଥମେ ଶ୍ରୁତି, ତାପରେ ସ୍ୱର ସ୍ଥାପନ କରିଥିବାରୁ ସ୍ୱରସ୍ଥାପନ ନିମନ୍ତେ ଶ୍ରୁତି ବଣ୍ଟନ ନିୟମ ଅନୁସାରେ ପ୍ରଥମ ଶ୍ରୁତି ତୀବ୍ରା ଉପରେ "ସା" ସ୍ୱରକୁ ସ୍ଥିତି ନ କରି ଚାରିଶ୍ରୁତି ଛନ୍ଦୋବତୀ ଉପରେ "ସା" ସ୍ୱର ସ୍ଥିତି ରଖି ସେହି ଭିତ୍ତିରେ ଅନ୍ୟ ସ୍ୱର 'ରି-ଗ-ମ-ପ-ଧ-ନି' ମାନଙ୍କୁ ଶ୍ରୁତି ବଣ୍ଟନ ନିୟମ ଅନୁସାରେ ସ୍ଥିତି କରି ତହିଁ ଉପରେ ମୂର୍ଚ୍ଛନା ଓ ରାଗ ରାଗିଣୀ ମାନ ସ୍ଥିର କରିଅଛନ୍ତି; କିନ୍ତୁ ବର୍ତ୍ତମାନ ସର୍ବତ୍ର

ପ୍ରଚଳିତ ଅନୁସାରେ ପ୍ରଥମେ ସ୍ୱର ତାପରେ ଶ୍ରୁତି-ବିଚାର ଉପରେ ସ୍ୱରସ୍ଥିତି ହେଉଥିବାରୁ ସେହି ଅନୁସାରେ "ସା" ସ୍ୱରକୁ ତୀବ୍ରାଶ୍ରୁତି ଉପରେ ସ୍ଥିତି ରଖାଯାଇ ଶ୍ରୁତି ବଣ୍ଟନ ନିୟମ ଅନୁସାରେ ଓ ଆନ୍ଦୋଳନମତେ ରି-ଗ-ମ-ପ-ଧ-ନି ସ୍ୱରମାନ ସ୍ଥିତି କରାଯାଇଅଛି। ଏହି ରୂପ ସ୍ୱର ସାଧାରଣତଃ ଗାଇବା ଲୋକମାନଙ୍କର ପ୍ରଥମେ 'ଆ' ଉଚ୍ଚାରଣରେ ସ୍ୱର ପ୍ରକାଶରୁ ଯେଉଁ ସ୍ୱର ହେବ ତାହା ପ୍ରଥମ ଶ୍ରୁତି ତୀବ୍ରା ଉପରେ ସା-ସ୍ୱରର ସ୍ଥିତି କରାଯାଇଅଛି। ତାହାକୁ ଅନୁସରଣ କରି ଶ୍ରୁତି ବଣ୍ଟନ ଅନୁକ୍ରମେ ସ୍ୱର ସ୍ଥିତି ଗ୍ରହଣ କରାଯିବାରେ ଶୁଦ୍ଧ ସ୍ୱର ସପ୍ତକ- ହିନ୍ଦୁସ୍ଥାନୀରେ ବିଲାବଲ ଓ କର୍ଣ୍ଣାଟୀର ଶଙ୍କରାଭରଣ ଯାହା ଓଡ଼ିଶୀ ବା ଉତ୍କଳର ତାହା ନଟମେଳ ଅଟେ। ଉତ୍କଳ ସଙ୍ଗୀତରେ ବହୁ ପୁରାକାଳରୁ ନଟରାଗର ପ୍ରଚଳନ ଅଛି। ସେ ସମୟରେ ଶଙ୍କରାଭରଣ ରାଗ ଓ ବେଲାବଳୀ ରାଗର ପ୍ରଚଳନ ଅଳ୍ପ ଦେଖାଯାଏ। ପୂର୍ବାଚାର୍ଯ୍ୟମାନେ ନଟରାଗକୁ ଗୋଟିଏ ମେଳ ମଧ୍ୟରେ ନେଇଅଛନ୍ତି। ସେହି ହେତୁ ଉତ୍କଳ ବା ଓଡ଼ିଶୀ ସଙ୍ଗୀତରେ ନଟରାଗ ଶୁଦ୍ଧ ସ୍ୱରସମନ୍ୱିତ ରାଗକୁ ମେଳରୂପେ ଉପଯୁକ୍ତ ଭାବେ ଗ୍ରହଣ କରାଯାଇଅଛି।

ପ୍ରାଚୀନ ଶାସ୍ତ୍ର ରତ୍ନାକରରେ ଶୁଦ୍ଧାଦି ପଞ୍ଚଗୀତି ସମାଶ୍ରିତ ରାଗ, ଗ୍ରାମରାଗ ଓ ଭାଷା-ବିଭାଷାନ୍ତର-ଭାଷା ଜନକ, ଗ୍ରାମରାଗଜନିତ ଭାଷାଦିକ, ରାଗାଙ୍ଗ, ଉପାଙ୍ଗ ଓ ଭାଷାଙ୍ଗ, କ୍ରିୟାଙ୍ଗ ଅନୁସାରେ ରାଗମାନଙ୍କୁ ଶ୍ରେଣୀଭୁକ୍ତ କରାଯାଇ ବିଚାର କରାଯାଇଅଛି। ସଙ୍ଗୀତ ଦର୍ପଣ ଶିବମତ ଅନୁସାରେ ଷଟ୍‌ରାଗ

ଓ ତାହାର ଭାର୍ଯ୍ୟା ୬ଗୋଟି ଲେଖାଏଁ ୩୬ଗୋଟି ଓ ରାଗାର୍ଣ୍ଣବ **ମତରେ ସେହିପରି ୬ଗୋଟି ରାଗ ଓ ତାହାର ୬ଗୋଟି ଲେଖାଏଁ ୩୬ଗୋଟି ଭାର୍ଯ୍ୟା ଓ ହନୁମାନ ମତେ ସେହିପରି ୬ରାଗ ପୁରୁଷ** ଓ ତାହାର ପ୍ରତ୍ୟେକଙ୍କର ସ୍ତ୍ରୀ ୫ଗୋଟି ହିସାବେ ୩୦ଗୋଟି ସ୍ଥିର କରାଯାଇଅଛି; କିନ୍ତୁ ତାହାର ସ୍ୱର ନିରୂପଣ ଆରୋହଣ-ଅବରୋହଣ ବାଦୀ-ସମ୍ବାଦୀ ଆଦି ସଠିକ ସରଳ ସ୍ଥିର ଭାବେ ମିଳେ ନାହିଁ। ସେହିପରି ପ୍ରାଚୀନ ଓଡ଼ିଶାରେ ଚଳୁଥିଲା। ପରବର୍ତ୍ତୀ କାଳରେ ଶାସ୍ତ୍ରୋକ୍ତ ମେଳକୁ ଭିତ୍ତି କରି ମେଳ ଅନୁସାରେ ରାଗ-ରାଗିଣୀ, ଜନକ ମେଳ ଓ ଜନ୍ୟରାଗ ହିସାବରେ ବିଚାର କରାଯାଇଅଛି। ତଦନୁସାରେ ରାଗ ବିବୋଧ ମତରେ ୨୩ଗୋଟି ଜନକ ମେଳ ତାହାର ୭୬ଗୋଟି ଜନ୍ୟରାଗ ନିର୍ଣ୍ଣୟ କରାଯାଇଅଛି। ସ୍ୱରମେଳ କଳାନିଧିରେ ଜନକ ମେଳ ୨୦ ଧରାଯାଇ ଜନ୍ୟରାଗ ୬୦ ଅଛି- ଦକ୍ଷିଣ ଭାରତ କର୍ଣ୍ଣାଟକ ଅନୁସାରେ ବେଙ୍କଟ ମଖୀଙ୍କ ଚତୁର୍ଦ୍ଦଣ୍ଡୀ ପ୍ରକାଶିକା ଅନୁସାରେ ୭୨ ମେଳ ଜନକ ଓ ଜନ୍ୟରାଗ ୮୫୬। ଏହି ରୂପେ ମୋଟ ୯୨୮ ରାଗ ନାମ ନିରୂପଣ କରିଅଛନ୍ତି; କିନ୍ତୁ ଓଡ଼ିଶାରେ ସେହି ପ୍ରାଚୀନ ମତ ଅନୁସାରେ ରାଗ ବିଚାର ଥାଇ ଉପରୋକ୍ତ କାରଣମାନଙ୍କରୁ ଚର୍ଚ୍ଚା ନ ହେବାରୁ ତାହା ସେହିପରି ରହିଅଛି। ବର୍ତ୍ତମାନ ସେ ସମସ୍ତ ଓ ଯୁଗପ୍ରଚଳିତ ରୀତି ନୀତି ଢ଼ଙ୍ଗ ଶାସ୍ତ୍ରମାନଙ୍କ ଦୃଷ୍ଟେ ହିନ୍ଦୁସ୍ଥାନୀ ସଙ୍ଗୀତକୁ ୧୦ଗୋଟି ଥାଟ ବା ଜନକ ମେଳ ସ୍ଥିର କରାଯାଇ ତାହାର ଜନ୍ୟରାଗ ନିରୂପଣ ହୋଇ ତାହା ସରଳ ସୁବୋଧ ହୋଇ ଜନ-ସମାଜରେ ଆଦୃତ ଓ ପ୍ରସିଦ୍ଧି ଲାଭ କରିଅଛି ଏବଂ ସେଥିରେ ସମସ୍ତ

ରାଗରାଗିଣୀ ଗାଇବାପକ୍ଷେ ଆଦୌ ଅସୁବିଧା ନାହିଁ। ସେହି ଅନୁସାରେ ଓଡ଼ିଶାରେ ପୂରାକାଳରୁ ଏ ପର୍ଯ୍ୟନ୍ତ ଯେତେ ରାଗରାଗିଣୀ ଚଳି ଆସୁଛି ସେହି ସବୁକୁ ଓଡ଼ିଶାର ଢ଼ଙ୍ଗଗାୟକୀ ଅନୁସାରେ ଜନକ ଓ ଜନ୍ୟରାଗ ଅନୁସାରେ ସରଳ ଓ ସୁବୋଧ ହେବା ନିମନ୍ତେ ଖୁବ୍ କମରେ ୧୦ଗୋଟି ମେଳ ନିଶ୍ଚୟ କରାଯାଇଅଛି। ତହିଁରେ ସମସ୍ତ ରାଗ ରାଗିଣୀ ଗାଇବାକୁ ଅତି ସହଜ ଓ ଶୁଦ୍ଧ ଅଟେ। ଶାସ୍ତ୍ରରେ ଷଡ଼ଜ ଗ୍ରାମରେ ୭, ମଧ୍ୟମ ଗ୍ରାମରେ ୭ଗୋଟି ମୂର୍ଚ୍ଛନା ବିଚାର କରାଯାଇଅଛି। ସେହି ମେଳମାନଙ୍କରୁ ରାଗରାଗିଣୀ ସୃଷ୍ଟ ହୋଇଅଛି। ସେସବୁ ବିଶେଷ ବିଚାର କରାଯାଇ ଏହି ଗ୍ରନ୍ଥ ପ୍ରଣୀତ ହୋଇଅଛି। ଏଥିରେ ମନଗଢ଼ା କିଛି ହୋଇ ନାହିଁ। ସମୟାନୁରୂପ ଶାସ୍ତ୍ରୀୟ ପ୍ରମାଣ ଅନୁସାରେ ସ୍ଥିର କରାଯାଇଅଛି। ଓଡ଼ିଶୀ ରାଗରାଗିଣୀର ୧୦ଗୋଟି ମେଳ ମଧ୍ୟରୁ ଶୁଦ୍ଧ ମେଳ ନଟ, ଯାହା ଉପରେ କହିଅଛୁଁ ଏବଂ ସେହିପରି କଲ୍ୟାଣ, ଶ୍ରୀରାଗ-ଗୌରୀ -ବରାଡ଼ୀ -ପଞ୍ଚମ-ଧନାଶ୍ରୀ-କର୍ଣ୍ଣାଟ -ଭୈରବୀ-ଶୋକବରାଡୀ। ଏଗୁଡ଼ିକ ମଧ୍ୟରୁ ଶୋକବରାଡ଼ୀ ଭିନ୍ନ ଅନ୍ୟାନ୍ୟ ସମସ୍ତଙ୍କୁ ପୂର୍ବାଚାର୍ଯ୍ୟମାନେ ସେମାନଙ୍କ ଗ୍ରନ୍ଥରେ ମେଳକର୍ତ୍ତାରୂପେ ଗ୍ରହଣ କରିଅଛନ୍ତି। ତାହା ଏହି ଗ୍ରନ୍ଥରେ ମଧ୍ୟ ଗ୍ରହଣ କରାଯାଇଅଛି ଏବଂ ଶୋକବରାଡ଼ୀ ରାଗ ଓଡ଼ିଶୀରେ ବହୁତ ପ୍ରଚଳିତ। ତାହାର ଅନ୍ୟତ୍ର ଚଳନ ଦେଖାଯାଏ ନାହିଁ। ତେଣୁ ତାହାକୁ ମେଳକର୍ତ୍ତା ରୂପେ ଗ୍ରହଣ କରାଯିବା ବାସ୍ତବିକ ଅଟେ। ଏହିପରି ମେଳ ନିରୂପଣ କରାଯାଇ ରାଗରାଗିଣୀ ଯଥାସମ୍ଭବ ନିର୍ଣ୍ଣୟ କରାଯାଇଅଛି।

ପ୍ରାଚୀନ ଗ୍ରନ୍ଥମାନଙ୍କ ମଧ୍ୟରେ ସଙ୍ଗୀତ ପାରିଜାତ ସରଳ, ସୁବୋଧ ଓ ତାହା ସମସ୍ତ ଭାରତ ତଥା ଓଡ଼ିଶାରେ ପ୍ରସିଦ୍ଧ ଓ ପ୍ରଚଳିତ ହୋଇ ଆସୁଅଛି। ତାହା ମୂଳଗ୍ରନ୍ଥ ସଙ୍ଗୀତ ରତ୍ନାକର ଗ୍ରନ୍ଥପରେ ସାର ଗ୍ରନ୍ଥ। ତାହା ଓଡ଼ିଶୀ ସଙ୍ଗୀତ ମୌଳିକ ନୀତି ସଙ୍ଗେ ସମାନ ଓ ତାହା ମଧ୍ୟ ପୁରାତନ। ତାହାକୁ ଓଡ଼ିଶା ସହିତ ଭାରତବାସୀମାନେ ଅନୁସରଣ କରିଆସୁଛନ୍ତି।

ସେହି ଅନୁସାରେ ରାଗରାଗିଣୀ ଓ ନିୟମ ଓଡ଼ିଶୀ ସଙ୍ଗୀତର ମୌଳିକ ନୀତି ଅଟେ ଏବଂ ତତ୍‌ପରେ ଆଉ ଯେ ରାଗରାଗିଣୀ ଓଡ଼ିଶୀ ସଙ୍ଗୀତ କ୍ଷେତ୍ରରେ ଚଳିଆସୁଅଛି ତାହାସବୁ ଯେଉଁ ଯେଉଁ ଗ୍ରନ୍ଥରେ ପ୍ରମାଣ ଅଛି, ତଦନୁସାରେ ସ୍ଥିର ହୋଇ ଲେଖାଯାଇଅଛି। ରାଗରାଗିଣୀ କାହାରି ନିଜସ୍ୱ ନୁହେଁ। ତାହା ସର୍ବବ୍ୟାପୀ। ତହିଁରେ ଭେଦଭାବ ହୁଏ ନାହିଁ କି କାହାରିକୁ ଆପଣାର କରି ଚିନ୍ତା ଯାଇପାରେ ନାହିଁ। ଯେ ସାଧିଲା, ସେ ପାଇଲା। ତାହାକୁ କେହି ବାଧା ଦେଇପାରେ ନାହିଁ ଏବଂ ଯେଉଁ ଦେଶରେ ବ୍ୟବହୃତ ହୁଏ ତାହା ସେହି ଦେଶର ରୀତି ଅନୁସାରେ ଅଙ୍ଗୀଭୂତ ହୁଏ ଓ ତାହାକୁ ଶାସ୍ତ୍ରରେ ଦେଶାଙ୍ଗ କୁହାଯାଇଅଛି।

ଏହି ଗ୍ରନ୍ଥ ପ୍ରଣୟନରେ ନିମ୍ନଲିଖିତ ଗ୍ରନ୍ଥମାନଙ୍କର ଆଲୋଚନା କରାଯାଇଅଛି; ଯଥା:- (୧) ଭରତ, (୨) ସଙ୍ଗୀତ ରତ୍ନାକର, (୩) ସଙ୍ଗୀତ ପାରିଜାତ, (୪) ରାଗ ଲକ୍ଷଣ, (୫) ସଙ୍ଗୀତ କଳ୍ପଦ୍ରୁମାଙ୍କୁର, (୬) ଲକ୍ଷ ସଙ୍ଗୀତ, (୭) ଚନ୍ଦ୍ରିକା, (୮) ଗୀତ ପ୍ରକାଶ, (୯) ସଂଗ୍ରହ ଚୂଡାମଣି, (୧୦) ସଙ୍ଗୀତ ମୁକ୍ତାବଳୀ,

(୧୧) ଶୈବ ସଂହିତା, (୧୨) ଅଭିନବ ରାଗମଞ୍ଜରୀ, (୧୩) ସାରାମୃତ (୧୪) ସଙ୍ଗୀତ ଦର୍ପଣ, (୧୫) ସଙ୍ଗୀତ ସମୟସାର, (୧୬) ରାଗ ବିବୋଧ, (୧୭) ବଙ୍ଗଳାର ସଙ୍ଗୀତ ମଞ୍ଜରୀ, (୧୮) ଉତ୍କଳର ସଙ୍ଗୀତ ନାରାୟଣ, (୧୯) ସ୍ୱରମେଳ କଳାନିଧି, (୨୦) ସଙ୍ଗୀତ ସୁଧାକର, (୨୧) ସଙ୍ଗୀତସାର, (୨୨) ମତଙ୍ଗ, (୨୩) ମଞ୍ଜରୀ, (୨୪) ସଙ୍ଗୀତ ସାରାମୃତ, (୨୫) ଦତ୍ତିଳ ଗ୍ରନ୍ଥମାନଙ୍କ ବ୍ୟତୀତ ଆହୁରି ବହୁ ସଙ୍ଗୀତଶାସ୍ତ୍ର ଆଲୋଚନା କରାଯାଇ ଲେଖାହୋଇଅଛି। ପୁରାତନ ଓଡ଼ିଶା ପ୍ରଚଳିତ ରାଗମାନ ମୂଳ ଶାସ୍ତ୍ର ସହିତ ମେଳ ହୋଇ ପ୍ରଚଳିତ ଗାୟକୀକୁ ଲକ୍ଷ୍ୟ ରଖି ସ୍ଥିର କରାଯାଇଅଛି।

ଏହି ଗ୍ରନ୍ଥର କଳେବର ବୃଦ୍ଧି ବିଶେଷ ହେଲେ ଛପା ଖରଚ ବହୁତ ହେବା ଭୟରେ କେବଳ ଦରକାରୀ ବିଷୟମାନ ଲେଖାଯାଇଅଛି। ଯାହା ଲେଖାଯାଇଅଛି, ତାହା ଯଥେଷ୍ଟ ହେଲେ ମଧ୍ୟ ଏଥିରୁ ଆହୁରି ବିଶେଷ ବିଷୟ ଆବଶ୍ୟକମତେ ମୂଳ ଶାସ୍ତ୍ରମାନଙ୍କରୁ ଗ୍ରହଣ କରାଗଲେ ଏହା ଶ୍ରୀ ବୃଦ୍ଧି ହେବ- ଏହା ସୁନିଶ୍ଚିତ।

ଏହି ଗ୍ରନ୍ଥରେ କେବଳ ସ୍ୱର, ମୂର୍ଚ୍ଛନା, ରାଗରାଗିଣୀ ଓ ଅଳଙ୍କାରାଦି ଗାୟନ ବିଷୟରେ ଲକ୍ଷଣ ଲେଖାହୋଇଅଛି। ପ୍ରବନ୍ଧ ସମ୍ବନ୍ଧେ ଏବଂ ତାଳ ଓ ବାଦ୍ୟାଦିର କେବଳ ଦରକାରୀ ଚଳନୀୟ ନିମନ୍ତେ ଲେଖାଯାଇଅଛି। ଅନ୍ୟାନ୍ୟ ବିଷୟ ଏହାପରେ କ୍ରମଶଃ ସବିଶେଷ ଲେଖାଯିବାର ଓ ଏହି ଗ୍ରନ୍ଥ ଅନୁସାରେ ଲକ୍ଷଣଯୁକ୍ତ

ଗୀତମାନଙ୍କର ସ୍ୱରଲିପି ପ୍ରକାଶ କରିବାର ବାସନା ରହିଲା। ତାହା ଈଶ୍ୱରଙ୍କ କୃପାରୁ ପୂରଣ ହେଉ।

ଓଡ଼ିଶାରେ ବହୁ ପୁରାକାଳରୁ ଉଚ୍ଚାଙ୍ଗ ସଙ୍ଗୀତମାନ ନିସାରି ବୀଣା (ପରଦା ନ ଥିବା ବୀଣା) ଅର୍ଥାତ୍ ତାନପୁରାରେ ଗାୟନ ହେଉଥିଲା, ତାହା ଓଡ଼ିଶାର ପୂର୍ବ ସଙ୍ଗୀତପଣ୍ଡିତ ତାଙ୍କର ସଙ୍ଗୀତ ସରଣୀ ଗ୍ରନ୍ଥରେ ଲେଖିଅଛନ୍ତି ଏବଂ ତାହା ସହିତ ମର୍ଦ୍ଦଳ ବାଦନ ହେଉଥିଲା। ଏହି ମର୍ଦ୍ଦଳ ମଧ୍ୟ ଭାରତର ଆଦି ବାଦ୍ୟଯନ୍ତ୍ର; ସଙ୍ଗୀତ ରତ୍ନାକର ଓ ଗୀତ ପ୍ରକାଶ ଆଦି ଗ୍ରନ୍ଥରେ ଏହାର ପ୍ରମାଣ ଅଛି। ଆଜି ସୁଦ୍ଧା ତାହା ଭାରତରେ ଓ ଓଡ଼ିଶାରେ ସର୍ବତ୍ର ପ୍ରଚଳିତ ଅଛି। ତାହାକୁ ସମସ୍ତେ ଚିହ୍ନନ୍ତି। ସେ ସମ୍ବନ୍ଧେ ପରିଚୟ ଦେବା ଅନାବଶ୍ୟକ। ଏହି ମର୍ଦ୍ଦଳ ନାନା ପ୍ରକାରରେ ପ୍ରସ୍ତୁତ ହୁଏ। ଉଚ୍ଚ ଜାତୀୟ ମର୍ଦ୍ଦଳର ଡାହାଣ ପାଖ ପୁଡ଼ାରେ କିରଣ ଦିଆଯାଇଥାଏ ଓ ବାମ ପାଖ ପୁଡ଼ାରେ ଚୂଡ଼ା ଚକଟି ଅଠାଭଳି ପ୍ରସ୍ତୁତ କରି ଲେପି କିମ୍ବା ଗହମ ଅଟାଚକଟା ଲେପି ବଜାନ୍ତି। ତାହା ବାଦନରେ ଅତି ମଧୁର ଓ ଗମ୍ଭୀର ହୁଏ। ଏହା ଛଡ଼ା ସର୍ବସାଧାରଣ ଦୁଇ ପାଖରେ କିରଣ ଦେଇ ବାଦନ କରନ୍ତି। ତାହାକୁ ପଖଜ କହନ୍ତି ଏବଂ ଏହାର ଅନ୍ୟ ପ୍ରକାର, ଯାହା ଆଦିବାସୀମାନେ ବ୍ୟବହାର କରନ୍ତି ତାହାକୁ ମାଦଳ କହନ୍ତି। ଏହି ମର୍ଦ୍ଦଳକୁ ଦ୍ୱିଖଣ୍ଡିତ କରି ବାଦନ କରିବାରେ ବାୟାଁ ତବଲା (ଖଣ୍ଡ ମର୍ଦ୍ଦଳ) 'ସୃଷ୍ଟି ହୋଇ ବାଦନ ହୋଇ ଆସୁଛି ଏବଂ ମର୍ଦ୍ଦଳକୁ ମୃତ୍ତିକାରେ ପ୍ରସ୍ତୁତ କଲେ ତାହାକୁ ମୃଦଙ୍ଗ ବା ଖୋଳ

କହନ୍ତି ସେହି ମୃଦଙ୍ଗ କେବଳ ହରିନାମ ସଂକୀର୍ତ୍ତନରେ ବାଦନ ହୁଏ।

ଓଡ଼ିଶାରେ ପୁରାକାଳରୁ ଅବଧି ପ୍ରଚଳିତ ତାଳମାନଙ୍କର କେବଳ "ସ୍ଥାୟୀ" ବା ଠିକ୍ ବା ମୂଳ ବାଦ୍ୟାକ୍ଷର ବା ଉକୁଟ ଦିଆଯାଇଅଛି। ତାହା ଗାୟନ ପକ୍ଷେ ଯଥେଷ୍ଟ ଅଟେ; କିନ୍ତୁ ଉକ୍ତ ତାଳମାନଙ୍କର ଉକୁଟର ବିସ୍ତାର-ପ୍ରସ୍ତାରାଦି ଓ ତାକ ବାଦ୍ୟାକ୍ଷର ଲେଖିବା ଅନାବଶ୍ୟକ। ତାହା ସବୁ ସ୍ୱତନ୍ତ୍ର ଗ୍ରନ୍ଥରେ ପ୍ରକାଶ ହେବ। ସେହି ତାଳମାନ ସଙ୍ଗୀତ ରତ୍ନାକର ଆଦି ସଂସ୍କୃତ ଗ୍ରନ୍ଥଲିଖିତ ତାଳ ସହିତ ଠିକ୍ ମେଳ ଅଛି।

ଉତ୍କଳ ସଙ୍ଗୀତରେ ଦ୍ରାବିଡ଼, ତୋଡ଼ିପରଜ, ପଞ୍ଚମ ବରାଡ଼ି ଏହିପରି ଆଉ କେତେକ ରାଗ ଅଛି ଯାହା ଅନ୍ୟତ୍ର ମିଳେ ନାହିଁ। ଏହା ଛଡ଼ା ଏପର୍ଯ୍ୟନ୍ତ ଓଡ଼ିଆ ଗୀତମାନଙ୍କରେ ନିମ୍ନଲିଖିତ ରାଗମାନଙ୍କ ନାମ ଲେଖାଅଛି। ସେହପରି ରାଗନାମ ଶାସ୍ତ୍ରରେ ଲେଖା ମିଳେନାହିଁ। ତାହା ୨ଗୋଟି ରାଗର ନାମ ମିଶ୍ରଣ ଅଟେ; ଅର୍ଥାତ୍ ସେହି ମିଶ୍ରଣ ରାଗ ୨ଗୋଟିର ପ୍ରତ୍ୟେକର ପୃଥକ ପୃଥକ୍ ଲକ୍ଷଣ ଲେଖାଯାଇଅଛି। ସେହି ଲକ୍ଷଣ ଅନୁସାରେ ୨ଗୋଟି ରାଗ ମିଶ୍ରଣ କରି ଗାନ କରିବାକୁ ହେବ। ତାହା ଶାସ୍ତ୍ରମତେ ସାଲଗ ରାଗ ଅଟେ। ତାହାର ଲକ୍ଷଣ ବର୍ଣ୍ଣନା କରିବାରେ ଗ୍ରନ୍ଥର କଳେବର ବୃଦ୍ଧି ଆଶଙ୍କାରେ କରାଯାଇନାହିଁ। ତଥାପି ଆବଶ୍ୟକୀୟ କେତେଗୋଟିର ଲକ୍ଷଣ ସ୍ଥିର କରି ଲେଖାଯାଇଅଛି। ସଙ୍ଗୀତ ସାଧକ ପଣ୍ଡିତମାନେ ୨ଗୋଟି ରାଗର ଲକ୍ଷଣ ସଂଯୋଗ କରି

ଗାନ କରିପାରିବେ- ଏଥିରେ ସନ୍ଦେହ ନାହିଁ। ସେହି ରାଗମାନଙ୍କର ତାଲିକା ନିମ୍ନରେ ଲେଖିଲୁ।

ଯଥା:-୧. ଇମନ୍ ସୁରଠ।
୨. କେଦାର ଭୈରବ।
୩. କେଦାର ମହ୍ଲାର।
୪. କେଦାର କାମୋଦୀ।
୫. କାନଡ଼ା କାଫି।
୬. କଲ୍ୟାଣ ଆହାରୀ।
୭. ଖମ୍ବାଜ ବାହାର।
୮. ଚଳଘଣ୍ଟ କେଦାର । (ଘଣ୍ଟାରବ କେଦାର ମିଶ୍ରଣରେ ହେବ।)
୯. ତୋଡି ମହ୍ଲାର।
୧୦. ତୋଡ଼ି ଜଙ୍ଗଲା।
୧୧. ତୋଡ଼ି ବଙ୍ଗଳା।
୧୨. ତୋଡ଼ି ମୁଖାରୀ।
୧୩. ତୋଡ଼ି ବିରାଡ଼ୀ।
୧୪. ଦେଶ ସୁରଠ।
୧୫. ଦେଶ ବରାଡ଼ୀ।
୧୬. ପାହାଡ଼ିଆ କେଦାର।
୧୭. ବିଭାସ ଗୁଜ୍ଜରୀ।
୧୮. ବସନ୍ତ ମଞ୍ଜରୀ। (ମଞ୍ଜରୀ ରାଗରେ ଓଡ଼ିଆ ଗୀତ

ଲେଖାନାହିଁ। ତେଣୁ ତାହାର ଲକ୍ଷଣ ଏ ଗ୍ରନ୍ଥରେ ନାହିଁ। ମଞ୍ଜରୀ ରାଗ ଶାସ୍ତ୍ରରେ ଅଛି। ବସନ୍ତ ସହିତ ମଞ୍ଜରୀ ମିଶ୍ରଣରେ ହେବ।)

୧୯. ଭୈରବ ମହ୍ଲାର।

୨୦. ଲଳିତ କାମୋଦୀ।

୨୧. ଲଳିତ୍‌ ବସନ୍ତ।

୨୨. ସୁରଠ କେଦାର।

୨୩. ସୁରଠ ଗୁର୍ଜ୍ଜରୀ।

୨୪. ସିନ୍ଧୁ କାମୋଦୀ।

୨୫. ଶୋକ କାମୋଦୀ। (ଶୋକ ବରାଡ଼ୀ ସହିତ କାମୋଦୀ ମିଶ୍ରଣ)

୨୬. ସିନ୍ଧୁ ଭୈରବ।

୨୭. ସିନ୍ଧୁ ଖମ୍ବାଚ।

୨୮. ଶ୍ୟାମ ଗୁର୍ଜ୍ଜରୀ।

୨୯. ସିନ୍ଧୁ ଦେଶାକ୍ଷ।

୩୦. କୁମ୍ଭ କାମୋଦୀ। (କୁମ୍ଭ ରାଗ ଶାସ୍ତ୍ରରେ ମିଳେ ନାହିଁ। ଏହା କାମୋଦୀ ଅଟେ।)

୩୧. ଦେଶ ମଞ୍ଜରୀ।

୩୨. ମଙ୍ଗଳ ଧନାଶ୍ରୀ।

୩୩. ମଙ୍ଗଳ ଭୈରବ।

୩୪. ମଙ୍ଗଳ ଗୁର୍ଜ୍ଜରୀ।

୩୫. ମଙ୍ଗଳ କେଦାର।

ଏହାଛଡ଼ା ଓଡ଼ିଆ ଗୀତରେ ଏରକାଳ କାମୋଦୀ, ଚନ୍ଦ୍ରିକା କାମୋଦୀ, କୁସୁମ ସୌରଭ, ମାନମୋହିନୀ ଓ ମଧୁକରୀ ରାଗନାମ ଲେଖାଅଛି; କିନ୍ତୁ ଏସବୁ ଶାସ୍ତ୍ରରେ ମିଳେ ନାହିଁ। ଏହା କବିଙ୍କର ଭାବନାମ ପରି ବୋଧ ହୁଏ। ଅଥବା ମୁଦ୍ରାକରଙ୍କ ଦୋଷରେ ହୋଇପାରେ; କିନ୍ତୁ ଏରକାଳ କାମୋଦୀ ଓ କୁମ୍ଭକାମୋଦୀକୁ କାମୋଦୀ ରାଗରେ ଗାନ କଲେ ଦୂଷଣୀୟ ନୁହେଁ।

ଏହି ଗ୍ରନ୍ଥରେ ଲିଖିତ ସ୍ୱରମାନଙ୍କର ପରିଚୟ-

ସ-ର-ଗ-ମ-ପ-ଧ-ନି-ଏହି ସାତଗୋଟି ସ୍ୱରାକ୍ଷର ଶୁଦ୍ଧ ସ୍ୱର ଜାଣିବ ଓ ଏହା ମୁଦାରା ବା ମଧ ସପ୍ତକ ଏବଂ ଏହା ନଟମେଳ ଅଟେ।

ରେ-ଗ-ମ-ଧ-ନ ଏହି ସ୍ୱରମାନେ ବିକୃତ ହୁଅନ୍ତି। ରେ-ଗ-ଗ-ଧ-ନ- ବିକୃତକୁ କୋମଳ ଓ ମ-ସ୍ୱର ବିକୃତକୁ ତୀବ୍ର ବାକଡ଼ି ମ-ସ୍ୱର କହନ୍ତି।

କୋମଳ ସ୍ୱରଃ- ରେ ଗ ଧ ନ-ଏହି ସ୍ୱରାକ୍ଷରମାନଙ୍କର ନିମ୍ନରେ —, ଏହିରେଖା ଚିହ୍ନ ଥିଲେ ତାହା କୋମଳ ଓ -ମ- ସ୍ୱରାକ୍ଷର ଉପରେ (।) ଏହି ଉର୍ଦ୍ଧ୍ୱରେଖା ଲେଖାଥିଲେ ତାହା ତୀବ୍ର ମ- ବୁଝାଇବ ଏବଂ ତୀବ୍ରତା (ମ) ସ୍ୱରକୁ ମଧ ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚା କରୁଥିବା ଲୋକେ କଡ଼ି ମ ବୋଲି କହନ୍ତି। ଯେଉଁ ସ୍ୱରାକ୍ଷର ନିମ୍ନରେ (   ) ଏହି ବିନ୍ଦୁଚିହ୍ନ ଲେଖାଥିବା ତାହା ଉଦାରା ସପ୍ତକ ସ୍ୱର। ଯଥାଃ- ସ-ର-ଗ-ମ-ପ-ଧ-ନ-

ଯେଉଁ ସ୍ୱରାକ୍ଷର ଉପରେ ( ) ଏହି ବିନ୍ଦୁ ଚିହ୍ନ ଲେଖାଥିବ ତାହା ତ୍ାରା ସପ୍ତକସ୍ୱର; ଯଥା:- ସ ର ଗ-ମ-ପ-ଧ-ନ-

ସ-ର-ଗ-ମ-ପ-ଧ-ନି- ଅଥବା ସା-ରେ-ଗା-ମା-ପା-ଧା-ନି ଏପରି ଲେଖାଥିବ ତାହା ସପ୍ତକ ସ୍ୱରର ସ୍ୱରାକ୍ଷର ବୁଝାଇବ। ଓଡ଼ିଶା ପ୍ରଚଳିତ ସଙ୍ଗୀତ ଓ ଭାରତୀୟ ସଙ୍ଗୀତର ଶାସ୍ତ୍ରୀୟ ନିୟମ ଅନୁସାରେ ପ୍ରବନ୍ଧରେ ଶୁଦ୍ଧ ସାଲଗ ଓ କ୍ଷୁଦ୍ର ଗୀତ ଅନୁସାରେ ଗାଇବାର ନିୟମ ଅଟେ।

ଯେଉଁ କବିତା ସଙ୍ଗୀତଶାସ୍ତ୍ର ନିୟମାନୁସାରେ ରଚିତ ଓ ଯାହା ନାନାଦି ଅଳଙ୍କାର, ତାଳ, ଗମକ ଓ ଆଳାପ, ବିସ୍ତାର ଓ ଭାବରସକୁ ବିଶ୍ଳେଷଣ କରି ଓ ତାଳ, ଲୟକୁ ବିଳମ୍ବିତ, ମଧ ଓ ଦ୍ରୁତ ଲୟରେ ଓ ମନ୍ଦ୍ର, ମଧ, ତାରା, ଗ୍ରାମସ୍ୱର ସହିତ ବିଧିବଦ୍ଧଭାବେ ଗାନ କରାଯାଏ, ତାହାକୁ ଶୁଦ୍ଧଗୀତ ଓ ଛାୟାଲଗ କହନ୍ତି। ତାହା ଉଚ୍ଚାଙ୍ଗ ସଙ୍ଗୀତ ଅଟେ। ଏହାଦ୍ୱାରା-ଚତୁର୍ବର୍ଗ ଅର୍ଥାତ୍ ଧର୍ମ, ଅର୍ଥ କାମ ଓ ମୋକ୍ଷ ପ୍ରାପ୍ତ ହୁଏ ଏବଂ ଏହା ଦୀର୍ଘାୟୁ, ବଳିଷ୍ଠ ଓ କର୍ମଠ କରାଏ; କଠିନ ରୋଗରୁ ମୁକ୍ତ କରାଏ; ସତ୍‌ମାର୍ଗକୁ ଘେନିଯାଏ; ସମ୍ମାନିତ କରାଏ ଓ ପ୍ରବୃତ୍ତିରୁ ନିବୃତ୍ତିମାର୍ଗକୁ ନେଇଯାଏ। ଏହା କଷ୍ଟସାଧ ହେଲେହେଁ କରଣୀୟ। ଭାଷା, ରାଗ ଓ ତାଳରେ ଦେଶରେ ଚଳୁଥିବା ଗୀତମାନ ସମ୍ପୂର୍ଣ୍ଣ ଲକ୍ଷଣଯୁକ୍ତ ନଥିବା ହେତୁ କ୍ଷୁଦ୍ର ସଙ୍ଗୀତରୂପେ ଧରାହୁଏ।

ଏହା ଚାରିପ୍ରକାର, ତାହା ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି। ସେହି ଚାରିପ୍ରକାର ମଧରେ ଯେ ଧ୍ରୁବପଦା ତାହା ଶୁଦ୍ଧ ପ୍ରବନ୍ଧ

ଗୀତ ନିୟମକୁ ବହୁଳ ଅନୁସରଣ କରେ। ତେଣୁ ତାହା ଉଚ୍ଚାଙ୍ଗ ଜାତୀୟ ମଧ୍ୟରେ ଗଣ୍ୟ। ଚିତ୍ରପଦା, ଚିତ୍ରକଳା ଓ ପାଞ୍ଚାଳୀ ଧ୍ରୁବପଦାଠାରୁ ଲଘୁ। ସେମାନଙ୍କର ଗାଇବା ରୀତି ମଧ୍ୟ ବର୍ଣ୍ଣିତ ହୋଇଅଛି। ସଙ୍ଗୀତ-ଲକ୍ଷଣଯୁକ୍ତ ଗାନ-ବାଦନ ଅସାଧାରଣ ଅଟେ।

ତାଳ ସମ୍ବନ୍ଧେ ଏଥିରେ ସମସ୍ତ ବର୍ଣ୍ଣନା କରାଯାଇଅଛି। ସେହି ସମସ୍ତ ତାଳର ମାତ୍ରା କିମ୍ବା ମାତ୍ରାରେ ଥିବା ଅକ୍ଷର କିମ୍ବା କୌଣସିଠାରେ ମାତ୍ରାରେ ଅକ୍ଷର ନ ଥିଲେ ସେ ସ୍ଥଳେ ପୂର୍ବମାତ୍ରା ଅକ୍ଷରକୁ ଦୀର୍ଘ ଉଚ୍ଚାରଣ କରିବା ନିମନ୍ତେ (୦ ) ଶୂନ୍ୟ, ଓ (।) ସରଳରେଖା ସାଙ୍କେତିକ ଚିହ୍ନ ଲେଖାଅଛି। ତାହା ଯେଉଁଠାରେ ଯେତେଗୋଟି ଲେଖାଥିବା ଓ ମାତ୍ରା-ଗତି ନିରୂପିତ ଥିବ, ସେହି ଅନୁସାରେ ମାତ୍ରା ପୂରଣ କରାଯିବ।

ଏହି ଗ୍ରନ୍ଥରେ ଓଡ଼ିଶାରେ ପ୍ରଚଳିତ ଥିବା ରାଗରାଗିଣୀମାନ ବର୍ଣ୍ଣମାଳା ଅନୁକ୍ରମେ ଲେଖାଯାଇଅଛି; ମାତ୍ର ପ୍ରତ୍ୟେକ ରାଗରାଗିଣୀଙ୍କ ମେଳ ଅନୁସାରେ ଯେପରି ଲକ୍ଷଣ ଲେଖା ହୋଇଅଛି, ସେହିପରି ଗ୍ରହଣ କରାଯିବ। ଏକଗୋଟି ରାଗ ଏକରୁ ଅଧିକ ମେଳରେ ଅଛି। କିନ୍ତୁ ସେହି ରାଗକୁ ଗାଇବା ସମୟେ ତା'ର ଲକ୍ଷଣ ଅନୁସାରେ ଗାନ କରାଯାଏ। ତାହା ଦୂଷଣୀୟ ନୁହେଁ ଏବଂ ରାଗ ମାନଙ୍କର ମୂଳ ଶାସ୍ତ୍ରମାନଙ୍କ ପ୍ରମାଣ ସଂସ୍କୃତ ଶ୍ଳୋକ ସହିତ ଓ ତାହାର ଓଡ଼ିଆଭାଷାରେ ଭାବାର୍ଥ ଓ ଅର୍ଥ ସହିତ ବର୍ଣ୍ଣନା କରାଯାଇଅଛି। ତାହା ଅତି ସରଳ ଓ ସୁବୋଧ ଅଟେ।

ଓଡ଼ିଶାରେ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରଚଳିତ ଥିବା ଗୀତ ଓ ଛାନ୍ଦ ଓ ସ୍ୱାଧୀନ ଓଡ଼ିଶାର ଗୀତମାନ ଯାହା ସଙ୍ଗୀତଶାସ୍ତ୍ରରେ ଉତ୍କୃଷ୍ଟ ରୀତି ଅନୁସାରେ ଅଛି, ସେସବୁ ଏହି ଗ୍ରନ୍ଥରେ ଲେଖାଯାଇଥିବା ରାଗ, ତାଳ ଓ ନିୟମାନୁସାରେ ଗାନ କରିବା ଅତି ସରଳ ଓ ଉଚିତ ଅଟେ ଓ ସ୍ୱରଲିପି କରିବା ପକ୍ଷେ ଅତି ସହଜ ହେବ ଓ ଜନମନ ରଞ୍ଜନ କରିବ, ଶାନ୍ତିଦାୟକ ହେବ ଏବଂ ଜ୍ଞାନୀ ଓ ସଙ୍ଗୀତଶିକ୍ଷାର୍ଥୀ ଓ ଅନୁରାଗୀମାନଙ୍କର ସଙ୍ଗୀତ ପଦ୍ଧତି ଦର୍ଶକ ଓ ରସଭାବବ୍ୟଞ୍ଜକ ହେବ। ଏଥିରେ ସନ୍ଦେହ ନାହିଁ। ଏହି ଗ୍ରନ୍ଥରେ ଦିଆଯାଇଥିବା ରାଗ ଓ ତାଳ ମାନଙ୍କ ବ୍ୟତୀତ ଭବିଷ୍ୟତରେ ଆଉ ଯାହା ନୂତନ ରାଗ ଓ ତାଳରେ ଓଡ଼ିଆ ଭାଷାରେ ଗୀତ ରଚିତ ହେବ ତାହା ଏହି ଗ୍ରନ୍ଥରେ ମେଳମାନଙ୍କ ମଧ୍ୟରେ ରହିପାରିବ ଓ ତାଳ ମଧ୍ୟ ଏଥିରେ ଲେଖାଥିବ। ମାତ୍ରା ଲୟର ନିୟମରେ ପଡ଼ିଯିବ। ଏହି ଗ୍ରନ୍ଥର ନାମ ଉତ୍କଳ ସଙ୍ଗୀତ-ପଦ୍ଧତି ହେଲେ ମଧ୍ୟ ଏହା ସଙ୍ଗୀତ କ୍ଷେତ୍ରରେ ସର୍ବତ୍ର ପ୍ରୟୋଜନରେ ଲାଗିପାରିବ।

ଓଡ଼ିଆ ଭାଷାରେ ଆନ୍ଧ୍ରପ୍ରଦେଶ ସଂଲଗ୍ନ ଓଡ଼ିଶାର ସ୍ଥାନମାନଙ୍କରେ କେତେକ ଓଡ଼ିଆ କବି ଆନ୍ଧ୍ର ପ୍ରଚଳିତ ରାଗ ଓ ତାଳ ଅନୁସାରେ ପାଞ୍ଚାଳୀ ଗୀତ, ଛାନ୍ଦମାନ ଓ କେତେକ ପଦ୍ୟାବଳୀ ରଚନା କରିଥିବାର ଦେଖାଯାଏ। ସେହିପରି ମଧ୍ୟପ୍ରଦେଶ ଓ ବିହାର ଓ ବଙ୍ଗ ଦେଶକୁ ଲାଗି ଓଡ଼ିଶାର ଅଞ୍ଚଳମାନଙ୍କରେ କବିମାନେ ଓଡ଼ିଆ ଭାଷାରେ ରାଗ ଓ ତାଳ ଅନୁସାରେ ଗୀତ, ଛାନ୍ଦ, ଗୀତ ଓ ପଦ୍ୟାବଳୀ ଆଦି ପାଞ୍ଚାଳୀ ରୀତିରେ ରଚନା କରିଥିବା ଦେଖିବାକୁ ମିଳେ। ସେସବୁ ଏହି ଗ୍ରନ୍ଥ ଅନୁସାରେ ଗୀତ ହୋଇପାରିବ।

ପ୍ରାଚୀନ କାଳରୁ ବର୍ତ୍ତମାନ ଅବଧି ପ୍ରଚଳିତ ଗ୍ରନ୍ଥମାନଙ୍କ ଅବଲମ୍ବନରେ ଏହି ଗ୍ରନ୍ଥ ଲିଖିତ ହୋଇଅଛି। ପ୍ରମାଣରୂପେ ଉକ୍ତ ଗ୍ରନ୍ଥମାନଙ୍କର ନିର୍ଦ୍ଦେଶ ଅଛି। ବର୍ତ୍ତମାନ ପ୍ରଚଳିତ ସଙ୍ଗୀତ-ରୀତି ସହିତ ସେସବୁର ସାମଞ୍ଜସ୍ୟ ଦର୍ଶାଇବାରେ ଦୃଷ୍ଟି ଦିଆଯାଇଅଛି। ଭିନ୍ନ ଭିନ୍ନ ସଙ୍ଗୀତ-ପଣ୍ଡିତଙ୍କର ଯେ ଭିନ୍ନ ମତମାନ ପରିଦୃଷ୍ଟ ହୁଏ ସେସବୁ ମଧ୍ୟ ବିଚାର ସମାଧାନ ହୋଇଅଛି। ଯେଉଁ ରାଗ ଯେଉଁ ରସର ପ୍ରାଧାନ୍ୟ ବୋଲି ଲେଖାଅଛି, ସେ ରାଗସବୁ ଅନ୍ୟାନ୍ୟ ରସ ଅନୁସାରେ ରଚିତ ଗୀତମାନଙ୍କରେ ଯୋଗ କରି ଗାଇବାର ମଧ୍ୟ ଶୁଣାଯାଏ।

ମାର୍ଗୀ ସଙ୍ଗୀତ ମୂଳ ଅଟେ। ତାହା କାମାଚାରବଶତଃ ଦେଶୀ ସଙ୍ଗୀତରେ ପରିଣତ ହୋଇଥିବାର ଦେଖାଯାଏ ଯେ ପୂର୍ବକାଳୀନ ପ୍ରାୟ ସଙ୍ଗୀତ-ପଣ୍ଡିତମାନେ ଗ୍ରନ୍ଥମାନଙ୍କରେ ଗାଇବା ଓ ବଜାଇବା ସମ୍ବନ୍ଧେ ବିଶେଷ ଧ୍ୟାନ ଦେଇନାହାନ୍ତି କେବଳ ଦେଶୀ ତାଳ ରାଗରାଗିଣୀ ଇତ୍ୟାଦି ବିଶଦଭାବେ ବର୍ଣ୍ଣନା କରିଅଛନ୍ତି। କିନ୍ତୁ ପ୍ରକୃତ ଶୁଦ୍ଧମାର୍ଗରେ ଗାନକଲେ ପ୍ରକୃତରେ ଅଦ୍ଭୁତ ପ୍ରକ୍ରିୟା ଘଟେ। ପଞ୍ଚଭୂତରେ ଅଦ୍ଭୁତ କ୍ରିୟାକଳାପ ଜନ୍ମାଏ। ପୂର୍ବକାଳରେ ବୈଦିକ ମନ୍ତ୍ର ପାଠ ଓ ଗାନ କରି ଋଷିମାନେ ଜଳ ବୃଷ୍ଟି, ଅଗ୍ନିବର୍ଷଣ ଓ ବାତ୍ୟା ପ୍ରଭୃତି ଅଦ୍ଭୁତ କାର୍ଯ୍ୟ ଇଚ୍ଛାନୁସାରେ ନିୟନ୍ତ୍ରଣ କରି ସମାଧାନ କରୁଥିଲେ। ଯଜ୍ଞରେ ମନ୍ତ୍ର-ଗାନର ଅଦ୍ଭୁତ ପ୍ରଭାବ ଆମ୍ଭେମାନେ ଜନ୍ମେଜୟଙ୍କ ସର୍ପଯଜ୍ଞରେ ଦେଖିବାକୁ ପାଉ। ସର୍ପମାନେ ମନ୍ତ୍ରଗାନଦ୍ୱାରା ଆହୂତ ହୋଇ ଅଗ୍ନି-କୁଣ୍ଡରେ ପତିତ ହେବାକୁ ଲାଗିଲେ। ଏହା ଜାଣି ଇନ୍ଦ୍ରଙ୍କ ସହିତ ତକ୍ଷକଙ୍କୁ ଅଗ୍ନିକୁଣ୍ଡରେ ପକାଇବାକୁ ମନ୍ତ୍ରଗାନଦ୍ୱାରା ଉଦ୍ୟତ ହୁଅନ୍ତେ ଇନ୍ଦ୍ର ଭୟରେ ତକ୍ଷକଙ୍କୁ ତ୍ୟାଗ କରି ସ୍ୱର୍ଗକୁ ଚାଲିଗଲେ। କେବଳ ଆସ୍ତିକଙ୍କ

ତପପ୍ରଭାବଜନିତ ଅନୁରୋଧରେ ତକ୍ଷକ ରକ୍ଷା ପାଇଗଲେ। ଏଥିରୁ ଜଣାଯାଏ ଯେ ମନ୍ତ୍ରଗାନ-ଜ୍ଞାନବଳରେ ଅଦ୍ଭୁତ କ୍ରିୟାକଳାପ ସୁସମାହିତ ହୁଏ। ମୋଗଲ ବାଦଶାହ ଆକବରଙ୍କ ଦରବାରରେ ମିଆଁ ତାନସେନଙ୍କ ଦ୍ୱାରା ଅଗ୍ନିର ଜ୍ୱଳନ ଓ ବୃଷ୍ଟିର ସଞ୍ଚାର ହୋଇଥିବା ଶୁଣାଯାଏ। ସାଧନା ଓ ଅନୁଶୀଳନ ନଥିବାରୁ ତାହା ଅସମ୍ଭବ ପରି ବୋଧ ହେଉଅଛି। ବୈଜୁବାବରା ନାମକ ଗାୟକପ୍ରବର ଗାନ କରି ଅଦ୍ଭୁତଭାବେ ପଥରକୁ ତରାଳାଇ ଦେଇଥିଲେ। ସୁସଙ୍ଗୀତ ଦ୍ୱାରା ହିଂସ୍ରଜନ୍ତୁ ମୁଗ୍ଧ ହୁଏ ଏବଂ ଶୁଷ୍କତରୁ ପଲ୍ଲବିତ ହୁଏ ଓ ରୋଗର ଉପଶମ ହୁଏ। ପ୍ରକୃତିର ରନ୍ଧ୍ରେ ରନ୍ଧ୍ରେ ନାଦର ତରଙ୍ଗ ଚାଲିଅଛି-ସେହି ନାଦକୁ ସଙ୍ଗୀତରେ ପରିଣତ କରି ଉପଯୁକ୍ତ ଭାବେ ସଂଚାଳନ କଲେ ସମସ୍ତ କାର୍ଯ୍ୟ ସଂସାଧିତ ହୋଇପାରିବ। ଉପଯୁକ୍ତ ଭାବେ ସଙ୍ଗୀତରେ ନାଦର ବିନିଯୋଗ ହେଲେ ସଂସାରରେ ଅପୂର୍ବ ମଙ୍ଗଳ ସାଧିତ ହେବ। ପ୍ରକୃତ ସଙ୍ଗୀତଦ୍ୱାରା ମନୁଷ୍ୟର ଆୟୁଷ ବୃଦ୍ଧି ହେବ ଏବଂ ସେ ପରମ ଆନନ୍ଦରେ ଅପୂର୍ବ ସୁଖ ଅନୁଭବ କରିବ। କିନ୍ତୁ ଦୁଃଖର କଥା, ଆଜିକାଲି ଲୋକେ ଯେଉଁ ଦେଶୀ ସଙ୍ଗୀତ ପ୍ରଚଳିତ ଥିଲା ତାକୁ ମଧ୍ୟ ଛାଡ଼ି ବସିଲେଣି ଓ ସାଧାରଣ ଲୋକ ମନୋହରଣ ନିମିତ୍ତ ତାମସା ଧରଣର ପଦ୍ୟାବୃତ୍ତି କରିବାରେ ଆତ୍ମସୁଖ ଲାଭ କରୁଅଛନ୍ତି। ଏହାଦ୍ୱାରା ପ୍ରକୃତ ସଙ୍ଗୀତର ଚର୍ଚ୍ଚା ଲୋପ ହେବା ଉପରେ ବସିଲାଣି। ଯାହା କିଛି ଏ ଦିଗରେ ଉଦ୍ୟମ ହେଉଅଛି, ତାହା ଅତି ସାମାନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ। କେବଳ ସଙ୍ଗୀତର ଦ୍ୱାହି ଦେବା ଚାଲିଛି ମାତ୍ର।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

# ଉତ୍କଳ ସଙ୍ଗୀତ-ପଦ୍ଧତି

ଓଁ ଶ୍ରୀ ପରମାତ୍ମନେ ନମଃ ଓଁ ଶ୍ରୀ ଗୁରବେ ନମଃ
ଓଁ ଶ୍ରୀ ଅନନ୍ତବାସୁଦେବାୟ ନମଃ
ଓଁ ଶ୍ରୀ ସରସ୍ୱତୀଦେବ୍ୟୈ ନମଃ

## ।। ସ୍ୱରପ୍ରକରଣମ୍ ।।

### ମଙ୍ଗଳାଚରଣମ୍

ଭୂମୌ ଭୂମିମୟଂ ଜଳେ ଜଳମୟଂ ବହ୍ନେଃ ସମଂ ବହ୍ନିନା
ବାୟୌ ବାୟୁମୟଂ ସୁଖେ ସୁଖମୟଂ ଭାନୌ ସମଂ ଭାନୁନା ।
ଚନ୍ଦ୍ରେ ଚନ୍ଦ୍ରମୟଂ ଗୁରୌ ଗୁରୁମୟଂ ବ୍ୟକ୍ତୋ ଭବେନ୍ମାୟୟା
ବନ୍ଦେ ନାଦମନାହତଂ ହରିହରବ୍ରହ୍ମାଦିସଂଭାବିତମ୍ ।। ୧ ।।।

ଯେ ଭୂମିରେ ଭୂମିରୂପେ, ଜଳରେ ଜଳରୂପେ, ଅଗ୍ନିରେ ଅଗ୍ନିରୂପେ, ପବନରେ ପବନଭାବେ, ସୂର୍ଯ୍ୟରେ ସୂର୍ଯ୍ୟତୁଲ୍ୟ, ଚନ୍ଦ୍ରରେ ଚନ୍ଦ୍ରମୟ, ଗୁରୁଙ୍କଠାରେ ଗୁରୁରୂପେ ମାୟାରେ ବ୍ୟକ୍ତ ଅଟନ୍ତି, ହରିହର-ବ୍ରହ୍ମାଙ୍କଦ୍ୱାର ପୂଜିତ ସେହି ଅନାହତ ନାଦଙ୍କୁ ନମସ୍କାର କରୁଛି ।

### ଗ୍ରନ୍ଥନାମ

ନୀବୃଦ୍‌ବଭୌ ମଧୁପୁରଂ କିଳ ଯସ୍ୟ ନାମ
ସାମନ୍ତରାଜପରିପାଳିତମୁତ୍କଳେଷୁ।
ଧୀରାହ୍ୱୟସ୍ତଦଧିପଃ ଖଳୁ କୃଷ୍ଣଚନ୍ଦ୍ର-
ସ୍ତସ୍ୟାବରସ୍ତନୁଜନୁର୍ବଳଦେବ ଧୀରଃ।। ୨ ।।
ତେନ ପ୍ରଣୀତମଧିଗମ୍ୟ ଚ ଭାରତୀୟ-
ଗୀତାଖ୍ୟ- ଶାସ୍ତ୍ରମଧୁନା ସୁଚିରଂ ବିଚାର୍ଯ୍ୟ।
ସଙ୍ଗୀତପଦ୍ଧିମିମାଂ କୁରୁତେ ତଦନ୍ତେ
ଶ୍ରୀଶ୍ୟାମସୁନ୍ଦର ଇତି ପ୍ରଥିତାଭିଧାନଃ ।। ୩ ।।

ଉତ୍କଳଖଣ୍ଡରେ ସାମନ୍ତରାଜ୍ୟମାନଙ୍କ ମଧ୍ୟରେ ଯେଉଁ ମଧୁପୁର ରାଜ୍ୟ ଅଛି, ତାହା ସର୍ବତ୍ର ବିଖ୍ୟାତ। ତାହାର ଅଧିପ ଶ୍ରୀ କୃଷ୍ଣଚନ୍ଦ୍ର ଧୀରଙ୍କର କନିଷ୍ଠ ପୁତ୍ର ବଳଦେବଙ୍କଦ୍ୱାରା ବିରଚିତ ଭାରତ ଗୀତିଶାସ୍ତ୍ରକୁ ବର୍ତ୍ତମାନ ବିଚାର କରି ଉତ୍କଳ ସଙ୍ଗୀତ-ପଦ୍ଧତି ତାହାଙ୍କର ଶିଷ୍ୟ ଶ୍ରୀ ଶ୍ୟାମସୁନ୍ଦର ଧୀରଙ୍କଦ୍ୱାରା ବିରଚିତ ହେଲା।

### ଗ୍ରନ୍ଥସ୍ତୁତିଃ

ବହୁଲକ୍ଷଣସଂଯୁକ୍ତୋ ବହ୍ୱର୍ଥୋ ବହୁ ସଂମତଃ।
ବହୁମୋଦକରୋ ରାଜ୍ଞାଂ ବହୁମାନଧନପ୍ରଦଃ ।। ୪ ।।

ଏହା ବହୁ ଲକ୍ଷଣ ସଂଯୁକ୍ତ, ବହୁ ଅର୍ଥ ଓ ବହୁ ସମ୍ମତ ତଥା ବହୁ ଆମୋଦକର ଓ ବହୁ ମାନ-ଧନପ୍ରଦ ଅଟେ।

## ସଙ୍ଗୀତୋତ୍ପତ୍ତିଃ

ପୂର୍ବଂ ଚତୁର୍ଣ୍ଣା ବେଦାନାଂ ସାରମାକୃଷ୍ୟ ପଦ୍ମଭୂଃ ।
ଇମଂ ତୁ ପଞ୍ଚମଂ ବେଦଂ ସଙ୍ଗୀତାଖ୍ୟମକଳ୍ପୟତ୍ ॥ ୫ ॥

ବ୍ରହ୍ମା ଚାରିବେଦରୁ ସାର ସଂଗ୍ରହ କରି ସଙ୍ଗୀତ-ବିଦ୍ୟାକୁ ପଞ୍ଚମ ବେଦରୂପେ ଗ୍ରହଣ କରିଅଛନ୍ତି ।

## ସଙ୍ଗୀତପ୍ରଶସ୍ତିଃ

ସାମବେଦାଦିଦଂ ଗୀତଂ ସଂଜଗ୍ରାହ ପିତାମହଃ । (ସ.ର.)
ଗୀତେନ ପ୍ରୀୟତେ ଦେବଃ ସର୍ବଜ୍ଞଃ ପାର୍ବତୀପତିଃ ।
ଗୋପୀପତିରନନ୍ତୋଽପି ବଂଶୀଧ୍ୱନିବଶଂ ଗତଃ ॥ ୬ ॥
ସାମଗୀତିରତୋ ବ୍ରହ୍ମା ବୀଣାସକ୍ତା ସରସ୍ୱତୀ ।
କିମନ୍ୟେ ଯକ୍ଷଗନ୍ଧର୍ବଦେବଦାନବମାନବାଃ ॥ ୭ ॥
ଅଜ୍ଞାତବିଷୟାସ୍ୱାଦୋ ବାଳଃ ପର୍ଯ୍ୟଂକିକାଗତଃ ।
ରୁଦନ୍ ଗୀତାମୃତଂ ପୀତ୍ୱା ହର୍ଷୋତ୍କର୍ଷଂ ପ୍ରପଦ୍ୟତେ ॥ ୮ ॥
ବନେଚରସ୍ତୃଣାହାରଶ୍ଚିତ୍ରଂ ମୃଗଶିଶୁଃ ପଶୁଃ ।
ଲୁବ୍ଧୋ ଲୁବ୍ଧକ ସଙ୍ଗୀତେ ଗୀତେ ତ୍ୟଜତି ଜୀବିତମ୍ ॥ ୯ ॥
(ସ.ର.)

ତସ୍ୟ ଗୀତସ୍ୟ ମାହାତ୍ମ୍ୟଂ କେ ପ୍ରଶଂସିତୁମୀଶତେ ।
ଧର୍ମାର୍ଥକାମମୋକ୍ଷାଣାମିଦମେବୈକସାଧନମ୍ ॥ ୧୦ ॥
(ବି.ପୁ.)

କାବ୍ୟାଳାପାଂଶ୍ଚ ଯେ କେଚିଦ୍‌ଗୀତାନି ସକଳାନି ଚ ।
ଶବ୍ଦମୂର୍ତ୍ତିଧରସ୍ୟୈତେ ବିଷ୍ଣୋରଂଶା ମହାତ୍ମନଃ ॥ ୧୧ ॥
(ଶି.ପୁ.)

ସଙ୍ଗୀତମପି ସାହିତ୍ୟଂ ସରସ୍ୱତ୍ୟାଃ ସ୍ତନଦ୍ୱୟମ୍ ।
ଆଦ୍ୟମାପାତମଧୁରମନ୍ୟଦାଲୋଚନାମୃତମ୍ ।। ୧୨ ।।
ସଦାନନ୍ଦୈକନିଳୟଂ ସର୍ବେଷାଂ ପ୍ରାଣିନାମପି ।
ସ୍ୱରାଣାଂ ପଲ୍ଲବକରଂ ଦ୍ରାବୟେଚ୍ଛ ଶିଳାମପି ।। ୧୩ ।।
ଚିତ୍ତବୈକ୍ଳବ୍ୟହରଣଂ ଚିତ୍ରରୂପକରଂ ନୃଣାମ୍ ।
କ୍ଷୁତ୍-ପିପାସା-ଶ୍ରମହରଂ ଯତିନାଂ ଚିତ୍ତମୋହନମ୍ ।। ୧୪ ।।
ଜପକୋଟିଗୁଣଂ ଧ୍ୟାନଂ ଧ୍ୟାନକୋଟିଗୁଣୋ ଲୟଃ ।
ଲୟକୋଟିଗୁଣଂ ଗାନଂ ଗାନାତ୍ ପରତରଂ ନ ହି ।। ୧୫ ।।

ବ୍ରହ୍ମା ସାମବେଦରୁ ସଙ୍ଗୀତ ପ୍ରଣୟନ କରିଅଛନ୍ତି । (ସ.ର.) । ସର୍ବଜ୍ଞ ମହାଦେବ ସଙ୍ଗୀତରେ ପ୍ରୀତ ହୁଅନ୍ତି । ଗୋପୀନାଥ କୃଷ୍ଣ ମଧ୍ୟ ବଂଶୀଧ୍ୱନିର ଅଧୀନ । ବ୍ରହ୍ମା ସାମଗାନରେ ଆସକ୍ତ । ସରସ୍ୱତୀ ବୀଣାରେ ଆସକ୍ତା । ଅନ୍ୟପକ୍ଷରେ ଗନ୍ଧର୍ବ-ଦେବ-ଦାନବ-ମାନଙ୍କ କଥା କଣ ବା କହିବା । ସଂସାର ବିଷୟରେ ଅଜ୍ଞାତ ଯେଉଁ ଶିଶୁ ଖଟରେ ଶୋଇଛି, ସେ କାନ୍ଦିଲେ ଗୀତ ଶୁଣି ଅତ୍ୟନ୍ତ ହର୍ଷ ଲାଭ କରେ । ବନଚର ତୃଣାହାରୀ ପଶୁ ମୃଗଶିଶୁ ବ୍ୟାଧର ଗୀତରେ ମୁଗ୍ଧ ହୋଇ ଜୀବନ ତ୍ୟାଗ କରେ । ଏହା ମଧ୍ୟ ଆଶ୍ଚର୍ଯ୍ୟ କଥା । (ସ.ର.)

ସେହି ଗୀତର ମହିମା କିଏ ବା ପ୍ରଶଂସା କରିବାକୁ ସମର୍ଥ ହେବ ? ଏହା ଧର୍ମ-ଅର୍ଥ-କାମ-ମୋକ୍ଷପ୍ରାପ୍ତିର ଏକମାତ୍ର କାରଣ ଅଟେ । (ବିଷ୍ଣୁପୁରାଣ)

ସଙ୍ଗୀତ ଓ ସାହିତ୍ୟ ଏହି ଦୁଇଟି, ଦେବୀ ସରସ୍ୱତୀଙ୍କ ଦୁଇଟି ସ୍ତନ । ଗୋଟିଏ ଆପେ ଆପେ ସହଜରେ ମଧୁର ଅଟେ ଓ ଅନ୍ୟଟି ଆଲୋଚନା କଲେ ମଧୁରୂପେ ଜଣାଯାଏ ।

ଏହା ସ୍ୱରମାନଙ୍କୁ ପଲ୍ଲବିତ କରେ ଓ ଶିଳାକୁ ତରଳାଇ ଦିଏ। ମନୁଷ୍ୟଙ୍କର ମନର ଦୁଃଖକୁ ହରଣ କରେ ଓ ଅତି ମନୋହର ଭାବ ପ୍ରଦାନ କରେ। କ୍ଷୁଧା ପିପାସାର ଶ୍ରମକୁ ନାଶ କରେ ଓ ଯତିମାନଙ୍କର ଚିତ୍ତକୁ ମୁଗ୍ଧ କରେ। ଜପର କୋଟିଗୁଣ ଧ୍ୟାନ, ଧ୍ୟାନର କୋଟିଗୁଣ ହେଉଛି ଲୟ। ଲୟର ଗୋଟିଗୁଣ ଗାନ ଅଟେ। ଗାନଠାରୁ କିଛି ଉତ୍କୃଷ୍ଟ ନାହିଁ।

### ଗୀତପ୍ରାଧାନ୍ୟମ୍

ନୃତ୍ୟଂ ବାଦ୍ୟାନୁଗଂ ପ୍ରୋକ୍ତଂ ବାଦ୍ୟଂ ଗୀତାନୁବୃତ୍ତି ଚ।
ଅତୋ ଗାନଂ ପ୍ରଧାନତ୍ୱାଦତ୍ରାଦାବଭିଧୀୟତେ ॥ ୧୬ ॥

ନୃତ୍ୟ ବାଦ୍ୟ ଅନୁସାରେ ହୁଏ, ବାଦ୍ୟ ଗୀତକୁ ଆଶ୍ରୟ କରି ହୁଏ। ତେଣୁ ଗୀତ ପ୍ରଧାନ, ଏଣୁ ପ୍ରଥମରେ ଗୀତ ବିଷୟ କୁହାଯାଉଅଛି।

### ସଙ୍ଗୀତଫଳିତାର୍ଥଃ

ତ୍ରିବର୍ଗଫଳାଦାଃ ସର୍ବେ ଦାନ-ଯଜ୍ଞ-ଜପାଦୟଃ।
ଏକଂ ସଙ୍ଗୀତବିଜ୍ଞାନଂ ଚତୁର୍ବର୍ଗଫଳପ୍ରଦମ୍ ॥ ୧୭ ॥
(ସ.ର.)

ହରୀଶାଦିସ୍ତୁତୌ ଧର୍ମୌ ଧନକାମୌ ନୃପାଦିତଃ।
ନିଷ୍କାମସ୍ତଦନୁଷ୍ଠାନାନ୍ମୋକ୍ଷମାପ୍ନୋତ୍ୟସଂଶୟମ୍ ॥ ୧୮ ॥
ବୀଣାବାଦନତତ୍ତ୍ୱଜ୍ଞଃ ଶ୍ରୁତି-ଜାତି-ବିଶାରଦଃ।
ତାଳଜ୍ଞଶ୍ଚାପ୍ରୟାସେନ ମୋକ୍ଷମାର୍ଗଂ ପ୍ରଗଚ୍ଛତି ॥ ୧୯ ॥

ଦାନ, ଯଜ୍ଞ, ଜପାଦି ସମସ୍ତେ ତ୍ରିବର୍ଗ ଅର୍ଥାତ୍ ଧର୍ମ, ଅର୍ଥ ଓ କାମ ପ୍ରଦାନ କରନ୍ତି (ଅର୍ଥାତ୍ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାନ କରନ୍ତି। ହରିହରାଦିଙ୍କ ସ୍ତୁତିରେ ଧର୍ମ, ନୃପାଦିଙ୍କ

ସ୍ତୁତିରେ ଅର୍ଥ ଓ କାମ କିନ୍ତୁ ନିଷ୍କାମଭାବରେ ସଙ୍ଗୀତ ଅନୁଶୀଳନ କଲେ ନିଶ୍ଚିତଭାବେ ମୋକ୍ଷ ଲାଭ ହୁଏ। ଯେ ବୀଣା ବାଦନର ତତ୍ତ୍ୱ ଜାଣନ୍ତି, ଶ୍ରୁତି ଓ ଜାତି ବିଷୟରେ ଅଭିଜ୍ଞ ଓ ତାଳଜ୍ଞାନୀ ସେ ଲୋକ ମୋକ୍ଷ ଲାଭ କରେ।

## ସଙ୍ଗୀତଶବ୍ଦାର୍ଥଃ

ଗୀତବାଦ୍ୟୋଭୟଂ ଯତ୍ର ସଙ୍ଗୀତମିତି କେଚନ।
ଗୀତଂ ବାଦ୍ୟଂ ତଥା ନୃତ୍ୟଂ ତ୍ରୟଂ ସଙ୍ଗୀତମୁଚ୍ୟତେ ॥ ୨୦ ॥
ଗୀତବାଦିତ୍ରନୃତ୍ୟାନାଂ ରକ୍ତିଃ ସାଧାରଣୋ ଗୁଣଃ।
ଅତୋ ରକ୍ତିବିହୀନଂ ଯନ୍ନ ତତ୍ ସଙ୍ଗୀତମୁଚ୍ୟତେ ॥ ୨୧ ॥

କେତେକଙ୍କ ମତରେ ଗୀତ, ବାଦ୍ୟ ଉଭୟରେ ସଙ୍ଗୀତ ହୁଏ। ଗୀତ, ବାଦ୍ୟ ଓ ନୃତ୍ୟ ଏହି ତିନିକୁ ସଙ୍ଗୀତ କହନ୍ତି। ଗୀତ, ବାଦ୍ୟ ଓ ନୃତ୍ୟାଦିର ଅନୁରଞ୍ଜନହିଁ ସାଧାରଣ ଗୁଣ। ଏଣୁ ଯାହା ଅନୁରଞ୍ଜନବିହୀନ, ତାହକୁ ସଙ୍ଗୀତ ବୋଲି କୁହାଯାଏ ନାହିଁ।

## ସଙ୍ଗୀତବିଭାଗଃ

ମାର୍ଗଦେଶୀବିଭାଗେନ ସଙ୍ଗୀତଂ ଦ୍ୱିବିଧଂ ମତମ୍।
ମାର୍ଗ ଓ ଦେଶୀ ଭେଦରେ ସଙ୍ଗୀତ ଦ୍ୱିବିଧ।

## ମାର୍ଗଲକ୍ଷଣମ୍

ଦ୍ରୁହିଣେନ ଯଦନ୍ୱିଷ୍ଟଂ ପ୍ରଯୁକ୍ତଂ ଭରତେନ ଚ।
ମହାଦେବସ୍ୟ ପୁରତସ୍ତନ୍ମାର୍ଗାଖ୍ୟଂ ବିମୁକ୍ତିଦମ୍ ॥ ୨୨ ॥

ଯାହା ମହାଦେବଙ୍କ ସମ୍ମୁଖରେ ବ୍ରହ୍ମାଙ୍କଦ୍ୱାରା କଥିତ ଓ ଭରତଙ୍କ ଦ୍ୱାରା ପ୍ରଯୁକ୍ତ, ହାର ନାମ ମାର୍ଗ ଓ ତାହା ମୁକ୍ତି ପ୍ରଦାନ କରେ।

## ଦେଶୀଲକ୍ଷଣମ୍

ତତ୍ତଦେଶସ୍ଥୟା ରୀତ୍ୟା ଯଦ୍‌ସ୍ୟାଲ୍ଲୋକାନୁରଂଜନମ୍।
ଦେଶେ ଦେଶେ ତୁ ସଙ୍ଗୀତଃ ତଦ୍ଦେଶୀତ୍ୟଭିଧୀୟତେ ॥ ୨୩ ॥
ଯଥାନୁଭୂତଦେଶାଚ୍ଚ ଧ୍ୱନେଃ ସ୍ଥାନାନୁଗାଦପି।
ତତୋ ବିନ୍ଦୁସ୍ତତୋ ନାଦସ୍ତତୋ ମାତ୍ରାସ୍ତ୍ୱନୁକ୍ରମାତ୍ ॥ ୨୪ ॥
ବର୍ଣ୍ଣାସ୍ତୁ ମାତ୍ରକୋଦ୍‌ଭୂତା ମାତ୍ରକା ଦ୍ୱିବିଧା ମତା।
ସ୍ୱରବ୍ୟଞ୍ଜନରୂପେଣ ଜଗଜ୍ଜ୍ୟୋତିରିହୋଚ୍ୟତେ ॥ ୨୫ ॥
ଅବଳାବାଳଗୋପାଳୈଃ କ୍ଷିତିପାଳୈର୍ନିଜେଚ୍ଛୟା।
ଗୀୟତେ ସାନୁରାଗେଣ ସ୍ୱଦେଶେ ଦେଶୀତ୍ୟୁଚ୍ୟତେ ॥ ୨୬ ॥
ଦେଶଭେଦାଦ୍ରାଗଭେଦାଦ୍‌ଯଥା ଚିତ୍ତାନୁରଞ୍ଜନମ୍।
ଗାୟନ୍ତି ଶାସ୍ତ୍ରମୁତ୍ସୃଜ୍ୟ ମନଃ କଳ୍ପିତମାର୍ଗତଃ ॥ ୨୭ ॥

ଦେଶ ବିଦେଶର ରୀତି ଅନୁଯାୟୀ ଯାହା ଲୋକଙ୍କ ଚିତ୍ତକୁ ଉଲ୍ଲସିତ କରେ ଓ ପ୍ରତିଦେଶରେ ଗାନ କରାଯାଉଥିବା ଗୀତକୁ ଦେଶୀ କହନ୍ତି। କଣ୍ଠାଦି ସ୍ଥାନମାନଙ୍କ ଅନୁସରଣରୁ ଓ ଦେଶ ବିଶେଷର ଅନୁଭୂତି ପ୍ରକାରରୁ ଧ୍ୱନି ଜାତ ହୁଏ। ଧ୍ୱନିରୁ ବିନ୍ଦୁ, ବିନ୍ଦୁରୁ ନାଦ, ନାଦରୁ ମାତ୍ରା, ମାତ୍ରାରୁ ବର୍ଣ୍ଣମାନ ଜାତ ତାହା ଦ୍ୱିବିଧ। ସ୍ୱର ଓ ବ୍ୟଞ୍ଜନ ରୂପରେ ତାହା ଜଗତର ଜ୍ୟୋତିରୂପେ କଥିତ। ସ୍ତ୍ରୀ, ବାଳକ, ଗୋପାଳ ଓ ରାଜାମାନେ ନିଜ ନିଜ

ଦେଶରେ ସ୍ୱଇଚ୍ଛାରେ ଅନୁରଞ୍ଜନ କରି ଯାହା ଗାଁଆନ୍ତି, ତାହା ଦେଶୀ ନାମରେ କଥିତ। ଦେଶଭେଦ ଓ ରାଗଭେଦରୁ ମନର କଳ୍ପନା ଅନୁସାରେ ଶାସ୍ତ୍ରକୁ ତ୍ୟାଗକରି ଚିତ୍ତାନୁରଞ୍ଜନପୂର୍ବକ ତାହାକୁ ଗାଆନ୍ତି।

### ନିବଦ୍ଧଶ୍ଚାନିବଦ୍ଧଲକ୍ଷଣମ୍

ନିବଦ୍ଧଶ୍ଚାନିବଦ୍ଧଶ୍ଚ ମାର୍ଗୋଽୟଂ ଦ୍ୱିବିଧୋ ମତଃ।
ଆଳାପାଦିନିବଦ୍ଧୋ ଯଃ ସ ଚ ମାର୍ଗଃ ପ୍ରକୀର୍ତ୍ତିତଃ ।। ୨୮ ।।
ଏବଂ ପ୍ରକାରୋ ଦେଶୀ ଯଃ ଜ୍ଞାତବ୍ୟୋ ଗୀତକୋବିଦୈଃ।
ଏବମେତନ୍ମୟାପ୍ରୋକ୍ତଂ ଦେଶ୍ୟା ଉତ୍ପତ୍ତିଲକ୍ଷଣମ୍ ।। ୨୯ ।।
ଯତ୍ତୁ ବାଙ୍‌ମୟକାରେଣ ରଚିତଂ ଲକ୍ଷଣାନ୍ୱିତମ୍।
ଦେଶୀରାଗାଦିଭିଃ ପ୍ରୋକ୍ତଂ ତଦ୍‌ଗାନଂ ଜନରଞ୍ଜନମ୍ ।। ୩୦ ।।
ଲକ୍ଷ୍ୟଲକ୍ଷଣସଂଯୁକ୍ତଂ ନିତ୍ୟଂ ଶ୍ରାବ୍ୟଂ ମନୀଷିଭିଃ।
ଅଲକ୍ଷ୍ୟଲକ୍ଷଣଯୁତଂ ତ୍ୟାଜ୍ୟମାହୁର୍ବିପଶ୍ଚିତଃ ।। ୩୧ ।।

ନିବଦ୍ଧ-ଅନିବଦ୍ଧ ଭେଦରେ ଏହି ମାର୍ଗ ଦ୍ୱିବିଧ କଥିତ। ଆଳାପାଦିରେ ବନ୍ଧା ହେବାକୁ ମାର୍ଗ କହନ୍ତି। ଏହି ପ୍ରକାରରେ ଯେ ଦେଶୀ, ତାହା ଗୀତପଣ୍ଡିତଙ୍କଦ୍ୱାରା ଜ୍ଞାତବ୍ୟ ଅଟେ। ଏହି ପ୍ରକାରରେ ଦେଶୀର ଉତ୍ପତ୍ତି ଲକ୍ଷଣ ମୁଁ କହିଅଛି। ଯାହା ଗାୟକଙ୍କଦ୍ୱାରା ଲକ୍ଷଣଯୁକ୍ତ ହୋଇ ଦେଶୀ ରାଗରେ ରଚିତ ହୁଏ ଓ ଜନ ରଞ୍ଜନ କରେ, ତାହା ଦେଶୀ ଗାନ। ତାହା ଲକ୍ଷ୍ୟ ଲକ୍ଷଣ ଯୁକ୍ତ ହୋଇ ପଣ୍ଡିତଙ୍କଦ୍ୱାରା ସଦାସର୍ବଦା ଶ୍ରବଣଯୋଗ୍ୟ ହୁଏ। ଲକ୍ଷଣଯୁକ୍ତ ନହେବା ଗାନକୁ ତ୍ୟାଗ କରିବ, ଏହା ପଣ୍ଡିତମାନେ କହନ୍ତି।

## ନାଦଲକ୍ଷଣମ୍

ଇଦାନୀ ସଂପ୍ରବକ୍ଷ୍ୟାମି ନାଦଲକ୍ଷଣମୁତ୍ତମମ୍ ।
ନ ନାଦେନ ବିନା ଗୀତଂ ନ ନାଦେନ ବିନା ସ୍ୱରାଃ ।। ୩୨ ।।
ନ ନାଦେନ ବିନା ନୃତ୍ୟଂ ତସ୍ମାନ୍ନାଦାତ୍ମକଂ ଜଗତ୍ ।
ନାଦରୂପଃ ସ୍ମୃତୋ ବ୍ରହ୍ମା ନାଦରୂପୋ ଜନାର୍ଦ୍ଦନଃ ।
ନାଦରୂପା ପରାଶକ୍ତି ନାଦରୂପୋ ମହେଶ୍ୱରଃ ।। ୩୩ ।।
(କଳ୍ପଦ୍ରୁମ ଓ ବୃହଦ୍ଦେଶୀ ମତଙ୍ଗ)

ବର୍ତ୍ତମାନ ଉତ୍ତମ ନାଦର ଲକ୍ଷଣ କହିବି । ନାଦ ବିନା ଗୀତ ହୁଏ ନାହିଁ, ନାଦ ବିନା ସ୍ୱର ହୁଏ ନାହିଁ କି ନାଦ ବିନା ନୃତ୍ୟ ମଧ୍ୟ ହୁଏ ନାହିଁ । ତେଣୁ ଏହି ଜଗତ୍ ନାଦମୟ ଅଟେ । ବ୍ରହ୍ମା ନାଦରୂପୀ, ଜନାର୍ଦ୍ଦନ ନାଦରୂପୀ, ଶକ୍ତିଦେବୀ ଦୁର୍ଗା ସେ ନାଦରୂପିଣୀ, ମହାଦେବ ମଧ୍ୟ ନାଦରୂପୀ ଅଟନ୍ତି ।

## ନାଦୋତ୍ପତ୍ତିଲକ୍ଷଣମ୍

ନାଭେରୂର୍ଦ୍ଧ୍ୱଂ ହୃଦିସ୍ଥାନାନ୍ମାରୁତଃ ପ୍ରାଣସଂଜ୍ଞକଃ ।
ନଦତି ବ୍ରହ୍ମରନ୍ଧ୍ରାନ୍ତେ ତେନ ନାଦଃ ପ୍ରକୀର୍ତ୍ତିତଃ ।। ୩୪ ।।
ଯଦୁକ୍ତଂ ବ୍ରହ୍ମଣଃ ସ୍ଥାନଂ ବ୍ରହ୍ମଗ୍ରନ୍ଥିଶ୍ଚ ଯଃ ସ୍ମୃତଃ ।
ତନ୍ମଧ୍ୟେ ସଂସ୍ଥିତଃ ପ୍ରାଣଃ ପ୍ରାଣାଦ୍ ବହ୍ନି ସମୁଦ୍‌ଗମଃ ।
ବହ୍ନିମାରୁତସଂଯୋଗାନ୍ନାଦଃ ସମୁପଜାୟତେ ।। ୩୫ ।।
(ବୃହଦ୍ଦେଶୀ ମତଙ୍ଗ)

ନାଭିର ଊର୍ଦ୍ଧ୍ୱସ୍ଥିତ ହୃଦୟସ୍ଥାନର ବାୟୁର ନାମ ପ୍ରାଣ । ତାହା ବ୍ରହ୍ମରନ୍ଧ୍ରମଧ୍ୟରେ ଶବ୍ଦ କରେ । ତେଣୁ ତାହାର ନାମ ନାଦ । ଯାହା ବ୍ରହ୍ମର ସ୍ଥାନରୂପେ କଥିତ ଏବଂ ଯେ ବ୍ରହ୍ମଗ୍ରନ୍ଥିରୂପେ ଜ୍ଞାତ,

ତାହା ମଧରେ ପ୍ରାଣ ବିଦ୍ୟମାନ। ପ୍ରାଣରୁ ଅଗ୍ନି ଜାତ ହୁଏ। ଅଗ୍ନି ଓ ବାୟୁ ସଂଯୋଗରେ ନାଦ ଜାତ ହୁଏ।

### ନାଦଶବ୍ଦାର୍ଥଃ

ନକାରପ୍ରାଣନାମାନଂ ଦକାରମନଳଂ ବିଦୁଃ।
ଜାତଃ ପ୍ରାଣାଗ୍ନିସଂଯୋଗାତ୍ତେନ ନାଦୋଽଭିଧୀୟତେ ।। ୩୬ ।।

(ସ.ର.)

ନକାରର ନାମ ପ୍ରାଣ, ଦକାରର ନାମ ଅଗ୍ନି। ପ୍ରାଣ ଓ ଅଗ୍ନି ସଂଯୋଗରେ ନାଦ ଜାତ ହୁଏ। ତେଣୁ ତାହାର ନାମ ନାଦ ବୋଲି କଥିତ।

### ନାଦ-ଭେଦକଥନମ୍

ପାବକ ପ୍ରେରିତଃ ସୋଽଥ କ୍ରମାଦୂର୍ଦ୍ଧ୍ୱପଥେ ଚରନ୍।
ନାଭି-ହୃତ୍-କଣ୍ଠମୂର୍ଦ୍ଧାସ୍ୟେଷ୍ୱାବିର୍ଭାବୟତେ ଧ୍ୱନିମ୍ ।। ୩୭ ।।
ନାଦୋଽତିସୂକ୍ଷ୍ମ ସୂକ୍ଷ୍ମଶ୍ଚ ପୁଷ୍ଟୋଽପୁଷ୍ଟଶ୍ଚ କୃତ୍ରିମଃ।
ଇତି ପଞ୍ଚାଭିଧାଂ ଧତ୍ତେ ପଞ୍ଚସ୍ଥାନସ୍ଥିତଃ କ୍ରମାତ୍ ।। ୩୮ ।।

ଅଗ୍ନିଦ୍ୱାରା ପ୍ରେରିତ ହୋଇ କ୍ରମଶଃ ଊର୍ଦ୍ଧ୍ୱ ପଥରେ ଗତି କରି ନାଭି, ହୃଦୟ, କଣ୍ଠ, ମୂର୍ଦ୍ଧା ଓ ମୁଖରେ ଧ୍ୱନି ଜାତ କରେ। ନାଦ ଅତିସୂକ୍ଷ୍ମ, ସୂକ୍ଷ୍ମ, ପୁଷ୍ଟ, ଅପୁଷ୍ଟ ଓ କୃତ୍ରିମ ଭେଦରେ ପଞ୍ଚନାମ ଧାରଣ କରେ, କାରଣ ତାହା ପାଞ୍ଚ ସ୍ଥାନରେ ଥାଏ।

### ନାଦାନାଂ ସ୍ଥାନନିର୍ଣ୍ଣୟଃ

ଅତି ସୂକ୍ଷ୍ମଧ୍ୱନିର୍ନାଭୌ ହୃଦି ସୂକ୍ଷ୍ମଂ ଗଳେ ପୁନଃ।
ପୁଷ୍ଟଂ ଶୀର୍ଷୋତ୍ଥାପୁଷ୍ଟଞ୍ଚ କୃତ୍ରିମଂ ବଦନେ ତଥା ।। ୩୯ ।।

ନାଭିରେ ଅତି ସୂକ୍ଷ୍ମ, ହୃଦୟରେ ସୂକ୍ଷ୍ମ, ଗଳାରେ ପୁଷ୍ଟ, ଶୀର୍ଷରେ ଅପୁଷ୍ଟ ଓ ମୁଖରେ କୃତ୍ରିମ ଜାତ ହୁଏ।

## ପ୍ରଚଳିତମତେ ନାଦାନାଂ ସ୍ଥାନନିରୂପଣମ୍

ଆବିର୍ଭାବୟତୀତ୍ୟେବଂ ପଞ୍ଚଧା କୀର୍ତ୍ତିତେ ବୁଧୈଃ।
ବ୍ୟବହାରେ ତ୍ୱସୌ ତ୍ରେଧା ହୃଦି ମନ୍ଦ୍ରୋଽଭିଧୀୟତେ।
କଣ୍ଠେ ମଧ୍ୟୋ ମୂର୍ଦ୍ଧ୍ନି ତାରୋ ଦ୍ୱିଗୁଣଶ୍ଚୋତ୍ତରୋତ୍ତରମ୍ ।। ୪୦ ।।
(ସ.ର.)

ପଣ୍ଡିତଙ୍କ ମତରେ ପାଞ୍ଚପ୍ରକାର ନାଦ ଜାତ ହୁଏ; କିନ୍ତୁ ବ୍ୟବହାରରେ ଏହା ତିନି ପ୍ରକାର, ହୃଦୟରେ ମନ୍ଦ୍ର, କଣ୍ଠରେ ମଧ୍ୟ ଓ ମୂର୍ଦ୍ଧାରେ ତାର ଜାତ ହେବା କଥିତ। ଏହା ଉତ୍ତରୋତ୍ତର ଦ୍ୱିଗୁଣ ଅଟେ, ଅର୍ଥାତ୍ ମନ୍ଦ୍ରର ଦ୍ୱିଗୁଣ ମଧ୍ୟ ଓ ମଧ୍ୟର ଦ୍ୱିଗୁଣ ତାର ଅଟେ।

## ନାଦପ୍ରକାରଭେଦାଃ

ଆହତୋଽନାହତଶ୍ଚେତି ନାଦୋଽତ୍ର ଦ୍ୱିବିଧୋ ମତଃ।
ସଂଯୋଗଜନ୍ୟୋ ଯୋ ନାଦଃ ସ ଆହତ ଇହୋଚ୍ୟତେ ।। ୪୧ ।।
ସଂଯୋଗବ୍ୟତିରେକେଣ ଯୋ ନାଦଃ ଶ୍ରୂୟତେ ବୁଧୈଃ।
ଅନାହତ ସ ବିଜ୍ଞେୟୋ ନାଦଃ ବ୍ରହ୍ମେତି କୀର୍ତ୍ତିତମ୍ ।। ୪୨ ।।
(କୋହଲ ଓ.ସା.ରୁ ଉଦ୍ଧୃତ)

ଆହତ ଓ ଅନାହତ ଭେଦରେ ନାଦ ଦ୍ୱିବିଧ କଥିତ। କୌଣସି ଦୁଇ ପାଦର୍ଥର ସଂଯୋଗରେ ଯେଉଁ ନାଦ ଉତ୍ପନ୍ନ ହୁଏ ତାହା ଆହତ। ସଂଯୋଗ ବ୍ୟତିରେକେ ଯେଉଁ ନାଦ ଶୁଣାଯାଏ,

ତାହାକୁ ପଣ୍ଡିତମାନେ 'ଅନାହତ ନାଦ' କହନ୍ତି। ତାହାର ଅପର ନାମ 'ନାଦବ୍ରହ୍ମ'।

### ଅନାହତନାଦ-ଲକ୍ଷଣମ୍

ଧ୍ୟାନମେକାଗ୍ରଚିତ୍ତୈକସାଧ୍ୟଂ ନ ସୁକରଂ ନୃଣାମ୍।
ତସ୍ମାଦତ୍ର ସୁଖୋପାୟଂ ଶ୍ରୀମନ୍ନାଦମନାହତମ୍॥ ୪୩॥
ଗୁରୂପଦିଷ୍ଟମାର୍ଗେଣ ମୁନୟଃ ସମୁପାସତେ।
ସୋଽପି ରକ୍ତିବିହୀନତ୍ୱାନ୍ନ ମନୋରଂଜକୋ ନୃଣାମ୍॥ ୪୪॥
(ସଂ:ର:)

ଏକାଗ୍ରଚିତ୍ତରେ କେବଳ ଧ୍ୟାନ ହୁଏ ସାଧ୍ୟ ହୁଏ। ଏହା ଲୋକଙ୍କର ସହଜଲଭ୍ୟ ନୁହେଁ। ତେଣୁ ଶ୍ରୀଯୁକ୍ତ ଅନାହତ ନାଦ ସୁଖୋପାୟ ଅଟେ। ଗୁରୁଙ୍କଦ୍ୱାରା ଉପଦେଶ ଦିଆଯାଇଥିବା ମାର୍ଗରେ ମୁନିମାନେ ତାହା ସେବା କରନ୍ତି। ତାହା ଅନୁରଞ୍ଜକ ନ ହେଲେ ଲୋକଙ୍କ ମନକୁ ରଞ୍ଜାଏ ନାହିଁ।

### ଆହତନାଦ-ଲକ୍ଷଣମ୍

ତସ୍ମାଦାହତନାଦସ୍ୟ ଶ୍ରୁତ୍ୟାଦିଦ୍ୱାରତୋଽଖିଳମ୍।
ଗେୟଂ ବିତନୁତେ ଲୋକେ ରଞ୍ଜନଂ ଭବଭଞ୍ଜନମ୍।
(ସଂ:ର:)

ଆହତଃ ସପ୍ତଧା ଜାତଃ ପୁନଃ ଷଡ୍‌ଜାଦିଭିଃ ସ୍ୱରୈଃ॥ ୪୫॥
କେନ ରୂପେଣ ସ ନାଦଃ ଷଡ଼୍‌ଜାଦିସ୍ୱରଭେଦତାଂ ପ୍ରାପ୍ୟ ସପ୍ତପ୍ରକାରୋଽଭବତ୍। (ସଂ:ମୁ:)

ତେଣୁ ଶ୍ରୁତ୍ୟାଦିଦ୍ୱାରା ଆହତନାଦର ଅସୁମାରି ଗାନଯୋଗ୍ୟ ବିଷୟ ଅଛି। ତାହା ସଂସାରରେ ଲୋକଙ୍କୁ ରଞ୍ଜାଇବା ଓ ସଂସାର

ବନ୍ଧନକୁ ତୁଟାଇବାରେ ସମର୍ଥ ହୁଏ। ଆହତ ନାଦ ଷଡ଼୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ, ନିଷାଦ- ଏହି ସାତ ସ୍ୱରରୂପେ ସପ୍ତପ୍ରକାର ହୋଇ ପ୍ରକାଶ ପାଏ।

### ଶ୍ରୁତି-ବିବେଚନମ୍

ପ୍ରଥମଂ ଶ୍ରବଣାତ୍ ଶବ୍ଦଃ ଶ୍ରୂୟତେ ହ୍ରସ୍ୱମାତ୍ରକଃ।
ସା ଶ୍ରୁତିଃ ସଂପରିଜ୍ଞେୟା ସ୍ୱରାବୟଲକ୍ଷଣା ।। ୪୬ ।।

ପ୍ରଥମ ଶ୍ରବଣରୁ ଶବ୍ଦ ହ୍ରସ୍ୱମାତ୍ରାରେ ଶୁଣାଯାଏ। ସେହି ଶ୍ରୁତି ଅବୟବ-ଲକ୍ଷଣ ରୂପେ ଜଣାଯାଏ।

### ଶ୍ରୁତିଶବ୍ଦ-ବ୍ୟୁତ୍ପତ୍ତିଃ

ଶ୍ରୁଶ୍ରବଣେ ଚାସ୍ୟ ଧାତୋଃକ୍ତିପ୍ରତ୍ୟୟସମୁଦ୍ଭବଃ।
ଶ୍ରୁତିଶବ୍ଦଃ ପ୍ରସାଧ୍ୟୋଽୟଂ ଶବ୍ଦଜ୍ଞୈର୍ଭାବସାଧନଃ ।। ୪୭ ।।

'ଶ୍ରୁ' ଧାତୁର ଅର୍ଥ ଶ୍ରବଣ କରିବା। ସେଥିରେ 'ତି' ପ୍ରତ୍ୟୟରୁ 'ଶ୍ରୁତି' ଶବ୍ଦ ହୁଏ। ଶବ୍ଦ ଜାଣିବା ଲୋକଙ୍କ ଦ୍ୱାରା ଭାବକୁ ଆଶ୍ରୟ କରି 'ଶ୍ରୁତି' ଶବ୍ଦ ସାଧ ହୁଏ।

### ଶ୍ରୁତିଭେଦାଃ

କେଶାଗ୍ରବ୍ୟବଧାନେନ ବହ୍ୱପି ଶ୍ରୁତୟଃ ସ୍ମୃତାଃ।
ବୀଣାୟାଞ୍ଚ ତଥା ଗାତ୍ରେ ସଙ୍ଗୀତଜ୍ଞାନିନାଂମତେ ।। ୪୮ ।।

(ପାରିଜାତ)

ଶ୍ରବଣେନ୍ଦ୍ରିୟଗ୍ରାହ୍ୟତ୍ୱାଦ୍‌ଧ୍ୱନିରେବ ଶ୍ରୁତିର୍ଭବେତ୍।
ସା ଚୈକା ଦ୍ୱିବିଧା ଜ୍ଞେୟା ସ୍ୱରାନ୍ତରବିଭାଗତଃ ।। ୪୯ ।।
ନିୟତଶ୍ରୁତିସଂସ୍ଥାନାଦ୍‌ଗୀୟତେ ସପ୍ତଗୀତିଷୁ।
ତସ୍ମାଦ୍ ସ୍ୱରଗତା ଜ୍ଞେୟାଃ ଶ୍ରୁତୟ ଶ୍ରୁତିବେଦିଭିଃ ।। ୫୦ ।।

(ବିଶ୍ୱାବସୁ-ସଂ.ର.)

ଭିନ୍ନସ୍ୱରଂ ସମାରଭ୍ୟ ସପ୍ତସ୍ୱରପ୍ରକଳ୍ପନାତ୍ ।
ନ୍ୟୂନଂ ପରିସ୍ଫୁଟା ତତ୍ର ସ୍ୱରାନ୍ତରପ୍ରଭିନ୍ନତା ॥ ୫୧ ॥
(ସଂ-ନାରାୟଣ)

ଶ୍ରୁତିଭ୍ୟଃ ସ୍ୟୁଃ ସ୍ୱରାଃ ସର୍ବେ ସ୍ୱରେଭ୍ୟୋ ଗ୍ରାମସମ୍ଭବଃ ।
ଗ୍ରାମେଭ୍ୟୋ ଜାୟତେ ଜାତିର୍ଜାତିଭ୍ୟୋ ରାଗସମ୍ଭବଃ ॥ ୫୨ ॥
ନାଦାଚ୍ଚ ଶ୍ରୁତୟୋ ଜାତାସ୍ତାଭ୍ୟଃ ଷଡ୍‌ଜାଦୟଃ ସ୍ୱରାଃ ।
ତେଭ୍ୟଃ ସ୍ୟୁର୍ମୂର୍ଚ୍ଛନାସ୍ତାଭ୍ୟସ୍ତାନାଖ୍ୟଗ୍ରାମସମ୍ଭବଃ ॥ ୫୩ ॥
ନାଦଶ୍ରୁତିସ୍ୱରଗ୍ରାମମୂର୍ଚ୍ଛନାତାନବର୍ଣ୍ଣକାଃ ।
ସ୍ୱରଗ୍ରହାଂଶନ୍ୟାସାଖ୍ୟା ଜାତିଶ୍ଚେତି କ୍ରମାଦିହ ॥ ୫୪ ॥
ସ୍ୱରଜ୍ଞାନେ ଦୃଢ଼ାଭ୍ୟାସୋ ରକ୍ତିଲାଭଶ୍ଚ ଜାୟତେ ।
ବର୍ଣ୍ଣଜ୍ଞାନବିଚିତ୍ରତ୍ୱମଳଂକାରପ୍ରୟୋଜନମ୍ ॥ ୫୫ ॥
ଯତ୍କିଂଚିଦ୍ ବାଙ୍ମୟଂ ଲୋକେ ଶବ୍ଦଂ ବା କୃତ୍ରିମଂ ଭବେତ୍ ॥
ସର୍ବଂସପ୍ତସ୍ୱରୈଃ ବ୍ୟାପ୍ତଂ ବିଷ୍ଣୁନେବ ଜଗତ୍‌ତ୍ରୟମ୍ ॥ ୫୬ ॥
ନିତ୍ୟଂ ଗୀତୋପଯୋଗିତ୍ୱମଭିଜ୍ଞେୟତ୍ୱମପ୍ୟୁତ ।
ଲକ୍ଷ୍ୟବିଦ୍ଭିଃ ସମାଦିଷ୍ଟଂ ପର୍ଯ୍ୟାପ୍ତଶ୍ରୁତିଲକ୍ଷଣମ୍ ॥ ୫୭ ॥
ଦ୍ୱାବିଂଶତି କେଚିଦୁଦାହରନ୍ତି ଶ୍ରୁତୀ ଶ୍ରୁତିଜ୍ଞାନ-ବିଚାରଦକ୍ଷାଃ ।
ଷଟ୍‌ଷଷ୍ଟିଭିନ୍ନାଃ ଖଳୁ କେଚିଦାସାମାନନ୍ତ୍ୟମେବ ପ୍ରତିପାଦୟନ୍ତି ॥ ୫୮ ॥
(ସଂ:ର:)

କେଶର ଅଗ୍ରଭାଗର ବ୍ୟବଧାନରେ ଥିବାପରି ଲାଗି ଲାଗି ଶ୍ରୁତିମାନେ ଅବସ୍ଥିତ । ଏହା ବୀଣାରେ ଗଳାରେ ସଙ୍ଗୀତଜ୍ଞାନୀମାନଙ୍କ ମତରେ କଥିତ । ଶ୍ରବଣେନ୍ଦ୍ରିୟଦ୍ୱାରା (କର୍ଣ୍ଣ) ଗ୍ରହଣଯୋଗ୍ୟ ହେତୁରୁ ଧ୍ୱନିହିଁ ଶ୍ରୁତି ସ୍ଥିତିରୁ ସପ୍ତସ୍ୱରମାନଙ୍କରେ ଗାନ କରାହୁଏ । ଶ୍ରୁତିଙ୍କ ଦ୍ୱାରା ଶ୍ରୁତିମାନେ ସ୍ୱରଗତ ରୂପେ ଜାଣିବାର ଯୋଗ୍ୟ ।(ସ:ର:)

ସପ୍ତସ୍ୱର ଭାବନରୁ ଭିନ୍ନ ସ୍ୱରକୁ ଆରମ୍ଭ କରି ଅନ୍ୟ ସ୍ୱରଙ୍କ ଭିନ୍ନତା ହେତୁ ଶ୍ରୁତିସବୁ ସ୍ଫୁଟ ହୁଅନ୍ତି। ଶ୍ରୁତିମାନଙ୍କରୁ ସବୁ ସ୍ୱର ହୁଅନ୍ତି। ସ୍ୱରମାନଙ୍କରୁ ଗ୍ରାମ ଜାତ ହୁଏ। ଗ୍ରାମମାନଙ୍କରୁ ଜାତିର ଉଦ୍ଭବ ଓ ଜାତିମାନଙ୍କରୁ ରାଗର ସମ୍ଭବ ହୁଏ। ନାଦରୁ ଶ୍ରୁତିଗଣ ଜାତ ଓ ଶ୍ରୁତିମାନଙ୍କରୁ ଷଡ୍‌ଜାଦି ସ୍ୱରମାନ ଜାତ ହୁଅନ୍ତି। ସ୍ୱରମାନଙ୍କରୁ ମୂର୍ଚ୍ଛନା, ମୂର୍ଚ୍ଛନାରୁ ତାନାଖ୍ୟ ଗ୍ରାମ ଜାତ ହୁଏ। ନାଦ, ଶ୍ରୁତି, ସ୍ୱର, ଗ୍ରାମ, ମୂର୍ଚ୍ଛନା, ତାନ, ବର୍ଣ୍ଣମାନ, ସ୍ୱରଗ୍ରହ, ଅଂଶ, ନ୍ୟାସ ଓ ଜାତି କ୍ରମଶଃ ହୁଏ। ସ୍ୱରଜ୍ଞାନରେ ଦୃଢ଼ ଅଭ୍ୟାସ ଓ ଅନୁରାଗ ଜାତ ହୁଏ। ବର୍ଣ୍ଣଜ୍ଞାନର ବିଚିତ୍ରତାରେ ଅଳଂକାରର ପ୍ରୟୋଜନ ହୁଏ। ସଂସାରରେ ଯାହା କିଛି ବାଣୀଗତ ଶବ୍ଦ ବା କୃତ୍ରିମ ଶବ୍ଦ ସମ୍ଭବେ, ସେସବୁ ବିଷ୍ଣୁଙ୍କ ଦ୍ୱାରା ତ୍ରିଭୁବନ ବ୍ୟାପ୍ତ ହେଲାଭଳି ସପ୍ତସ୍ୱରଦ୍ୱାରା ବ୍ୟାପ୍ତ। ସର୍ବଦା ଯାହା ଗୀତର ପ୍ରୟୋଜନ ସାଧକ (ଉପକାରୀ ବା କାର୍ଯ୍ୟକାରୀ) ଓ ଜାଣିବାର ଯୋଗ୍ୟ ବିଷୟ, ତାହା ସଙ୍ଗୀତ ଉଦ୍ଦେଶ୍ୟ ଜାଣିଥିବା ପଣ୍ଡିତଙ୍କ ଦ୍ୱାରା ଯଥେଷ୍ଟ ଶ୍ରୁତି-ଲକ୍ଷଣ କଥିତ ହୋଇଅଛି। ଶ୍ରୁତି-ଜ୍ଞାନ ଓ ବିଚାରରେ ନିପୁଣ କେତେକ ପଣ୍ଡିତ ଶ୍ରୁତି ଦ୍ୱାବିଂଶତି ବୋଲି କହନ୍ତି। କେହି କେହି ଷଟ୍‌ଷଷ୍ଟି (ଛଅଷଠି) ଓ କେହି ଏହା ଅସଂଖ୍ୟ ବୋଲି ମଧ୍ୟ କହନ୍ତି।

### ଶ୍ରୁତି-ସ୍ୱର-ଲକ୍ଷଣମ୍

ଶ୍ରୁତୟଃ ସ୍ୱରରୂପେଣ ପରିଣତା ନ ସଂଶୟଃ।
ପରିଣାମେ ଯଥା କ୍ଷୀରଂ ଦଧିରୂପେଣ ସର୍ବଥା ॥ ୫୯ ॥
ସର୍ବାଶ୍ଚ ଶ୍ରୁତୟସ୍ତତ୍ତଦ୍ରାଗେଷୁ ସ୍ୱରତାଂ ଗତାଃ।
ରାଗ ହେତୁତ୍ୱମେତାସାଂ ଶ୍ରୁତି-ସଂଜ୍ଞୈବ ସମ୍ମତା।
କର୍ଣ୍ଣସ୍ପର୍ଶାତ୍ ଶ୍ରୁତିର୍ଜ୍ଞେୟା ଛିତ୍ୱା ସୈବ ସ୍ୱରୋଚ୍ୟତେ ॥ ୬୦ ॥

ଦୁଗ୍ଧ ଦଧିରୂପରେ ପରିଣତ ହେବା ନ୍ୟାୟାନୁସାରେ ଶ୍ରୁତିସବୁ ସ୍ୱରରୂପରେ ପରିଣତ ହୁଅନ୍ତି- ଏଥିରେ ସନ୍ଦେହ ନାହିଁ। ସେହି ସେହି ରାଗରେ ଶ୍ରୁତିସସବୁ ସ୍ୱରତ୍ୱ ପ୍ରାପ୍ତ ହୁଅନ୍ତି। ରାଗର ହେତୁ ବୋଲି ସେମାନଙ୍କର ଶ୍ରୁତି-ସଂଜ୍ଞା ବିଦିତ। ସ୍ୱଳ୍ପ ସ୍ପର୍ଶରେ ଶ୍ରୁତି ହୁଏ। ସେହି ଶ୍ରୁତି ସ୍ଥାୟୀ ହେଲେ ତାହାକୁ ସ୍ୱର କୁହାଯାଏ।

### ଶ୍ରୁତୀନାଂ ବାତପିତ୍ତାଦିବିକାରଲକ୍ଷଣମ୍

ଉଚ୍ଚୈସ୍ତରୋ ଧ୍ୱନି ରୂକ୍ଷୋ ବିଜ୍ଞେୟୋ ବାତଜୋ ବୁଧୈଃ।
ଗମ୍ଭୀରୋ ଘନଲୀନସ୍ତୁ ଜ୍ଞେୟୋଽସୌ ପିତ୍ତଜୋ ବୁଧୈଃ॥ ୬୧ ॥
ସ୍ନିଗ୍ଧଶ୍ଚ ସୁକୁମାରଶ୍ଚ ମଧୁରଃ କଫଜୋ ଧ୍ୱନିଃ।
ତ୍ରୟାଣାଂ ଗୁଣସଂଯୁକ୍ତୋ ବିଜ୍ଞେୟଃ ସନ୍ନିପାତକଃ॥ ୬୨ ॥
(ତୁମ୍ବୁରୁ, ସ:ର:ରେ ଉଦ୍ଧୃତ)

ଅତି ଉଚ୍ଚ ଧ୍ୱନି ରୂକ୍ଷ ହୁଏ, ତାହା ପଣ୍ଡିତଙ୍କ ଦ୍ୱାରା ବାୟୁରୁ (ବାତଜ) ଜାତ ବୋଲି ଜ୍ଞାତବ୍ୟ। ଗମ୍ଭୀର ଘନ ହୋଇ ଲୀନ ହେବା ଧ୍ୱନି ପଣ୍ଡିତଙ୍କ ଦ୍ୱାରା ପିତ୍ତରୁ (ପିତଜ) ଜାତ ବୋଲି ଜ୍ଞାତବ୍ୟ। ମନୋହର, କୋମଳ ଓ ମଧୁର ଧ୍ୱନି କଫଜ (କଫରୁଜାତ)- ତିନିଗୁଣର ସଂଯୋଗରେ ସନ୍ନିପାତ ହୁଏ; ଅର୍ଥାତ୍ ସମଭାବରେ ତିନିଗୁଣର ମିଶ୍ରଣହିଁ ସନ୍ନିପାତ।

### ଅବ୍ୟବହାର୍ଯ୍ୟଶ୍ରୁତିଃ

ପଞ୍ଚମ୍ୟଷ୍ଟାଦଶୀ ଷଷ୍ଠୀ ତଥା ତ୍ରୈକୋନବିଂଶତିଃ।
ଚତସ୍ରଃ ଶ୍ରୁତୟଶ୍ଚୈତା ରାଗାଦେରପ୍ରୟୋଜକାଃ॥ ୬୩॥

ପଞ୍ଚମୀ(୫), ଅଷ୍ଟାଦଶୀ(୧୮), ଷଷ୍ଠୀ(୬) ଓ ଏକବିଂଶତି(୨୧) ଏହି ଚାରି ଶ୍ରୁତି ରାଗରେ ପ୍ରୟୋଗ ହୁଏ ନାହିଁ।

## ଶ୍ରୁତିନାମାନି

ତୀବ୍ରା କୁମୁଦ୍ୱତୀ ମନ୍ଦା ଛନ୍ଦୋବତୀତୁ ଷଡ୍‌ଜଗାଃ।
ଦୟାବତୀ ରଞ୍ଜନୀ ଚ ରକ୍ତିକା ଚର୍ଷଭେ-ସ୍ଥିତାଃ॥ ୬୪॥
ରୌଦ୍ରୀ କ୍ରୋଧାତି ଗାନ୍ଧାରେ ବଜ୍ରିକାଥ ପ୍ରସାରିଣୀ।
ପ୍ରୀତିଶ୍ଚ ମାର୍ଜନୀତ୍ୟେତାଃ ଶ୍ରୁତୟୋ ମଧ୍ୟମାଶ୍ରିତା॥ ୬୫॥
କ୍ଷିତିରକ୍ତା ଚ ସନ୍ଦୀପାନ୍ୟାଳାପିନ୍ୟପି ପଞ୍ଚମେ।
ମଦନ୍ତୀ ରୋହିଣୀ ରମ୍ୟେତ୍ୟେତାସ୍ତିସ୍ରସ୍ତୁ ଧୈବତେ।
ଉଗ୍ରା ଚ କ୍ଷୋଭିଣୀତି ଦ୍ୱେ ନିଷାଦେ ବସତଃ ଶ୍ରୁତୀ॥ ୬୬॥
(ସ:ର:)

ତୀବ୍ରା, କୁମୁଦ୍ୱତୀ, ମନ୍ଦା, ଛନ୍ଦୋବତୀ ଏହି ଚାରିଗୋଟି ଉଡ୍‌ଜଗତ। ଦୟାବତୀ, ରଞ୍ଜନୀ, ରକ୍ତିକା ଋଷଭରେ ଥାଏ। ରୌଦ୍ରୀ, କ୍ରୋଧୀ ଗାନ୍ଧାରରେ ସ୍ଥିତ। ବଜ୍ରିକା ପ୍ରସାରିଣୀ, ପ୍ରୀତି ଓ ମାର୍ଜନୀ ଏହି ଚାରି ଶ୍ରୁତି ମଧ୍ୟମରେ ବିଦ୍ୟମାନ। କ୍ଷିତି, ରକ୍ତା, ସନ୍ଦିପନୀ, ଅଳାପିନୀ ଏହି ଚାରିଶ୍ରୁତି ପଞ୍ଚମରେ ଥାଏ। ମଦନ୍ତୀ, ରୋହିଣୀ ରମ୍ୟା ଏହି ତିନି ଶ୍ରୁତି ଧୈବତରେ ଥାଏ। ଉଗ୍ରା, କ୍ଷୋଭିଣୀ ଏହି ଦୁଇଟି ଶ୍ରୁତି ନିଷାଦରେ ରହନ୍ତି।

## ଶ୍ରୁତିବଣ୍ଟନମ୍

ଚତୁଃଶ୍ଚତୁଃଶ୍ରୁତୟଶ୍ଚ ଷଡ୍‌ଜ-ମଧ୍ୟମାପଞ୍ଚମାଃ।
ଦ୍ୱେ ଦ୍ୱେ ନିଷାଦ-ଗାନ୍ଧାରୌ ତ୍ରିସ୍ତ୍ରିଋଷଭ-ଧୈବତୌ॥ ୬୭॥

**ଯଦି ଦ୍ୱାବିଂଶତିଃ ପ୍ରୋକ୍ତାଃ ଶ୍ରୁତୟଃ ପୂର୍ବସୂରିଭିଃ ।**
**ବ୍ୟବହାରେ ନ ତାଃ ସର୍ବାଃ ପ୍ରଯୁକ୍ତାସ୍ତୈରିତି ସ୍ଫୁଟମ୍ ।। ୬୮ ।।**
**ସୌକର୍ଯ୍ୟାର୍ଥଂ ସ୍ୱରାଣାଂ ଚାପରାଃ ସଂଜ୍ଞା ସମାଦୃତାଃ ।**
**ସରିଗମ ପଧନୀତି ସଂକ୍ଷିପ୍ତା ଲକ୍ଷ୍ୟବର୍ତ୍ମନି ।। ୬୯ ।।**

ଷଡ୍‌ଜ ମଧ୍ୟମରେ ଚାରି ଚାରି ଗୋଟି ଲେଖାଏଁ ଶ୍ରୁତି ଥାଆନ୍ତି । ଦୁଇ ଦୁଇଟି ନିଷାଦ ଗାନ୍ଧାରରେ ରହନ୍ତି । ତିନି ତିନି ଗୋଟି ଋଷଭ ଓ ଧୈବତରେ ରହନ୍ତି । ପୂର୍ବରୁ ଯଦିଓ ପଣ୍ଡିତଙ୍କ ଦ୍ୱାରା ବାଇଶଗୋଟି ଶ୍ରୁତି କଥିତ, ବ୍ୟବହାରରେ ସେହିସବୁ କଥିତ ହୁଅନ୍ତି ନାହିଁ । ସହଜରେ କହିବା ନିମନ୍ତେ ସ୍ୱରମାନଙ୍କର ଅନ୍ୟ ସଂଜ୍ଞା କଥିତ, ଲକ୍ଷ୍ୟ-ମାର୍ଗରେ ସଂକ୍ଷିପ୍ତ ହୋଇ ସେମାନେ ସରିଗମପଧନି ବୋଲି କଥିତ ।

ଉତ୍କଳୀୟମତେ ଶ୍ରୁତିବ୍ୟବସ୍ଥିତିଃ

ବେଦାଚଳାଂକଶ୍ରୁତିଷୁ ତ୍ରୟୋଦଶ୍ୟାଂ ଶ୍ରୁତୌ ତତଃ ।
ସପ୍ତଦଶ୍ୟାଂ ଚ ବିଂଶ୍ୟାଂ ଚ ଦ୍ୱାବିଂଶ୍ୟାଂ ଚ ଶ୍ରୁତୌ କ୍ରମାତ୍ ।। ୭୦ ।।
ଷଡ୍‌ଜାଦୀନାଂ ସ୍ଥିତି ପ୍ରୋକ୍ତା ଶୁଦ୍ଧାଖ୍ୟା ଭରତାଦିଭିଃ ।
ଉତ୍କଳୀୟ ସଙ୍ଗୀତେଷୁ ଶ୍ରୁତିକ୍ରମ-ବିପର୍ଯ୍ୟୟାତ୍ ।। ୭୧ ।।
ଏତେ ଶୁଦ୍ଧସ୍ୱରା ସପ୍ତ ସ୍ୱସ୍ୱାଦ୍ୟ ଶ୍ରୁତି-ସଂସ୍ଥିତାଃ ।
ଚତୁଃଶ୍ରୁତିଯୁତଃ ଷଡ୍‌ଜୋମଧ୍ୟମ-ପଞ୍ଚମସ୍ତଥା ।
ଋଧୌ ତ୍ରିଶ୍ରୁତିକୌ ପ୍ରୋକ୍ତୌ ଗନୀ ଦ୍ୱିଶ୍ରୁତିକୌ କ୍ରମାତ୍ ।। ୭୨ ।।

ଚତୁର୍ଥ, ସପ୍ତମ, ନବମ, ତ୍ରୟୋଦଶ, ବିଂଶ, ଦ୍ୱାବିଂଶ ଶ୍ରୁତିମାନଙ୍କର ଶୁଦ୍ଧଭାବରେ ଷଡ୍‌ଜାଦିଙ୍କର ସ୍ଥିତି, ଏହା ଭରତାଦି କହିଅଛନ୍ତି । ଉତ୍କଳୀୟ ସଙ୍ଗୀତରେ ଶ୍ରୁତିକ୍ରମ ବିପରୀତ ହୋଇ

ଏହି ସପ୍ତସ୍ୱରମାନଙ୍କର ମୂଳରୁ ଅବସ୍ଥିତି; ଯଥା-ଏକ ପାଞ୍ଚ, ଆଠ, ଦଶ, ଚତୁର୍ଦ୍ଦଶ, ଅଷ୍ଟାଦଶ, ଏକବିଂଶରେ ଷଡ୍‌ଜାଦିର ଅବସ୍ଥିତି। ତାହା ତଳେ ଦେଖାଇ ଦିଆଗଲା:-

ଶାସ୍ତ୍ରଦୃଷ୍ଟେ ସ୍ୱରସ୍ଥିତି

୦୦୦ସ ୦୦ ରି ୦ ଗ ୦୦୦ ମ ୦୦୦ ପ ୦୦ ଧ ୦ ନି

ଉତ୍କଳୀୟମତେ ସ୍ୱରସ୍ଥିତି

ସ ୦୦୦ ର ୦୦ ଗ ୦ ମ ୦୦୦ ପ ୦୦୦ ଧ ୦୦ ନ ୦

ଶ୍ରୁତିଜାତୟଃ

ଦୀପ୍ତାୟତା ଚ କରୁଣା ମୃଦୁର୍ମଧ୍ୟେତି ଜାତୟଃ।
ଶ୍ରୁତୀନାଂ ପଞ୍ଚ ତାସାଂ ଚ ସ୍ୱରେଷ୍ୱେବ ବ୍ୟବସ୍ଥିତିଃ ।। ୭୩ ।।

ଦୀପ୍ତା, ଆୟତା, କରୁଣା, ମୃଦୁ, ମଧ୍ୟାରୂପେ ଶ୍ରୁତିମାନଙ୍କର ପାଞ୍ଚଜାତି। ସ୍ୱରମାନଙ୍କରେ ସେମାନଙ୍କର ଅବସ୍ଥିତି ଅଟେ।

ଶ୍ରୁତିଜାତି-ବିଭାଗଃ

ତୀବ୍ରା ରୌଦ୍ରୀ ବଜ୍ରିକୋଗ୍ରେତ୍ୟୁକ୍ତା ଦୀପ୍ତା ଚତୁର୍ବିଧାଃ।
କୁମୁଦ୍ୱତ୍ୟାୟତାଶ୍ଚାଥ କ୍ରୋଧୀ ଚାଥ ପ୍ରସାରିଣୀ ।। ୭୪ ।।
ସଂଦୀପନୀ ରୋହିଣୀ ଚ ଭେଦାଃ ପଞ୍ଚେତି କୀର୍ତ୍ତିତାଃ।
ଦୟାବତୀ ତଥାଳାପିନ୍ୟଥ ପ୍ରୋକ୍ତା ମଦନ୍ତିକା ।। ୭୫ ।।
ତ୍ରୟଶ୍ଚେ କରୁଣାଭେଦା ମୃଦୋର୍ଭେଦା ଚତୁଷ୍ଟୟମ୍।
ମନ୍ଦା ଚ ରକ୍ତିକା ପ୍ରୀତିଃ କ୍ଷିତିର୍ମଧ୍ୟା ତୁ ଷଡ୍‌ବିଧାଃ ।। ୭୬ ।।
ଛନ୍ଦୋବତୀ ରଞ୍ଜନୀ ଚ ମାର୍ଜନୀ ରକ୍ତିକା ତଥା।
ରମ୍ୟା ଚ କ୍ଷୋଭିଣୀତ୍ୟାସା[illegible]ନ୍ଭବେ ସ୍ୱରେ ସ୍ଥିତମ୍ ।। ୭୭ ।।
ଇକ୍ଷୁକ୍ଷୀରଗତଂ ଯଦ୍‌ବନ୍ମାଧୁର୍ଯ୍ୟଂ ନୋଚ୍ୟତେ ବୁଧୈଃ।
ତଦ୍‌ବତ୍ ଶ୍ରୁତିଗତା ଜାତିର୍ବାଚା କୋ ବା ବଦିଷ୍ୟତି ।। ୭୮ ।।

ତୀବ୍ରା, ରୌଦ୍ରୀ, ବଜ୍ରିକା ଓ ଉଗ୍ରା, ଏହି ଚାରି ଶ୍ରୁତି ଦୀପ୍ତା ଜାତିର ଅଟନ୍ତି। କୁମୁଦବତୀ, କ୍ରୋଧୀ, ପ୍ରସାରିଣୀ, ସଂଦୀପନୀ ଓ ରୋହିଣୀ ଏହି ପାଞ୍ଚ ଶ୍ରୁତି ଆୟତା ଜାତିର। ଦୟାବତୀ, ଆଳାପିନୀ, ମଦନ୍ତିକା, ଏହି ତିନି ଶ୍ରୁତି କରୁଣା ଜାତୀୟ ଅଟନ୍ତି। ମନ୍ଦା, ରକ୍ତିକା, ପ୍ରୀତି, କ୍ଷିତି, ଏହି ଚାରି ଶ୍ରୁତି ମୃଦୁ ଜାତିରେ ବିଦ୍ୟମାନ। ଛନ୍ଦୋବତୀ, ରଞ୍ଜନୀ, ମାର୍ଜ୍ଜନୀ, ରକ୍ତା, ରମ୍ୟା, କ୍ଷୋଭିଣୀ- ଏହି ଛଅଗୋଟି ଶ୍ରୁତି ମଧ୍ୟା ଜାତୀୟ।

# ଶ୍ରୁତି-ଜାତି-କୋଷ୍ଟକଃ

| ସରଗମ ସ୍ୱର | ଶ୍ରୁତି | ଜାତି | ଶ୍ରୁତି | ଜାତି | ଶ୍ରୁତି | ଜାତି | ଶ୍ରୁତି | ଜାତି |
|---|---|---|---|---|---|---|---|---|
| ସ | ତୀବ୍ରା | ଦୀପ୍ତା | କୁମୁଦ୍ୱତୀ | ଆୟତା | ମନ୍ଦା | ମୃଦୁ | ଛନ୍ଦୋବତୀ | ମଧ୍ୟା |
| ର | ଦୟାବତୀ | କରୁଣା | ରଞ୍ଜନୀ | ମଧ୍ୟା | ରକ୍ତିକା | ମୃଦୁ | | |
| ଗ | ରୌଦ୍ରୀ | ଦୀପ୍ତା | କ୍ରୋଧୀ | ଆୟତା | | | | |
| ମ | ବଜ୍ରିକା | ଦୀପ୍ତା | ପ୍ରସାରିଣୀ | ଆୟତା | ପ୍ରୀତି | ମୃଦୁ | ମାର୍ଜନୀ | ମଧ୍ୟା |
| ପ | କ୍ଷିତି | ମୃଦୁ | ରକ୍ତା | ମଧ୍ୟା | ସନ୍ଦୀପନୀ | ଆୟତା | ଆଳାପନୀ | କରୁଣା |
| ଧ | ମଦନ୍ତୀ | କରୁଣା | ରୋହୀଣୀ | ଆୟତା | ରମ୍ୟା | ମଧ୍ୟା | | |
| ନି | ଉଗ୍ରା | ଦୀପ୍ତା | କ୍ଷୋଭିଣୀ | ମଧ୍ୟା | | | | |

## ଶ୍ରୁତୀନାଂ ଭାବବର୍ଣ୍ଣନମ୍

| ସଂଖ୍ୟା | ଶ୍ରୁତିନାମାନି | ଶ୍ରୁତିଭାବ |
|---|---|---|
| ୧. | ତୀବ୍ରା | ତୀକ୍ଷ୍ଣା, ନିଶ୍ଚିତା, ପ୍ରଚଣ୍ଡା, ଉତ୍ତପ୍ତା |
| ୨. | କୁମୁଦ୍ୱତୀ | ଅସ୍ନେହା, ନିର୍ଦ୍ଦୟା, ସମାଲୋଚିକା, ବିଳାପିନୀ, ଶତ୍ରୁତାକାରିଣୀ, ଲୋଭିନୀ। |
| ୩. | ମନ୍ଦା | ଉଦାସିନୀ, ଶୀତଳା, ସୁଖହୀନା, ଉତ୍ପାଦିନୀ |
| ୪. | ଛନ୍ଦୋବତୀ | ସ୍ୱାଧୀନା, ସୁଖିନୀ, ବଦାନ୍ୟା, ବୀରା |
| ୫. | ଦୟାବତୀ | ଦୟାବତୀ, ସହାନୁଭୂତିକାରିଣୀ, କରୁଣାବତୀ, କୋମଳା, ସ୍ନେହିନୀ। |
| ୬. | ରଞ୍ଜନୀ | ସୁଖଦାୟିନୀ, ପ୍ରେମିକା, ଗ୍ରାହିକା। |
| ୭. | କ୍ରୋଧୀ | କ୍ରୋଧୀ |
| ୮. | ବଜ୍ରିକା | ଦୃଢ଼ା, କଳହାନ୍ତରିତା। |
| ୯. | ପ୍ରସାରିଣୀ | ଜିଜ୍ଞାସୁ, ବିସ୍ତାରିଣୀ |
| ୧୦. | ପ୍ରୀତି | ଆନନ୍ଦିତା, ସୁଖିନୀ, ତୃପ୍ତା, ଦୟାବତୀ। |
| ୧୧. | ମାର୍ଜନୀ | ନିର୍ମଳହୃଦୟା, କୌତୁକିନୀ, ସ୍ୱାର୍ଥପରା। |
| ୧୨. | କ୍ଷିତ | ନଷ୍ଟା। |
| ୧୩. | ରକ୍ତା | ଅନୁଲିପ୍ତା, ଅନୁରକ୍ତା। |
| ୧୪. | ସନ୍ଦୀପିନୀ | କ୍ରୋଧିନୀ, ଦୟାବତୀ, ଉତ୍ତେଜିତା, ଉତ୍କଣ୍ଠିତା। |
| ୧୫. | ଆଳାପିନୀ | ପ୍ରେମାଳାପିନୀ, ସ୍ନେହଶୀଳା, ବିନୟା, ଆକାଙ୍କ୍ଷିତା। |

| | | |
|---|---|---|
| ୧୬. | ମଦନ୍ତୀ | ସ୍ନେହିନୀ, ଉନ୍ମତ୍ତା, ପ୍ରେମିକା, ଉଦ୍ଧତା, ପରଶ୍ରୀକାତରା । |
| ୧୭. | ରୋହିଣୀ | ସୁଖଶାୟିନୀ, ଦୁଃଖିତା, ନବକିଶୋରୀ, ସଂଦିଗ୍ଧମନା, ବିଜନପ୍ରିୟା । |
| ୧୮. | ରମ୍ୟା | ଧୀରା, ନିରାଡ଼ମ୍ବରା, ଏକାନ୍ତବିଳାସିନୀ । |
| ୧୯. | ଉଗ୍ରା | ଶକ୍ତିଶାଳିନୀ, ଦୃଢ଼ା, ଉତ୍କଣ୍ଠିତା, ନିର୍ଭୀକା । |
| ୨୦. | କ୍ଷୋଭିଣୀ | କମ୍ପିତା, ଉତ୍ତେଜିତା, ଦୁର୍ବଳା, କରୁଣାପ୍ରାର୍ଥିନୀ, ବିଚଳିତା । |

### ଶ୍ରୁତି-ଜାତିଭେଦେ ରସନିର୍ଣ୍ଣୟ

**ରସେ ବୀରେଽଦ୍ଭୁତେ ରୌଦ୍ରେ ଦୀପ୍ତା ଜାତିରୁଦୀରିତା ।**
**ମୃଦୁର୍ଜାତିଶ୍ଚ ଶୃଙ୍ଗାରେ ଆୟତା ହାସ୍ୟକେ ରସେ ।। ୭୯ ।।**
**ଦୈନ୍ୟେ ଚ କରୁଣାଜାତିର୍ବୀଭତ୍ସେ ଚ ଭୟାନକେ ।**
**ହାସ୍ୟଶୃଙ୍ଗାରୟୋର୍ମଧ୍ୟେ ରସେଷ୍ୱେତେଷୁ ଜାତୟଃ ।। ୮୦ ।।**
**ତତ୍ତ୍ୱ ଜାତିରସୈରେବ ସ୍ୱରାସ୍ତତ୍ତଦ୍ରସାତ୍ମକାଃ ।**
**ତାଦୃଶ୍ୟାଂଶଗ୍ରହନ୍ୟାସୈ ରାଗୈସ୍ତତ୍ତଦ୍‌ରସାତ୍ମତା ।। ୮୧ ।।**

ବୀର, ଅଦ୍ଭୁତ ତଥା ରୌଦ୍ର ରସମାନଙ୍କରେ ଦୀପ୍ତା ଜାତି; ଶୃଙ୍ଗାରରେ ମୃଦୁ ଜାତି; ହାସ୍ୟରସରେ ଆୟତାଜାତି, ବୀଭତ୍ସ, ଭୟାନକ, କରୁଣରସରେ କରୁଣା ଜାତି ବୋଲି କଥିତ । ହାସ୍ୟଶୃଙ୍ଗାର ମଧ୍ୟରେ ଏହି ରସମାନଙ୍କରେ ଜାତିମାନ ଅଟନ୍ତି । ଜାତିମାନଙ୍କରେ ରସରେ ସ୍ୱରମାନଙ୍କର ରସ ଧରାଯିବ । ସେହିପରି ଅଂଶ, ଗ୍ରହ, ନ୍ୟାସ, ରାଗଦ୍ୱାରା ସେସବୁ ସେହି ସେହି ରସାତ୍ମକ ହୁଏ ।

ଦୀପ୍ତା—ବୀର, ଅଦ୍ଭୁତ, ରୌଦ୍ର। ଆୟତା-ହାସ୍ୟ।
କରୁଣ—କଣୁଣ, ବୀଭତ୍ସ, ଭୟାନକ। ମୃଦୁ-ଶୃଙ୍ଗାର

### ସ୍ୱରଲକ୍ଷଣମ୍

ଶ୍ରୁତ୍ୟନନ୍ତରଭାବୀ ଯଃ ସ୍ନିଗ୍‌ଧୋଽନୁରଣାତ୍ମକଃ।
ସ୍ୱତୋ ରଞ୍ଜୟତି ଶ୍ରୋତୃଚିତ୍ତଂ ସ ସ୍ୱର ଉଚ୍ୟତେ ।। ୮୨ ।।
ଷଡ୍‌ଜାଦୟଃ ସ୍ୱରାଃ ସପ୍ତ ବ୍ୟଜ୍ୟନ୍ତେ ଶ୍ରୁତିଭିଃ ସଦା।
ଅନ୍ଧକାରସ୍ଥିତା ଯଦ୍‌ବତ୍ ପ୍ରଦୀପେନ ଘଟାଦୟଃ, ।। ୮୩ ।।
ନିୟତଶ୍ରୁତିସଂସ୍ଥାନାତ୍ ଗୀୟନ୍ତେ ସପ୍ତଗୀତିଷୁ।
ତସ୍ମାତ୍ ସ୍ୱରଗତା ଜ୍ଞେୟା ଶ୍ରୁତୟଃ ଶ୍ରୁତିବେଦିଭିଃ ।। ୮୪ ।।

ଶ୍ରୁତିମାନଙ୍କ ପରେ ଯାହା ସୁନ୍ଦର ପ୍ରତିଧ୍ୱନ୍ୟାତ୍ମକ ହୋଇ ଜାତ ହୁଏ ଏବଂ ଯାହା ସ୍ୱତଃ ଶ୍ରୋତାର ଚିତ୍ତକୁ ରଞ୍ଜାଏ, ତାହାକୁ ସ୍ୱର କହନ୍ତି। ଅନ୍ଧାରରେ ଥିବା ଘଟ ପ୍ରଭୃତି ପ୍ରଦୀପଦ୍ୱାରା ପ୍ରକାଶ ହେଲାଭଳି ଶ୍ରୁତିମାନଙ୍କଦ୍ୱାରା ଷଡ୍‌ଜାଦି ସପ୍ତସ୍ୱର ପ୍ରକାଶିତ ହୁଅନ୍ତି। ସ୍ଥିରଭାବରେ ଥିବା ଶ୍ରୁତିମାନଙ୍କର ସଂସ୍ଥାନରୁ ସପ୍ତସ୍ୱର ଗୀତ ହୁଏ। ତେଣୁ ଶ୍ରୁତିଜ୍ଞ ଲୋକଙ୍କଦ୍ୱାରା ଶ୍ରୁତିମାନେ ସ୍ୱରଗତ ବୋଲି ଜାଣନ୍ତି।

### ସ୍ୱରବ୍ୟୁତ୍ପତ୍ତିଃ

ତତ୍ରାଦୌ ସ୍ୱରଶବ୍ଦସ୍ୟ ବ୍ୟୁତ୍ପତ୍ତିରିହ କଥ୍ୟତେ।
ରାଜୃଦୀପ୍ତାବିତିଧାତୋଃ ସ୍ୱଶବ୍ଦପୂର୍ବକସ୍ୟ ଚ।
ସ୍ୱୟଂ ଯୋ ରାଜତେ ଯସ୍ମାତ୍ ତସ୍ମାଦେଷ ସ୍ୱରଃ ସ୍ମୃତଃ ।।୮୫ ।।

ନନୁ ଷଡ୍‌ଜାଦୀନାଂ ଚୈବ ସ୍ୱରତ୍ୱଂ ବ୍ୟଞ୍ଜନତ୍ୱାତ୍ ନନୁ। ଷଡ୍‌ଜାଦୀନାମସାଧାରଣତ୍ୱମ୍ ଆପ୍ତୋପଦେଶାତ୍ କଥଂ ଷଡ୍‌ଜାଦୀନାମସାଧାରଣତ୍ୱମ୍ ତଥା କୋହଳେ ମହେଶ୍ୱରଃ। ପୁନଶ୍ଚ ଅତ୍ର-ସରିଗମାଦିଷ୍ୱାଦ୍ୟକ୍ଷରାଣାଂ ବ୍ୟଞ୍ଜନତ୍ୱାତ୍ କଥଂ ସ୍ୱରତ୍ୱମିତ୍ୟାକ୍ଷିପ୍ୟାଽଽଚାର୍ଯ୍ୟ ପରିଭାଷୟା ସଙ୍କେତମାତ୍ରମେତଦିତି ପ୍ରତ୍ୟାହ ମତଙ୍ଗ ଶ୍ରୁତ୍ୟନନ୍ତରଭାବ।

ପ୍ରଥମତଃ ସ୍ୱର-ଶବ୍ଦର ବ୍ୟୁତ୍ପତ୍ତି କୁହାଯାଉଅଛି। 'ରାଜୃ' (ରାଜ୍) ଧାତୁର ଅର୍ଥ ଦୀପ୍ତି ପ୍ରକାଶ କରେ (ଶୋଭାପାଏ)। ଏହି ଧାତୁର ପୂର୍ବରେ ସ୍ୱ-ଶବ୍ଦ ରହେ। ଯେ ସ୍ୱୟଂ ପ୍ରକାଶ ପାଏ (ଶୋଭାପାଏ) ତାହାକୁ ସ୍ୱର ବୋଲାଯାଏ। ଯଦି ଷଡ୍‌ଜ (ସ) ଆଦିଙ୍କର ସ୍ୱରତ୍ୱ କଥିତ ହୁଏ ତେବେ ଅନ୍ୟ କ ଖ ପ୍ରଭୃତିର ଅସାଧାରଣତ୍ୱ କିପରି? ମହା-ମହାପଣ୍ଡିତମାନଙ୍କର ଉପଦେଶରୁ ଷଡ୍‌ଜାଦିଙ୍କର ଅସାଧାରଣତ୍ୱ। ପୁନଶ୍ଚ ଏଠାରେ ସରିଗମାଦି ଆଦ୍ୟ ଅକ୍ଷରମାନଙ୍କର ବ୍ୟଞ୍ଜନତ୍ୱ ହେତୁ କିପରି ସ୍ୱରତ୍ୱ? ଏହିପରି ଦୋଷ ସୂଚାଇ ଉତ୍ତର ଦିଆଯାଉଅଛି ଯେ ଆଚାର୍ଯ୍ୟମାନଙ୍କର ନାମକରଣରୁ ଏହା ସଂକେତମାତ୍ର। ତହୁଁ ମତଙ୍ଗ କହିଲେ ସ୍ୱର-ଲକ୍ଷଣ ଶ୍ଳୋକ ଦେଖ।

### ସ୍ୱରାତ୍ ଧ୍ୱନି-ନିର୍ଣ୍ଣୟଃ

ଷଡ୍‌ଜଂ ବଦତି ମୟୂରୋ ଋଷଭଂ ଚାତକୋବଦେତ୍।
ଅଜା ବଦନ୍ତି ଗାନ୍ଧାରଂ କୌଞ୍ଚୋ ବଦତି ମଧ୍ୟମମ୍॥ ୮୬॥
ପୁଷ୍ପସାଧାରଣେ କାଳେ କୋକିଳଃ ପଞ୍ଚମଂ ବଦେତ୍।

ପ୍ରାବୃଟ୍‌କାଳେ ତୁ ସମ୍ପ୍ରାପ୍ତେ ଧୈବତଂ ଦର୍ଦ୍ଦୁରୋ ବଦେତ୍‌।
ସର୍ବଦା ଚ ତଥା ଦେବୀ ! ନିଷାଦଂ ବଦତେ ଗଜଃ ।। ୮୭ ।।
(ମତଙ୍ଗ ବୃହଦ୍‌ଦେଶୀ)

ଅନ୍ୟଚ

ମୟୂରଚାତକଛାଗକ୍ରୌଞ୍ଚକୋକିଳଦର୍ଦ୍ଦୁରାଃ ।
ଗଜଶ୍ଚ ସପ୍ତଷଡ୍‌ଜାଦୀନ୍ କ୍ରମାନୁଚ୍ଚରୟନ୍ତ୍ୟପି ।। ୮୮ ।।
(ସଂ.ର.)

ଷଡ଼ଜସ୍ୱରକୁ ମୟୂର, ଋଷଭସ୍ୱରକୁ ଚାତକ, ଗାନ୍ଧାରସ୍ୱରକୁ ଅଜା (ଛେଳି), ମଧ୍ୟମସ୍ୱରକୁ କ୍ରୌଞ୍ଚପକ୍ଷୀ, ପଞ୍ଚମସ୍ୱରକୁ କୋକିଳ, ଧୈବତସ୍ୱରକୁ ଭେକ (ବେଙ୍ଗ), ନିଷାଦସ୍ୱରକୁ ହସ୍ତୀ କହେ।

ଅନ୍ୟମତେ- ମୟୂର ଷଡ୍‌ଜକୁ ବୃଷଭ ଋଷଭକୁ ଗାନ୍ଧାରକୁ ଅଜା, ମଧ୍ୟମକୁ କ୍ରୌଞ୍ଚ, ପଞ୍ଚମକୁ ପିକ, ଧୈବତକୁ ଅଶ୍ୱ, ନିଷାଦକୁ ଗଜ କହେ।

ସ୍ୱରନାମାନି

ଶ୍ରୁତିଭ୍ୟଃ ସ୍ୟୁଃ ସ୍ୱରା ଷଡ୍‌ଜର୍ଷଭଗାନ୍ଧାରମଧ୍ୟମାଃ ।
ପଞ୍ଚମୋ ଧୈବତଶ୍ଚାଥ ନିଷାଦ ଇତି ସପ୍ତ ତେ ।
ତେଷାଂ ସଂଜ୍ଞାଃ ସରିଗମପଧନୀତ୍ୟପରା ମତା ।। ୮୯ ।।
(ସଂ.ର.)

ଶ୍ରୁତିମାନଙ୍କରୁ ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ ଧୈବତ,ନିଷାଦ- ଏହି ସପ୍ତସ୍ୱର ହୁଅନ୍ତି। ସଂକ୍ଷେପରେ ସେମାନଙ୍କୁ ସ, ରି, ଗ,ମ ମ, ପ, ଧ, ନି ବୋଲି କୁହାଯାଏ।

ସ୍ୱରଶ୍ରୁତିସ୍ଥିତିଃ

ଦୀପ୍ତାୟତା ମୃଦୁର୍ମଧ୍ୟା ଷଡ୍‌ଜସ୍ୟାଦୃଷଭେ ପୁନଃ ।
ସଂସ୍ଥିତା କରୁଣା ମଧ୍ୟା ମୃଦୁ ଗାନ୍ଧାରକେ ପୁନଃ ।। ୯୦ ।।

**ଦୀପ୍ତାୟତା ମଧମେ ଚ ମୃଦୁମଧେ ଚ ସଂସ୍ଥିତେ ।**
**ମୃଦୁମଧାୟତେ ଖ୍ୟାତା କରୁଣା ପଞ୍ଚମେ ସ୍ଥିତା ।**
**କରୁଣା ଚାୟତା ମଧା ଧୈବତେ ସପ୍ତମେ ପୁନଃ ।। ୯୧ ।।**
**(ସଂ.ର.)**

ଦୀପ୍ତା, ଆୟତା, କରୁଣା, ମୃଦୁ ଓ ମଧା ଏହି ପାଞ୍ଚଟି ଜାତି ସ୍ୱରମାନଙ୍କରେ ସଂସ୍ଥିତ । ଷଡ୍‌ଜରେ ଓ ଋଷଭରେ ଦୀପ୍ତା, ଆୟତା, ମୃଦୁ ଓ ମଧା ଥାନ୍ତି । କରୁଣା, ମଧ ଓ ମୃଦୁ ଗାନ୍ଧାରରେ ସଂସ୍ଥିତ । ଦୀପ୍ତା, ଆୟତା, ମୃଦୁ ଓ ମଧା ମଧମରେ; ମୃଦୁ, ମଧା, ଆୟତା ଓ କରୁଣା ପଞ୍ଚମରେ; ଧୈବତ ଓ ନିଷାଦରେ କରୁଣା, ଆୟତା ଓ ମଧା ଥାନ୍ତି ।

**ଷଡ୍‌ଜାଦୀନାଂ ବୟଃ**

**ଅଶୀତିଃ ସପ୍ତତିଃ ଷଷ୍ଟିଶ୍ଚତ୍ୱାରିଂଶଚ୍ଚତ୍ରିଂଶତିଃ ।**
**ବିଂଶତିର୍ଦଶ-ବର୍ଷାଣି ଷଡ୍‌ଜାଦୀନାଂ ବୟଃ କ୍ରମାତ୍ ।। ୯୨ ।।**

ଅଶୀ, ସତୁରି, ଷାଠିଏ, ଚାଳିଶ, ତିରିଶ, କୋଡ଼ିଏ, ଦଶ, ବର୍ଷମାନ, ଷଡ୍‌ଜାତିମାନଙ୍କର ବୟସ କ୍ରମାନୁସାରେ ଅଟେ ।

**ସ୍ୱରସ୍ୟ ଉଦାତ୍ତାଦିବିଚାରଃ**

**ଉଚ୍ଚୈରୁଦାତ୍ତଃ ନୀଚୈରନୁଦାତ୍ତ: ସମାହାର: ସ୍ୱରିତଃ ।**
**ଉଦାତ୍ତେ ନିଷାଦ ଗାନ୍ଧାରାବନୁଦାତ୍ତେ ଋଷଭଧୈବତୌ ।**
**ସ୍ୱରିତଃ ପ୍ରଭବା ହ୍ୟେତେ ଷଡ୍‌ଜମଧମପଞ୍ଚମାଃ ।। ୯୩ ।।**

ଉଚ୍ଚରେ ଉଦାତ୍ତ, ନୀଚରେ ଅନୁଦାତ୍ତ, ସମାହାରରେ (ମଧ୍ୟରେ) ସ୍ୱରିତ; ଉଦାତ୍ତରେ ନିଷାଦ ଓ ଗାନ୍ଧାର ଏହି ଦୁଇଟି, ଅନୁଦାତ୍ତରେ ଋଷଭ ଓ ଧୈବତ, ଷଡ୍‌ଜ, ମଧ୍ୟମ ଓ ପଞ୍ଚମ ସ୍ୱରିତରେ ଅଟନ୍ତି।

### ସ୍ୱରାଣାଂ ବାତପିତ୍ତାଦିଭେଦାଃ

ଉଦାତ୍ତେ ନିଷାଦଗାନ୍ଧାରୌ ଗୀୟତେ ବାତକୋବୁଧୈଃ।
ଅନୁଦାତ୍ତେ ଋଧୟୋଷ୍ଟୈବ କଥିତୋ ପିତ୍ତଜୋ ଧ୍ୱନିଃ ।। ୯୪ ।।
ସ୍ୱରିତା ସମପାଗାତାଃ କଫଜସ୍ୱରସମ୍ଭବଃ।
ବିକୃତଃ କୋମଳଶ୍ଚାପି ଗୀୟତେ କଫଜୋ ସ୍ୱରଃ ।। ୯୫ ।।

(କୋହଳ)

ଉଦାତ୍ତରେ ନିଷାଦ ଓ ଗାନ୍ଧାର ବାତଜ, ଅନୁଦାତ୍ତରେ ଋଷଭ ଓ ଧୈବତ ପିତ୍ତଜ, ସ୍ୱରିତରେ ଷଡ୍‌ଜ, ମଧ୍ୟମ, ପଞ୍ଚମ, କଫଜ ଅଟନ୍ତି। କଫଜ ସ୍ୱର ବିକୃତ, କୋମଳଭାବରେ ଗୀତ ହୁଏ।

### ବାତପିତ୍ତପ୍ରକୋପାଦୟଃ

ସଂଚୟକୋପପ୍ରଶମା ବାୟୋର୍ଗ୍ରୀଷ୍ମାଦିଷୁ ତ୍ରିଷୁ।
ବର୍ଷାଦିଷୁ ତୁ ପିତ୍ତସ୍ୟ ଶ୍ଳେଷ୍ମଣଃ ଶିଶିରାଦିଷୁ।। ୯୬ ।।

(ଅ-ହୃଦୟ)

ବାୟୁର ସଂଚୟ ପ୍ରକୋପ ଓ ପ୍ରଶମ ଗ୍ରୀଷ୍ମକୁ ନେଇ ତିନି ଋତୁ, ପିତ୍ତର ବର୍ଷାକୁ ନେଇ ତିନି ଋତୁ, କଫର ଶିଶିରକୁ ନେଇ ତିନିଋତୁ ଅଟନ୍ତି।

### ସ୍ୱରାଣଂ ରସନିର୍ଣ୍ଣୟଃ

ସରୀବୀରେଽଦ୍ଭୁତେ ରୌଦ୍ରେ ଧୋ ବୀଭତ୍ସେ ଭୟାନକେ।
କାର୍ଯୌଗନୀ ତୁ କରୁଣେ ହାସ୍ୟଶୃଙ୍ଗାରୟୋର୍ମତୌ ।। ୯୭ ।।

ଷଡ୍‌ଜ ଓ ଋଷଭ ସ୍ୱର ବୀର, ଅଦ୍ଭୁତ ଓ ରୌଦ୍ର ରସମାନଙ୍କରେ, ଧୈବତ ସ୍ୱର ବୀଭତ୍ସ ଓ ଭୟାନକ ରସରେ, ଗାନ୍ଧାର ଓ ନିଷାଦ ସ୍ୱର କରୁଣ ହାସ୍ୟ ଓ ଶୃଙ୍ଗାର ରସମାନଙ୍କରେ ବ୍ୟବହୃତ ହୁଅନ୍ତି।

କାର୍ଯ୍ୟଭେଦେ ସ୍ୱରାଣାଂ ସ୍ଥାପନମ୍

ସ୍ୱରକର୍ମଣି ଷଡ୍‌ଜଃ ସ୍ୟାଦୃଷଭୋ ଧ୍ୟାନକର୍ମଣି।
ଗାନ୍ଧାର ଈଶସତ୍କାରେ ସ୍ୱର ମଧ୍ୟମକର୍ମଣି ॥ ୯୮ ॥
ଉତ୍ସବେ ପଞ୍ଚମୋ ଜ୍ଞେୟଃ କ୍ଷାତ୍ରକର୍ମଣି ଧୈବତଃ।
ବିନୋଦକର୍ମଣି ବୁଧୈର୍ନିଷାଦଃ କଥିତଃ ସ୍ୱରଃ ॥ ୯୯ ॥
(ନାଟ୍ୟ ମନୋରମା)

ଦେବକାର୍ଯ୍ୟରେ ଷଡ୍‌ଜ, ଧ୍ୟାନକାର୍ଯ୍ୟରେ ଋଷଭ, ଈଶ୍ୱରଙ୍କ ପୂଜାରେ ଗାନ୍ଧାର, ମଧ୍ୟମ ଓ ପଞ୍ଚମ ଉତ୍ସବ କାର୍ଯ୍ୟରେ, କ୍ଷତ୍ରିୟକାର୍ଯ୍ୟରେ ଧୈବତ ଓ ବିନୋଦନ କାର୍ଯ୍ୟରେ ନିଷାଦର ସ୍ଥିତି ପଣ୍ଡିତମାନେ କହନ୍ତି।

ବାଦୀଭେଦେ ରସନିର୍ଣ୍ଣୟଃ

ଯୋ ଯଦା ବଳବାନ୍ ଯସ୍ମିନ୍ ସ୍ୱରୋ ଜାତି ସମାଶ୍ରୟଃ।
ତତ୍ପ୍ରବୃତ୍ତେ ରସେ କାର୍ଯ୍ୟଂ ଗାନଂଗେୟେ ପ୍ରୟୋକ୍ତୃଭିଃ ॥ ୧୦୦ ॥
ମଧ୍ୟମ-ପଞ୍ଚମ-ଭୂୟିଷ୍ଠଂ ଗାନଂ ଶୃଙ୍ଗାରହାସୟୋଃ।
ଷଡ୍‌ଜର୍ଷଭପ୍ରାୟଃ କୃତଂ ବୀରରୌଦ୍ରାଦ୍ଭୁତେଷୁ ଚ ॥ ୧୦୧ ॥
ଗାନ୍ଧାରଃ ସପ୍ତମଃ ପ୍ରାୟଃ କରୁଣେ ଗାନମିଷ୍ୟତେ।
ତଥା ଧୈବତଭୂୟିଷ୍ଠ ବୀଭତ୍ସେ ସ ଭୟାନକେ ॥ ୧୦୨ ॥
ସର୍ବେଷ୍ୱଶେଷରସା ନିୟମବିଧାନେ ସଂପ୍ରୟୋକ୍ତବ୍ୟା।
କାକଲ୍ୟାନ୍ତରବିହିତା ବିଶେଷଯୁକ୍ତା ବଳବନ୍ତଃ ॥ ୧୦୩ ॥

ଜାତି ଆଶ୍ରୟ କରିଥିବା ଯେଉଁ ସ୍ୱର ଯେଉଁଠାରେ ବଳବାନ୍ ସେହି ରସ ପ୍ରବର୍ତ୍ତି ଗାନ କରାଯିବ। ଶୃଙ୍ଗାର ଓ ହାସ୍ୟ ରସରେ ମଧ୍ୟମ ଓ ପଞ୍ଚମ ସ୍ୱର ବହୁଳରୂପେ ଗାନ କରାଯିବ। ବୀର, ରୌଦ୍ର ଓ ଅଦ୍ଭୁତ ରସମାନଙ୍କରେ ଷଡ୍‌ଜ ଓ ଋଷଭ ବହୁଳ ପ୍ରଯୁକ୍ତ ହେବ। କରୁଣ ରସର ଗାନ ଗାନ୍ଧାର ଓ ନିଷାଦବହୁଳ ଅଟେ। ବୀଭତ୍ସ ଓ ଭୟାନକରେ ଧୈବତ ସ୍ୱର ପ୍ରବଳ। ସବୁ ଅଂଶରେ ନିୟମାନୁଯାୟୀ ରସମାନ ପ୍ରୟୋଗ କରାଯିବ, କାକଳୀ ମଧ୍ୟରେ ରହିଲେ ସ୍ୱର ବିଶେଷ ବଳବାନ୍ ହୁଏ।

### ଷଡ୍‌ଜଲକ୍ଷଣ

ନାସାକଣ୍ଠଉରସ୍ତାଳୁଜିହ୍ୱାଦନ୍ତଃ ପରିସ୍ଫୁଟମ୍।
ଷଡ୍‌ଭି ସଂଜାୟତେ ଯସ୍ମାଦ୍ ଷଡ୍‌ଜ ଇତ୍ୟଭିଧୀୟତେ ।। ୧୦୪ ।।
ଷଣ୍ଣାଂ ସ୍ୱରାଣାଂ ଜନକଃ ଷଡ୍‌ଭିର୍ବା ଜନ୍ୟତେ ସ୍ୱରୈଃ।
ଷଡ୍‌ଭ୍ୟୋ ବା ଜାୟତେ ଯେଭ୍ୟଃ ଷଡ୍‌ଜ ଇତ୍ୟଭିଧୀୟତେ।।। ୧୦୫ ।।
ଷଟ୍‌ସୁ ସ୍ଥାନେଷୁ ଜାତତ୍ୱାଦ୍ ଷଡ୍‌ଜଃ ସ୍ୟାତ୍ ପ୍ରଥମ ସ୍ୱରଃ।
ନାଦାତ୍ମକାନାମେତେଷାଂ ରୂପବର୍ଣ୍ଣାଦି ବର୍ଣ୍ୟତେ ।। ୧୦୬ ।।
ଷଣ୍ମୁଖ ସ୍ୟାଚତୁର୍ହସ୍ତଃ ପାଣିଭ୍ୟାମୁତ୍ପଳେ ଦଧତ୍।
ବୀଣାଶୋଭିତକରଦ୍ୱଂଦ୍ୱଃ ସ୍ୱରଡାମରସପ୍ରଭଃ ।। ୧୦୭ ।।
କୁଳଂ ସୁପର୍ବଜଂ ଜମ୍ବୁଦ୍ୱୀପଂ ବ୍ରହ୍ମା ଚ ଦୈବତମ୍।
ଶୃଙ୍ଗାରକେ ରସେ ଜ୍ଞେୟୋ ମୁଖ୍ୟଗାତା ତୁ ପାବକଃ।
ମୟୂରୋ ବାହନଂ ତସ୍ୟ ସ୍ୱରାନୁକରଣାତ୍‌ପୁନଃ ।। ୧୦୮ ।।

ନାସା, କଣ୍ଠ, ଉର, ତାଳୁ, ଜିହ୍ୱା, ଦନ୍ତ- ଏହି ଛଅଟି ସ୍ଥାନଦ୍ୱାରା ଜାତ ହେବାରୁ ଷଡ୍‌ଜ କୁହାଯାଏ। ଏହା ଛଅଟି ସ୍ୱରକୁ ଜାତ କରାଏ ବା ଛଅଟି ସ୍ୱରରୁ ଜାତହୁଏ। ଛଅଟିରୁ

ଜାତ ବୋଲି ତାହାର ନାମ ଷଡ୍‌ଜ। ଛଅଟି ସ୍ଥାନରୁ ଜାତ ହେବାରୁ ଷଡ୍‌ଜ ହେଉଛି ପ୍ରଥମ ସ୍ୱର। ନାଦରୂପୀ ଏମାନଙ୍କର ରୂପ ଓ ବର୍ଣ୍ଣାଦି ବର୍ଣ୍ଣିତ ହେଉଛି। ଏହାର ଛଅଟି ମୁହଁ, ଚାରୋଟି ହାତ, ଦୁଇଟି ହସ୍ତରେ ପଦ୍ମ ଧରାହୋଇଛି, ଦୁଇହସ୍ତ ବୀଣାରେ ଶୋଭିତ, କାନ୍ତି ସୁବର୍ଣ୍ଣତୁଲ୍ୟ ଦେବବଂଶରୁ ଜାତ, ଜମ୍ବୁଦ୍ୱୀପ ହେଉଛି ବାସସ୍ଥାନ ବ୍ରହ୍ମା ହେଉଛନ୍ତି ଦେବତା। ଶୃଙ୍ଗାର ରସରେ ଗାନ କରାହୁଏ। ଗୀତରେ ମୁଖ୍ୟ ଓ ପବିତ୍ରକାରକ, ପୁଣି ସ୍ୱରାନୁରଣରୁ ତାହାର ବାହନ ମୟୂର।

### ଋଷଭଲକ୍ଷଣମ୍

ବାୟୁଃ ସମୁତ୍ଥିତୋ ନାଭେଃ କଣ୍ଠତାଲୁସମାଶ୍ରିତଃ।
ଜାୟତେ ଋଷଭଶ୍ଚୈବ ଋଷଭୋଽୟମତନ୍ଦ୍ରିତଃ॥ ୧୦୯॥
ପ୍ରାପ୍ନୋତି ହୃଦୟଂ ଶୀଘ୍ରମନ୍ୟସ୍ମାଦୃଷଭଃ ସ୍ମୃତଃ।
ସ୍ୱୀଗବୀଷୁ ଯଥା ତିଷ୍ଠନ୍ ବିଭାତି ଋଷଭୋ ମହାନ୍॥ ୧୧୦॥
ସ୍ୱରଗ୍ରାମେ ସମୁତ୍ପନ୍ନଃ ସ୍ୱରୋଽୟମୃଷଭସ୍ତଥା।
ଏକ ବକ୍ତ୍ରଶ୍ଚତୁର୍ହସ୍ତଃ ପାଣିଭ୍ୟାଂ ଦଧତ୍... ॥ ୧୧୧॥
ବୀଣାଂ ବିଭ୍ରତ୍କରାଭ୍ୟାଂ ଚ ଋଷଭୋ ନୀଳବର୍ଣ୍ଣଭୃତ୍।
ଅଗ୍ନିସ୍ତୁ ଦୈବତଂ ଶାକଂ ଦୀପଂ ଗାତା ତୁ ପଦ୍ମଭୂଃ।
ରସୋ ହାସ୍ୟୋଽସ୍ୟ ଯାନଂ ଗୌରିତି ଶୃଙ୍ଗାରହାରକେ॥ ୧୧୨॥

ନାଭିରୁ ବାୟୁ ଉଦ୍‌ଗତ ହୋଇ କଣ୍ଠ ଓ ତାଳକୁ ସ୍ପର୍ଶ କରି ଋଷଭ ଜାତ ହୁଏ। ଏହି ଋଷଭ ତେଜି ସ୍ୱର, ଅନ୍ୟ ସ୍ଥାନରୁ ଶୀଘ୍ର ହୃଦୟକୁ ପ୍ରାପ୍ତ ହୁଏ, ତହୁଁ ଏହା ଋଷଭ ନାମରେ କଥିତ। ଗୋରୁଙ୍କ ମଧ୍ୟରେ ବୃଷଭ ଯେପରି ଶୋଭାପାଏ, ସେହିପରି ସ୍ୱରଗ୍ରାମରେ ଜାତ ହୋଇ ଋଷଭ ଶୋଭାପାଏ। ଏକମୁଖ ବିଶିଷ୍ଟ

ଚତୁର୍ହସ୍ତ, ନୀଳବର୍ଣ୍ଣବିଶିଷ୍ଟ, ଦୁଇ କରରେ ବୀଣାଯୁକ୍ତ, ଦେବତାଅଗ୍ନି ଶାକଦ୍ୱୀପବାସୀ, ବ୍ରହ୍ମା ଗାୟକ, ରସ ହେଉଛି ହାସ୍ୟ, ଯାନ ହେଉଛି ଗୋରୁ ଓ ଶୃଙ୍ଗାରହାରାଦି ବିବିଧ ବେଶଭୂଷଣରେ ଭୂଷିତ।

## ଗାନ୍ଧାରଲକ୍ଷଣମ୍

ନାଭେଃ ସମୁଦ୍‌ଥିତୋ ବାୟୁ କଣ୍ଠତାଳୁସମାଶ୍ରିତଃ।
ଗାନ୍ଧାରସ୍ୟାପି ହେତୁତ୍ୱାଦ୍ ସ୍ୱୟଂ ଗାନ୍ଧାର ଉଚ୍ୟତେ ।। ୧୧୩ ।।
ଗାନ୍ଧାରସ୍ତ୍ୱେକବଦନୋ ଗୌରବର୍ଣ୍ଣଃ ଚତୁଃକରଃ।
ବୀଣାଫୁଲ୍ଲାବ୍‌ଜଘଣ୍ଟାଢ୍ୟକରଃ ସ୍ୟାନ୍ମେଷବାହନଃ ।। ୧୧୪ ।।
ଶଙ୍କରୋ ଦୈବତଂ କ୍ରୌଞ୍ଚଦ୍ୱୀପଂ ସୁପର୍ବଜଂ କୁଳମ୍।
ବିଷ୍ଣୁର୍ଗାତା ରସୋ ବୀରୋ ମୁଖ୍ୟୋ ଜ୍ଞେୟୋଽଥ ମଧମଃ ।। ୧୧୫ ।।

ନାଭିରୁ ବାୟୁ ଜାତ ହୋଇ କଣ୍ଠ ଓ ତାଳୁକୁ ଆଶ୍ରାକରି ଗାନାତ୍ମକ ବାକ୍ୟକୁ ଧାରଣ କରିବା ହେତୁ ସ୍ୱୟଂ ଗାନ୍ଧାର ନାମରେ କଥିତ। ଏକମୁଖବିଶିଷ୍ଟ, ଗୌରବର୍ଣ୍ଣ, ଚତୁର୍ଭୁଜ, ବୀଣା, ପଦ୍ମ ଓ ଘଣ୍ଟାହସ୍ତ, ମେଷବାହନ, ଦେବତା ମହାଦେବ, ବାସ କ୍ରୋଞ୍ଚଦ୍ୱୀପ, କୁଳ ଦେବଜାତ, ବିଷ୍ଣୁଗାୟକ, ବୀରରସପ୍ରଧାନ।

## ମଧମଲକ୍ଷଣମ୍

ଯଦ୍‌ବା ସମୁଦ୍‌ଥିତାଦ୍‌ବାୟୋର୍ବକ୍ଷଚିରେ ସମାହତାଦ୍।
ମଧସ୍ଥାନମବତ୍ୟସ୍ମନ୍ମଧମଃ ପରିକୀର୍ତ୍ତିତଃ ।। ୧୧୬ ।।
ମଧସ୍ତ୍ୱେକବକ୍ତ୍ରଃ ସ୍ୟାଦ୍ଧେମବର୍ଣ୍ଣଶ୍ଚତୁଃକରଃ।
ସବୀଣାକଳଶୌ ହସ୍ତୀ ସପଦ୍ମବରଦୌ ତଥା ।। ୧୧୭ ।।

ଭାରତୀ ଦୈବତଂ ଦ୍ୱୀପଂ କୁଶଂ ବଂଶଃ ସୁପର୍ବଜଃ ।
ଗାତା ଚନ୍ଦ୍ରୋ ରସଃ ଶାନ୍ତଃ କ୍ରୌଞ୍ଚସ୍ତୁ ଯାନମସ୍ୟ ତୁ ॥ ୧୧୮ ॥

ଅନ୍ୟମତେ—

ମଧ୍ୟମୋ ମଧ୍ୟମସ୍ଥାନାଚ୍ଛରୀରସ୍ୟୋପଜାୟତେ ।
ନାଭିମୂଳାଚ୍ଚ ଗମ୍ଭୀରଃ କିଞ୍ଚିତ୍ତାରସ୍ୱରୂପକଃ ॥ ୧୧୯ ॥

ଯେକୌଣସି ସ୍ଥାନରୁ ବାୟୁ ଜାତ ହୋଇ ବକ୍ଷ ଓ ଚିତ୍ତରେ ସମ୍ୟକ୍ ଆହତ ହେଲେ ଓ ମଧ୍ୟସ୍ଥାନକୁ ଆଶ୍ରୟ କଲେ ମଧ୍ୟମ ସ୍ୱରରୂପେ କଥିତ । ମଧ୍ୟମ ଏକମୁଖ, ସ୍ୱର୍ଣ୍ଣବର୍ଣ୍ଣ, ଚତୁର୍ମୁଖ, ଦୁଇହସ୍ତରେ ବୀଣା ଓ କଳଶ ଓ ଅନ୍ୟ ଦୁଇହସ୍ତରେ ପଦ୍ମ,-ଦେବତା ଭାରତୀ, ଦ୍ୱୀପ, କୁଶ, ଦେବବଂଶୀ, ଗାୟକ ଚନ୍ଦ୍ର, ଶାନ୍ତ ରସ, କ୍ରୌଞ୍ଚ ପକ୍ଷୀ ଯାନ । ଅନ୍ୟ ମତରେ- ଶରୀରର ମଧ୍ୟଭାଗରୁ ଜାତହୁଏ । ନାଭିମୂଳରୁ ଗମ୍ଭୀର ହୋଇ ବାହାରି କିଞ୍ଚିତ୍ ପରିମାଣରେ ପରସ୍ୱରୂପକୁ ପ୍ରାପ୍ତ ହୁଏ ।

## ପଞ୍ଚମଲକ୍ଷଣମ୍

ନାଭିହୃତ୍କଣ୍ଠତାଲ୍ୱୋଷ୍ଠପଞ୍ଚକାତ୍ ପଞ୍ଚମୋ ଭବେତ୍ ।
ସ୍ୱରାନ୍ତରାଣାଂ ବିସ୍ତାରଂ ଯୋ ମିମୀତେ ସ ପଞ୍ଚମଃ ॥ ୧୨୦ ॥
ପାଠକ୍ରମେଣ ଗଣନା ସଂଖ୍ୟାୟାଂ ପଞ୍ଚମୋଽଥବା ।
ପଞ୍ଚମୋଽପ୍ୟେକବଦନୋ ଭିନ୍ନବର୍ଣ୍ଣଶ୍ଚ ଷଟ୍‌କରଃ ॥ ୧୨୧ ॥
ବୀଣାକରଦ୍ୱୟେ ଶଂଖାବପି ଚାନ୍ୟକରାବୁଭୌ ।
ସ୍ୱୟଂଭୂ ଦେବତଂ ଦ୍ୱୀପଂ ଶାଲ୍ମଳିଃ ପିତୃବଂଶଜଃ ॥ ୧୨୨ ॥

କୋକିଲୋ ବାହନଂ ଗାତା ନାରଦଃ ପ୍ରଥମୋ ରସଃ ।। ୧୨୩ ।।
ମତାନ୍ତରେ—
ପ୍ରାଣୋଽପାନସମାନଶ୍ଚୋଦାନଶ୍ଚ ବ୍ୟାନ ଏବ ଚ ।
ଏତେଷାଂ ସମବାୟେନ ଜାୟତେ ପଞ୍ଚମସ୍ୱରଃ ।। ୧୨୪ ।।

ନାଭି, ହୃଦ, କଣ୍ଠ, ତାଲୁ, ଓଷ୍ଠ- ଏହି ପ୍ରାଞ୍ଚ ସ୍ଥାନରୁ ଜାତ ହୋଇ ପଞ୍ଚମ ହୁଏ । ଯେ ଅନ୍ୟ ସ୍ୱରମାନଙ୍କର ବିସ୍ତାର କରେ, ସେ ପଞ୍ଚମ । ପାଠକ୍ରମରେ ସେ ସ୍ୱରମାନଙ୍କ ମଧ୍ୟରେ ପଞ୍ଚମ, ଏକମୁଖ, ଭିନ୍ନ ବର୍ଣ୍ଣ ଷଟ୍‌ହସ୍ତବିଶିଷ୍ଟ, ଦୁଇଟି ହସ୍ତରେ ବୀଣା ଓ ଦୁଇଟି ହସ୍ତରେ ଶଙ୍ଖ, ବ୍ରହ୍ମଦେବତା, ଦ୍ୱୀପ ଶାଲ୍ମଳି, ପିତୃବଂଶଜ, କୋକିଳ ବାହନ, ଗାୟକ ନାରଦ, ଶୃଙ୍ଗାର ରସ । ମତାନ୍ତରେ- ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ ଏହି ପଞ୍ଚବାୟୁର ମେଳରୁ ଜାତ ବୋଲି ଏହାର ନାମ ପଞ୍ଚମ ।

## ଧୈବତଲକ୍ଷଣମ୍

ନାଭେହୃଦୟସମ୍ଭୂତୋ ଧୈବତଃ ପରିକୀର୍ତ୍ତିତଃ ।
ଧାର୍ଯ୍ୟସ୍ୟାପିସ ଧୀମାଂସ୍ତସଂବନ୍ଧୀ ଧୈବତଃ ସ୍ମୃତଃ ।। ୧୨୫ ।।
ଧୈବତୋ ଗୌରବର୍ଣ୍ଣଃ ସ୍ୟାଦେକବକ୍ତ୍ରଶ୍ଚତୁର୍ଭୁଜଃ ।
ବୀଣାକଳଶଖଟ୍ୱାଂଗଫଳଶୋଭିତ ସତ୍କରଃ ।। ୧୨୬ ।।
ଶମ୍ଭୁସ୍ତୁ ଦୈବତଂ ଦ୍ୱୀପଂ ଶ୍ୱେତଂ ସ୍ୟାଦୃଷଭଂ କୁଳମ୍ ।
ରସୋ ଭୟାନକଶ୍ଚାଶ୍ୱୋ ଯାନଂ ଗାତା ତୁ ତୁମ୍ବୁରୁଃ ।। ୧୨୭ ।।

ନାଭିରୁ ହୃଦୟ ପର୍ଯ୍ୟନ୍ତ ଜାତ ହୋଇ ଧୈବତ ନାମରେ କଥିତ । ଯାହାର ବୁଦ୍ଧି ଅଛି, ସେ ଧୀମାନ୍ (ବୁଦ୍ଧିମନ୍ତ) । ତାଙ୍କର

ସମ୍ପନ୍ଧ ଥିବା ହେତୁରୁ ତାର ନାମ ଧୈବତ। ଧୈବତ ଗୌରବର୍ଣ୍ଣ, ଏକମୁଖ, ଚତୁର୍ଭୁଜ, ଚାରି ଭୁଜ ଯଥାକ୍ରମେ ବୀଣା, କଳସ, ଖଟ୍ୱାଂଗ ଓ ଫଳ ଶୋଭିତ, ମହାଦେବ ଦେବତା, ଶ୍ୱେତଦ୍ୱୀପ ଋଷିକୁଳ, ଭୟାନକ ରସ, ଯାନ ଅଶ୍ୱ, ଗାୟକ ତୁମ୍ବୁରୁ (ଋଷଭ ଧୈବତର କୁଳ ହେଉଛି ଋଷି)।

## ନିଷାଦଲକ୍ଷଣମ୍

ନାଭିହୃତ୍କଣ୍ଠତାଲ୍ୱୋଷ୍ଠ ଜିହ୍ୱାଦନ୍ତନିଷାଦଭିଦ୍।
ନିଷୀଦନ୍ତି ସ୍ୱରାଃ ସର୍ବେ ନିଷାଦସ୍ତେନ କଥ୍ୟତେ ॥ ୧୨୮ ॥
ନିଷାଦୋ ଗଜବକ୍ତ୍ରଃ ସ୍ୟାଚ୍ଚିତ୍ରବର୍ଣ୍ଣଶ୍ଚତୁର୍ଭୁଜଃ।
ତ୍ରିଶୂଳପଦ୍ମପରଶୁବୀଜପୂରକସତ୍କରଃ ॥ ୧୨୯ ॥
ଗଣେଶୋ ଦୈବତଂ କ୍ରୌଞ୍ଚଦ୍ୱୀପଂ ବଂଶସ୍ସୁପର୍ବଜଃ।
ଗାତା ତୁ ତୁମ୍ବୁରୁଃ ଶାନ୍ତୋ ରସଃ ସ୍ୟାଦ୍ ବାହନଂ ଗଜଃ ॥ ୧୩୦ ॥
ମତାନ୍ତରେ-ନିଷାଦେଽସୁରବଂଶୋଦ୍ଭବଃ।

ନାଭି, ହୃଦ, କଣ୍ଠ, ତାଲୁ, ଓଷ୍ଠ, ଜିହ୍ୱା, ଦନ୍ତକୁ ଭେଦ କରେ ବୋଲି ଏହାର ନାମ ନିଷାଦ। ସବୁ ସ୍ୱର ନିହିତ ଥିବାରୁ ଏହା ନାମ ନିଷାଦ। ନିଷାଦ ହସ୍ତୀମୁଖ, ନାନାବିଧ ବର୍ଣ୍ଣର, ଚତୁର୍ଭୁଜ, ଚତୁର୍ହସ୍ତରେ ଯଥାକ୍ରମେ ତ୍ରିଶୂଳ, ପଦ୍ମ, ପରଶୁ, ଟଭାଫଳ ବିଦ୍ୟମାନ, ଦେବତା ଗଣେଶ, କ୍ରୌଞ୍ଚ ଦ୍ୱୀପ, ଦେବବଂଶ, ଗାୟକ ତୁମ୍ବୁରୁ, ରସ ଶାନ୍ତ, ବାହନ ଗଜ। ମତାନ୍ତରେ- ନିଷାଦ ଅସୁରବଂଶଜାତ।

## ସ୍ୱରାଣାଂ ସ୍ଥାନନିର୍ଣ୍ଣୟଃ

କଣ୍ଠେ ଚ ବସତେ ଷଡ୍‌ଜଃ ଶୀର୍ଷେ ତୁ ଋଷଭୋବ ସେଦ୍।
ନାସିକାୟାଂ ତୁ ଗାନ୍ଧାରୋ ବସେଦୁରସି ମଧ୍ୟମଃ ॥ ୧୩୧ ॥

**ପଞ୍ଚମୋ ନାଭିଦେଶେ ତୁ ଲଲାଟେ ଧୈବତୋ ବସେତ୍ ।**
**ନିଷାଦୋ ବ୍ରହ୍ମରଂଧ୍ରେ ତୁ ସ୍ୱରସ୍ଥାନମିତୀରିତମ୍ ।। ୧୩୨ ।।**
**ସୌକର୍ଯ୍ୟାର୍ଥଂ ପ୍ରୟୋଗସ୍ୟ ତେଷାମାଦ୍ୟାକ୍ଷରୈର୍ଭବେତ୍ ।**
**ସମୁଦିତୈଃ ସରିଗମପଧନୀତ୍ୟଭିଧୋତ୍ତରମ୍ ।। ୧୩୩ ।।**

**ଯଦ୍ୱାୟୁରୂର୍ଦ୍ଧ୍ୱନିଗାମିତ୍ୱେନ ଷଡ୍‌ଜାଦିନାମେବ ସାଧାରଣତ୍ୱମ୍ ଇତି ଅଥବା ଷଡ୍‌ଜାଦୟଃ ସ୍ୱରା ଭବନ୍ତି ଆକାରାଦୟ ଏବ ସ୍ୱରାଃ ଷଡଜାଦୟସ୍ତୁ ତେଷାମାକାରାଦିନାମୁଚ୍ଚାରଣାର୍ଥମ୍ ।**

କଣ୍ଠରେ ଷଡ୍‌ଜ, ଶୀର୍ଷରେ ଋଷଭ, ନାସିକାରେ ଗାନ୍ଧାର, ବକ୍ଷରେ ମଧ୍ୟମ, ନାଭିରେ ପଞ୍ଚମ, ଲଲାଟରେ ଧୈବତ, ବ୍ରହ୍ମରନ୍ଧ୍ରରେ ନିଷାଦ, ସ୍ୱରମାନଙ୍କର ଅବସ୍ଥିତି ବୋଲି କଥିତ। ପ୍ରୟୋଗର ସୁବିଧା ନିମନ୍ତେ ସେମାନଙ୍କର ଆଦ୍ୟ ଅକ୍ଷରରେ ସେମାନେ କଥିତ, ଯଥା-ସରିଗମପଧନି- ଏପରି କ୍ରମରେ ଧରିବାକୁ ହେବ।

ସାଧାରଣତଃ ବାୟୁ କ୍ରମଶଃ ଷଡ୍‌ଜଠାରୁ ନିଷାଦପର୍ଯ୍ୟନ୍ତ ଊର୍ଦ୍ଧ୍ୱଧ୍ୱନି ହୁଅନ୍ତି। ସେହି ଷଡ୍‌ଜ ଜାତିସ୍ୱର ହୁଅନ୍ତି; କିନ୍ତୁ ସେମାନଙ୍କ ସହିତ ଯୁକ୍ତ ଆକାରାଦି ଉଚ୍ଚାରଣ ନିମିତ୍ତ ଅଭିପ୍ରେତ।

## ସ୍ୱରବିଭାଗବର୍ଣ୍ଣନମ୍

**ଶୁଦ୍ଧାଶ୍ଚ ବିକୃତାଶ୍ଚେତି ପ୍ରଥମଂ ଦ୍ୱିବିଧାଃ ସ୍ୱରାଃ ।**

ପ୍ରଥମତଃ ଶୁଦ୍ଧ ଓ ବିକୃତ ଭେଦରେ ସ୍ୱରମାନେ ଦ୍ୱିବିଧ।

## ଶୁଦ୍ଧସ୍ୱର

**ନିୟତଶ୍ରୁତିସଂପନ୍ନାଃ ସ୍ୱରାଃ ଶୁଦ୍ଧା ଇତି ସ୍ମୃତାଃ ।। ୧୩୪ ।।**

(ନିଶ୍ଚିତ) ସ୍ଥିର ଶ୍ରୁତିରୁ ଜାତ ସ୍ୱରକୁ ଶୁଦ୍ଧ କହନ୍ତି।

## ବିକୃତସ୍ୱରାଃ

**ଶ୍ରୁତ୍ୟୁତ୍କର୍ଷାବିକର୍ଷାଭ୍ୟାଂ ବିକୃତାଃ ପ୍ରତିପାଦିତାଃ ।**
**ରିଗମଧନୟୋର୍ଲକ୍ଷ୍ୟେଽତ୍ର ବିକୃତା ଉଦାହୃତାଃ ।**
**ସପାବବିକୃତୌ ନିତ୍ୟମତସ୍ତାବଚଳୌ ମତୌ ।। ୧୩୫ ।।**

(ସଂ: ରତ୍ନାକର)

ଶ୍ରୁତି ଉତ୍କର୍ଷ ବିକର୍ଷରୂପେ ବିକୃତ ନାମରେ କଥିତ। ଲକ୍ଷ୍ୟମାର୍ଗରେ ରି, ଗ, ମ, ଧ, ନି ବିକୃତରୂପେ ଧୃତ, ସ ଓ ପା ଦୁଇଟି ଅବିକୃତ ଏବଂ ସ୍ଥିର ରୂପେ କଥିତ।

### ଉତ୍କଳୀୟମତେ ସଂଜ୍ଞା

**ସ୍ୱରା ସ୍ତୁନିୟତଶ୍ରୁତିପ୍ରଚ୍ୟୁତା ବିକୃତା ମତାଃ ।**
**ସପାବବିକୃତାବନ୍ୟେ ବିକୃତାଃ ପଞ୍ଚ କୀର୍ତ୍ତିତାଃ ।। ୧୩୬ ।।**
**ସ୍ୱରଃ ପଶ୍ଚାନ୍ନିବୃତ୍ତଃ ସନ୍ କୋମଳାଦିତ୍ୱମେତି ଚେତ୍ ।**
**ତଦୁତ୍ତରସ୍ୱରେ ଗଚ୍ଛନ୍ ତୀବ୍ରତାଦିକମେତି ଚେତ୍ ।। ୧୩୭ ।।**
**ରି କୋମଳଃ କୋମଳୋ ଗୋ ମଧମସ୍ତୀବ୍ରକାଭିଧଃ ।**
**ନିଧୌ କୋମଳ ସଂଜ୍ଞୌ ଚ ପଞ୍ଚୈତେ ବିକୃତା ସ୍ମୃତାଃ ।। ୧୩୮ ।।**

ସ୍ୱରମାନେ ଶ୍ରୁତିନିୟତ ହେଲେ ଅବିକୃତ, ଶ୍ରୁତିପ୍ରଚ୍ୟୁତରେ ବିକୃତ ହୁଅନ୍ତି। ସ ଓ ପା ଅବିକୃତ- ଅନ୍ୟ ପାଞ୍ଚଟି ବିକୃତ। ସ୍ୱର ପଛକୁ ଫେରି କୋମଳାଦିକୁ ପ୍ରାପ୍ତ ହୁଏ। ସେହି ସ୍ୱର ପରସ୍ୱରକୁ ଗଲେ ତୀବ୍ର ହୁଅନ୍ତି। ରି ଓ ଗ କୋମଳ, ମଧମ ତୀବ୍ର, ନି ଓ ଧ କୋମଳ- ଏହି ପାଞ୍ଚଗୋଟି ବିକୃତ ରୂପେ ଜ୍ଞାଣ।

## ଉତ୍କଳୀୟମତେ ବୀଣାୟାଂ ସ୍ୱରସ୍ଥାପନମ୍

ଉତ୍କଳୀୟ ପଦ୍ଧତ୍ୟାଂ ତୁ ଶୁଦ୍ଧୋ ମେଳୋ ନଟୋ ଭବେତ୍।
ତସ୍ୟ ବିଶେଷବୋଧାୟ ପରିଭାଷା ମୟୋଚ୍ୟତେ ॥ ୧୩୯ ॥
ସପୌସ୍ୱରୌ ମତୌ ଶୁଦ୍ଧାବବିକାରତୟାଽଧୁନା।
କୋମଳୋମଧମସ୍ତତ୍ର ଶୁଦ୍ଧ ଏବ ଦ୍ୱିତୀରିତଃ।
ରିଧଗନି ସ୍ୱରାସ୍ତୀବ୍ରା ଅପି ଶୁଦ୍ଧା ମତା ବୁଧୈଃ ॥ ୧୪୦ ॥

ଉତ୍କଳୀୟ ପଦ୍ଧତିରେ ନଟ ଶୁଦ୍ଧମେଳ ଅଟେ। ସେ ତାହାର ସ୍ୱରଜ୍ଞାନ ନିମତେ ମୁଁ ପରିଭାଷା(ସଂଜ୍ଞା) କହୁଛି। ସପସ୍ୱର ଶୁଦ୍ଧ ଏବଂ ଅବିକୃତ। ଅଧୁନା କୋମଳ ମଧମ ଶୁଦ୍ଧରୂପେ କଥିତ। ରିଗଧନି ସ୍ୱର ତୀବ୍ର ହେଲେହେଁ ପଣ୍ଡିତମାନେ ଶୁଦ୍ଧରୂପେ ଜାଣନ୍ତି।

### ଶୁଦ୍ଧସ୍ୱରାଃ

ସଂଗୀତାନାଂ ଚ ଶୁଦ୍ଧାନାଂ ତନ୍ତ୍ୟାଂ ସଂସ୍ଥାପନଂ ଶୃଣୁ।
ତନ୍ତ୍ୟାସ୍ତୁ ସହଜୋ ନାଦଃ ଷଡ୍‌ଜସ୍ୱର ଉଦୀରିତଃ ॥ ୧୪୧ ॥
ତୁମ୍ବଦେଶ ପୂର୍ବମେରୁରନ୍ତ୍ୟମେରୁଶ୍ଚ କୀଳକେ।
ବୀଣାପୂର୍ବାନ୍ତ୍ୟମେର୍ବୋଶ୍ଚ ମଧ୍ୟେ ତିଷ୍ଠତି ତାରଃ ସଃ ॥ ୧୪୨ ॥
ତାରସାନ୍ତ୍ୟମେର୍ବୋ ମଧ୍ୟେ ଜାୟତେ ମଧମସ୍ୱରଃ।
ତାରଡଡ୍‌ଜମୟୋର୍ମଧ୍ୟେ ଭାଗତ୍ରୟସମନ୍ୱିତେ ॥ ୧୪୩ ॥
ତାର ସ୍ୟାଦ୍ ଦ୍ୱୟଭାଗାନ୍ତେ ରାଜତେ ଋଷଭସ୍ୱରଃ।
ଅନ୍ତ୍ୟମେରୁପୟୋର୍ମଧ୍ୟେ ଭାଗତ୍ରୟସମନ୍ୱିତେ ॥ ୧୪୪ ॥
ପଞ୍ଚମାଦ୍ ଦ୍ୱୟଭାଗାନ୍ତେ ରାଜତେ ଋଷଭସ୍ୱରଃ।
ତାରଷଡ୍‌ଜୟୋର୍ମଧ୍ୟେ ସ-ପଭାବେନ ଧଃ ସ୍ଥିତଃ ॥ ୧୪୫ ॥

ସାର୍ଧୈକେନ ପ୍ରମାଣେନ ସ-ପଭାବେ ବିଧୀୟତେ।
ଯଥା ଷଡ୍ଜକସ୍ୱରାପୂର୍ଣ୍ଣାଦୃଷଭାଧୈବତୋମତଃ ॥ ୧୪୬ ॥
ଗାନ୍ଧାରାନ୍ନିସ୍ୱରୋ ମାନ୍ୟୋ ମଧମାତ୍ତାରସପ୍ତଥା।
ଅନ୍ତ୍ୟମେରୁଧୟୋର୍ମଧ୍ୟେ ଗାନ୍ଧାରଂ ସ୍ଥାପ୍ୟତେ ବୁଧୈଃ ॥ ୧୪୭ ॥
ଧତାରଷଡ୍ଜୟୋର୍ମଧ୍ୟେ ଭାଗତ୍ରୟେ ସମନ୍ୱିତେ।
ତାରାସାଦେକଭାଗାନ୍ତେ ନିଷାଦ ପ୍ରସ୍ଫୁଟୋ ଭବେଦ୍ ॥ ୧୪୮ ॥

ବୀଣାରେ ଶୁଦ୍ଧ ସଙ୍ଗୀତମାନଙ୍କର ସ୍ୱରସ୍ଥାପନା ଶୁଣ- ବୀଣାର ସ୍ୱାଭାବିକ ନାଦକୁ ଷଡ୍ଜ କୁହାଯାଏ। ତୁମ୍ବଭାଗରେ ପୂର୍ବମେରୁ କୀଲା (ଖୁଣ୍ଟି)ଠାରେ ଅନ୍ତ୍ୟମେରୁ, ବୀଣାର ପୂର୍ବ ଓ ଅନ୍ତ୍ୟମେରୁ ମଧ୍ୟରେ ତାର-ସ-ରହେ। ତାର-ସ ଓ ଅନ୍ତ୍ୟମେରୁ ମଧ୍ୟରେ ମଧ୍ୟମସ୍ୱର ଜାତହୁଏ। ତାର-ସ-ଓ-ମ- ମଧ୍ୟକୁ ତିନିଭାଗ କରି ତାର-ସା-ର ଦୁଇଭାଗ ଶେଷରେ ପଞ୍ଚମସ୍ୱରରୁ ଦୁଇଭାଗ ଶେଷରେ ଋଷଭ ସ୍ୱର ଶୋଭାପାଏ। ତାର -ସ-ଓ-ପ ମଧ୍ୟରେ ସ ଓ ପ ର ଭାବରେ -ଧ- ବିଦ୍ୟମାନ। ର (ରେ) ଓ ଧ-ର ସମ୍ବନ୍ଧ ସ-ଓ-ପ-ର ସମ୍ବନ୍ଧ ସଙ୍ଗେ ସମାନ; ଅର୍ଥାତ୍ ଏକ ପ୍ରମାଣ ଅନୁସାରେ ହୁଏ। ଷଡ୍ଜ ସ୍ୱରରୁ ପରସ୍ପର ଯେପରି ସ୍ଥିତି-ର-ବା-ରି-ର ଧୈବତ ସ୍ଥିତି ସେହିପରି। ଗାନ୍ଧାରସ୍ୱରରୁ ନିଷାଦ ସ୍ୱରର ସମ୍ପର୍କ ଯାହା, ମଧ୍ୟମ ସ୍ୱରରୁ ତାର ଷଡ୍ଜସ୍ୱରର ସମ୍ପର୍କ ତାହା ଜାଣିବ। ଅନ୍ତ୍ୟ ମେରୁ ଓ ଧୈବତ ମଧ୍ୟରେ ଗାନ୍ଧାର ବିଦ୍ୟମାନ ବୋଲି ପଣ୍ଡିମାନେ କହନ୍ତି। ଧୈବତ ଓ ତାର ଷଡ୍ଜ ମଧ୍ୟକୁ ତିନିଭାଗ କରି ତାର ଷଡ୍ଜର ଏକଭାଗ ଶେଷରେ ନିଷାଦ ସ୍ୱର ପରିସ୍ଫୁଟ ହୁଏ।

## ବିକୃତସ୍ୱରାଃ

ଅତ୍ୟମେରୁଗୟୋର୍ମଧ୍ୟେ ଭାଗତ୍ରୟସମନ୍ୱିତେ ।
ଶୁଦ୍ଧଗାଦ୍ ଦ୍ୱୟଭାଗାନ୍ତେ ସ୍ଥିତ କୋମଳରିସ୍ୱରଃ ॥ ୧୪୯ ॥
ଅନ୍ତ୍ୟମେରୁ ପୟୋର୍ମଧ୍ୟେ ଗାନ୍ଧାରଃ କୋମଳୋ ଭବେତ୍ ।
ଶୁଦ୍ଧଗପୟୋର୍ମଧ୍ୟେ ତୁ ଭାଗତ୍ରୟସମନ୍ୱିତେ ॥ ୧୫୦ ॥
ମାସ୍ତୀବ୍ରୋ ବିବୁଧୈଃ ସ୍ଥାପ୍ୟ ଏକାଂଶାନ୍ତେ ତୁ ପଞ୍ଚମାତ୍ ।
ଶୁଦ୍ଧମ-ତାର-ସୟୋର୍ମଧ୍ୟେ କୋମଳଧୈବତୋ ଭବେତ୍ ॥ ୧୫୧ ॥
ତାରଷଡ୍‌ଜ ପୟୋର୍ମଧ୍ୟେ ଭାଗତ୍ରୟସମନ୍ୱିତେ ।
ତାରସାଦେକଭାଗାନ୍ତେ କୋମଳାଖ୍ୟୋ ନିଷାଦକଃ ॥ ୧୫୨ ॥
ସ୍ୱରାଣାଂ ପରିଭାଷେୟଂ ତଥା ଚ ସ୍ୱରସ୍ଥାପନା ।
ବିଚ୍ଛେତ୍ତୁଂ ସ୍ୱରସନ୍ଦେହଂ ଗୁରୁଦେବେନ ନିର୍ମିତା ॥ ୧୫୩ ॥

ଅତ୍ୟ ମେରୁ ଓ ଗାନ୍ଧାରର ମଧ୍ୟଭାଗକୁ ତିନିଭାଗ କରିବ । ଶୁଦ୍ଧ- ଗାନ୍ଧାରଠାରୁ ଦୁଇ ଭାଗ ଶେଷରେ କୋମଳ ଋଷଭ ରହେ । ଅନ୍ତ୍ୟମେରୁ ଓ ପଞ୍ଚମର ମଧ୍ୟରେ କୋମଳ-ଗାନ୍ଧାର ହୁଏ । ଶୁଦ୍ଧଗାନ୍ଧାର ଓ ପଞ୍ଚମର ମଧ୍ୟସ୍ଥଳକୁ ତିନିଭାଗ କରି ଓ ପଞ୍ଚମ ସ୍ୱରଠାରୁ ଏକଭାଗ ଶେଷରେ ତୀବ୍ର-ମ-କୁ ସ୍ଥାପନ କରିବ । ଶୁଦ୍ଧମଧ୍ୟମ ଓ ତାର ଷଡ୍‌ଜ ମଧ୍ୟରେ କୋମଳ ଧୈବତ ସ୍ୱରହୁଏ । ତାରାଷଡ୍‌ଜ ଓ ପଞ୍ଚମ ମଧ୍ୟକୁ ତିନିଭାଗ କରିବ ଓ ତାରଷଡ୍‌ଜଠାରୁ ଏକଭାଗ ଶେଷରେ କୋମଳ ନିଷାଦ ରହେ । ସ୍ୱରମାନଙ୍କର ଏହି ପରିଭାଷା ଓ ସ୍ଥାପନା ସ୍ୱର ସମ୍ପର୍କୀୟ ସନ୍ଦେହ ଦୂର କରିବା ନିମନ୍ତେ ଗୁରୁଦେବଙ୍କ ଦ୍ୱାରା ବିହିତ ହୋଇଅଛି ।

# ସ୍ୱରସ୍ଥାପନକୋଷ୍ଟକମ୍

| ଶ୍ରୁତି ସଂଖ୍ୟା | ଶ୍ରୁତିନାମ | ପ୍ରାଚୀନ ସ୍ୱରସ୍ଥିତି | ପ୍ରଚଳିତ ଉତ୍କଳୀୟମତେ ସ୍ୱରସ୍ଥିତି | ପ୍ରଚଳିତ ହିନ୍ଦୁସ୍ଥାନୀ ସ୍ୱରସ୍ଥିତି | ପ୍ରଚଳିତ କାର୍ଣ୍ଣାଟକୀ ସ୍ୱରସ୍ଥିତି |
|---|---|---|---|---|---|
| ୧. | ତୀବ୍ରା | | ଷଡ୍‌ଜ | ଷଡ୍‌ଜ | ଷଡ୍‌ଜ |
| ୨. | କୁମୁଦ୍ୱତୀ | | | | |
| ୩. | ମନ୍ଦା | | | କୋମଳଋଷଭ | ଶୁଦ୍ଧଋଷଭ |
| ୪. | ଛନ୍ଦୋବତୀ | ଶୁଦ୍ଧଷଡ୍‌ଜ | | | |
| ୫. | ଦୟାବତୀ | | ଶୁଦ୍ଧଋଷଭ | ଶୁଦ୍ଧଋଷଭ | ଶୁଦ୍ଧଗାନ୍ଧାର, ଚତୁଶ୍ରୁତି ଋଷଭ |
| ୬. | ରଞ୍ଜନୀ | | | | |
| ୭. | ରକ୍ତିକା | ଶୁଦ୍ଧଋଷଭ | କୋମଳଗାନ୍ଧାର | କୋମଳଗାନ୍ଧାର | ସାଧାରଣଗାନ୍ଧାର, ଷଟଶ୍ରୁତିଋଷଭ |
| ୮. | ରୌଦ୍ରୀ | | ଶୁଦ୍ଧଗାନ୍ଧାର | ଶୁଦ୍ଧଗାନ୍ଧାର | ଅନ୍ତରଗାନ୍ଧାର |
| ୯. | କ୍ରୋଧୀ | ଶୁଦ୍ଧଗାନ୍ଧାର | | | |
| ୧୦. | ବଜ୍ରିକା | | ଶୁଦ୍ଧମଧ୍ୟମ | ଶୁଦ୍ଧମଧ୍ୟମ | ମଧ୍ୟମ |

| | | | | | |
|---|---|---|---|---|---|
| ୧୧. | ପ୍ରସାରିଣୀ | | | | |
| ୧୨. | ପ୍ରୀତି | | ତୀବ୍ରମଧ୍ୟମ | ତୀବ୍ରମଧ୍ୟମ | ପ୍ରତିମଧ୍ୟମ |
| ୧୩. | ମାର୍ଜନୀ | ଶୁଦ୍ଧମଧ୍ୟମ | | | |
| ୧୪. | କ୍ଷିତି | | | | |
| ୧୫. | ରକ୍ତା | | କୋମଳଧୈବତ | କୋମଳଧୈବତ | ଶୁଦ୍ଧଧୈବତ |
| ୧୬. | ସଂଦୀପନୀ | | କୋମଳଧୈବତ | କୋମଳଧୈବତ | ଶୁଦ୍ଧଧୈବତ |
| ୧୭. | ଆଳାପିନୀ | ଶୁଦ୍ଧପଞ୍ଚମ | | | |
| ୧୮. | ମଦନ୍ତୀ | | ଶୁଦ୍ଧଧୈବତ | ଶୁଦ୍ଧଧୈବତ | ଶୁଦ୍ଧନିଷାଦ, ଚତୁଃଶ୍ରୁତି ଧୈବତ |
| ୧୯. | ରୋହିଣୀ | | | | |
| ୨୦. | ରମ୍ୟା | ଶୁଦ୍ଧଧୈବତ | କୋମଳନିଷାଦ | କୋମଳ ନିଷାଦ | କୌଶିକିନିଷାଦ, ଷଟଶ୍ରୁତିଧୈବତ |
| ୨୧. | ଉଗ୍ରା | | ଶୁଦ୍ଧନିଷାଦ | ଶୁଦ୍ଧନିଷାଦ | କାକଳିନିଷାଦ |
| ୨୨. | କ୍ଷୋଭିଣୀ ଶୁଦ୍ଧନିଷାଦ | | | | |

# ସ୍ୱର ଆନ୍ଦୋଳନ ସଂଖ୍ୟା ନିରୂପଣ

| | ପ୍ରଚଳିତ ଉତ୍କଳୀୟ ସ୍ୱର | ଆନ୍ଦୋଳନ ସଂଖ୍ୟା | ପାଶ୍ଚାତ୍ୟ ଆନ୍ଦୋଳନ ସଂଖ୍ୟା |
|---|---|---|---|
| ୧. | ଷଡ୍‌ଜ | ୧୪୦ | ସି-୨୪୦ |
| ୨. | କୋମଳଋଷଭ | ୨୫୯ [illegible] | ସିଶାର୍ପ-୨୫୬ |
| ୩. | ଶୁଦ୍ଧଋଷଭ | ୨୭୦ | ଡି-୨୭୦ |
| ୪. | କୋମଳ ଗାନ୍ଧାର | ୨୮୮ | ଡିଶାର୍ପ-୨୯୯ |
| ୫. | ଶୁଦ୍ଧଗାନ୍ଧାର | ୩୦୧ [illegible] | ଇ-୩୦୦ |
| ୬. | ଶୁଦ୍ଧମଧ୍ୟମ | ୩୨୦ | ଏଫ-୩୨୦ |
| ୭. | ତୀବ୍ରମଧ୍ୟମ | ୩୪୪ [illegible] | ଏଫଶାର୍ପ-୩୩୭ [illegible] |
| ୮. | ପଞ୍ଚମ | ୩୬୦ | ଜି-୩୬୦ |
| ୯. | କୋମଳ ଧୈବତ | ୩୮୮ [illegible] | ଜିଶାର୍ପ-୩୯୪ |
| ୧୦. | ଶୁଦ୍ଧଧୈବତ | ୪୦୫ | ଏ-୪୦୦ |
| ୧୧. | କୋମଳ ନିଷାଦ | ୪୩୨ | ବିଫ୍ଲାଟ-୪୩୨ |
| ୧୨. | ଶୁଦ୍ଧନିଷାଦ | ୪୫୨ [illegible] | ବି-୪୫୦ |
| ୧୩. | ତାର ଷଡ୍‌ଜ | ୪୮୦ | ସି-୪୮୦ |

## ସପ୍ତକାନି

ଏଷା ତ୍ରୈଗୁଣ୍ୟସଂଜାତା ଷଡ୍ଜାଦିନା ପରିସ୍ଥିତିଃ ।
ମନ୍ଦ୍ରା ମଧ୍ୟା ଚ ତାରା ଚ **ହୃଦ୍‌କଣ୍ଠଶୀର୍ଷସମ୍ଭବା ।। ୧୫୪ ।।**
ମନ୍ଦ୍ରାଦର୍ଦ୍ଧଂ ତୁ ମଧ୍ୟଂ ସ୍ୟାନ୍ ମଧ୍ୟାର୍ଥଂ ତାରସପ୍ତକମ୍ ।
ଉତ୍ତରୋତ୍ତରସଂକୋଚସ୍ତ୍ୱାକାଶେ ଭବତି ଧ୍ରୁବମ୍ ।। ୧୫୫ ।।
ସମଭାଗପ୍ରକଳ୍ପୋଽତ୍ର ନ ସାଧୁ ମନ୍ୟତେ ବୁଧୈଃ ।
ତସ୍ମାଦ୍ ଭାଗାସ୍ତୁ ବିଷମୋଃ କଳ୍ପିତା ଭରତାଦିଭିଃ ।। ୧୫୬ ।।
ଦ୍ୱିଗୁଣଃ ପୂର୍ବ ପୂର୍ବସ୍ୱାଦୟଂ ସ୍ୟାଦୁତ୍ତରୋତ୍ତରଃ ।
ଏବଂ ଶରୀରଂ ବୀଣାୟାଂ ଦାରବ୍ୟାଂ ତୁ ବିପର୍ଯ୍ୟୟଃ ।। ୧୫୭ ।।
(ସଂ-ଦ)

ଷଟ୍‌ଷଷ୍ଟିଶ୍ରୁତୟୋଽତ୍ର ସ୍ୟୁଃ ସ୍ଥାନତ୍ରୟସମାଗମେ ।
ଦ୍ୱାବିଂଶତି ପ୍ରଭେଦେନ ସଂଖ୍ୟା ଦ୍ୱାବିଂଶତିର୍ମତା ।। ୧୫୮ ।।
ପୂର୍ବା ମନ୍ଦ୍ରଗତିଃ ପ୍ରୋକ୍ତା ପରା ତାରା ପ୍ରକୀର୍ତ୍ତିତା ।
ସରିଗମାଃ ପଧୌନୀତି ସରିଗମାଃ ପଧୌନି ଚ ।। ୧୫୯ ।।
ସରିଗମାଃ ପଧୌନୀତି ସ୍ଥାନକ୍ରମମିଦଂ ଜଗୁଃ ।
ଅଧୋବିନ୍ଦୁଃ ସ୍ୱରୋ ମନ୍ଦ୍ରସ୍ତାରୋ ବିନ୍ଦୁଶିରୋ ଭବେତ୍ ।। ୧୬୦ ।।
ବିନ୍ଦୁହୀନୋଽଥ ଶୁଦ୍ଧ ସ୍ୟାଦ୍ୱିକୃତାନଧୁନା ବ୍ରୁବେ ।
ଅଧୋରେଖାଂକିତା ଜ୍ଞେୟାଃ କୋମଳସ୍ତୀବ୍ର ମଃ ପୁନଃ ।
ଊର୍ଦ୍ଧ୍ୱରେଖାୟତୋ ଲିପ୍ୟାଂ ସଂକେତୋଽତ୍ର ସମାଦୃତଃ ।। ୧୬୧ ।।

ଏହି ସପ୍ତକଗଣ ତ୍ରିଗୁଣରୁ ସଂଜାତ । ଷଡ୍‌ଜାଦିରେ ତାହା ଅବସ୍ଥିତ । ମନ୍ଦ୍ରା, ମଧ୍ୟା ଓ ତାରା, ଏହି ତିନିଗୋଟି ଯଥାକ୍ରମେ ହୃଦୟ, କଣ୍ଠ ଓ ଶୀର୍ଷରୁ ଜାତହୁଏ । ମନ୍ଦ୍ରରୁ ଅର୍ଦ୍ଧ ହେଉଛି ମଧ୍ୟ, ମଧ୍ୟରୁ ଅର୍ଦ୍ଧ ହେଉଛି ତାରସପ୍ତକ । ସେସବୁ ଉତ୍ତରୋତ୍ତର ସଂକୋଚ

ହୋଇ ଆକାଶରେ ନିଶ୍ଚିତ ଭାବରେ ରହନ୍ତି। ଅର୍ଥାତ୍ କ୍ରମଶଃ ସରୂ ହୋଇ ଉର୍ଦ୍ଧ୍ୱଗତିରେ ଅବସ୍ଥିତ। ସମାନ ଭାବରେ ସେମାନଙ୍କ ରଚନା ଭଲ ନୁହେଁ ବୋଲି ପଣ୍ଡିତମାନେ ମଣନ୍ତି। ତହୁଁ ସେମାନଙ୍କର ଭାଗବିଷମ (ଅର୍ଥାତ୍ ସମାନ ନୁହନ୍ତି) ବୋଲି ଭରତାଦି ଧରିଅଛନ୍ତି। ଉତ୍ତରୋତ୍ତର ସଂକୋଚ ହେଲେହେଁ ପୂର୍ବ ପୂର୍ବଠାରେ ପର ପର ସପ୍ତ ଦ୍ୱିଗୁଣ ହେବ; ଅର୍ଥାତ୍ ସରୁ ହୋଇ ମନ୍ଦ୍ରରୁ ଦ୍ୱିଗୁଣ 'ମଧ' ଓ ମଧରୁ 'ତାର' ହେବ। ଏହି ବିଧି ଶରୀର ବୀଣାରେ ଅର୍ଥାତ୍ ଗଳଯନ୍ତ୍ରରେ ହେବ; କିନ୍ତୁ କାଷ୍ଠ ନିର୍ମିତ ଏହା ବିପରୀତକୁ ବୁଝିବ। ଏହିପରି ଛଅଷଠି ଶ୍ରୁତି ଏହି ତିନି ସପ୍ତକରେ ହୁଏ (ଅର୍ଥାତ୍ ପ୍ରତ୍ୟେକରେ ୨୨ ଶ୍ରୁତି ରହିବାହେତୁ)। ପୂର୍ବଟି ମନ୍ଦ୍ରଗତି ବୋଲି କଥିତ। ପରଟି 'ତାରା' ନାମରେ କଥିତ। ସରିଗମ ପଧନି, ସରିଗମପଧନି, ସରିଗମପଧନି, ସ୍ଥାନତ୍ରୟରେ ଗୀତ ହୁଏ, ତଳରେ ବିନ୍ଦୁ ମନ୍ଦ୍ରରେ, ଶିରରେ ବିନ୍ଦୁ ତାରରେ ହୁଏ। ବିନ୍ଦୁ ନଥିଲେ ଶୁଦ୍ଧ ହୁଏ। ଆଜିକାଲି ତାହା ବିକୃତରୂପେ କଥିତ। ସ୍ୱରାକ୍ଷର ତଳେ ରେଖାଥିଲେ କୋମଳ ଜାଣିବ, ପୁଣି ମଧମ ସ୍ୱର ତୀବ୍ର ବୋଲି ଧରିବ, ତାହାର କି ମଧମର ଉର୍ଦ୍ଧ୍ୱରେ ରେଖା ରହିବ, ଏହି ସଂକେତ ଏଠାରେ ଦିଆଗଲା।

ମନ୍ଦ୍ର (ଉଦାରା) ସ ରି ଗ ମ ପ ଧ ନି
ମଧ (ମୁଦାରା) ସ ରି ଗ ମ ପ ଧ ନି
ତାର (ତାରା) ସ ରି ଗ ମ ପ ପ ନି

### ବିକୃତ ସ୍ୱର ସଂକେତ

କୋମଳ-ରି ଗ ଧ ନି। ତୀବ୍ର-ମ।

## ବାଦ୍ୟାଦିଲକ୍ଷଣମ୍

ଚତୁର୍ବିଧାଃ ସ୍ୱରାବାଦୀ ସଂବାଦୀ ଚ ବିବାଦ୍ୟପି ।
ଅନୁବାଦୀ ଚ ବାଦୀ ତୁ ପ୍ରୟୋଗେ ବହୁଳସ୍ୱରାଃ ।। ୧୬୨ ।।
ଶ୍ରୁତୟୋ ଦ୍ୱାଦଶାଷ୍ଟୌ ବା ଯୟୋରନ୍ତରଗୋଚରାଃ ।
ମିଥଃ ସଂବାଦୀନୌ ତୌ ସ୍ତୋ ନିଗାବନ୍ୟ ବିବାଦିନୌ ।। ୧୬୩ ।।
(ସଂ-ର)

ସମୌ ସପୌ ରିଧୌ ଚୈବ ନିଗୌ ସଂବାଦିନୌ ମିଥଃ ।
ଏବଂ ଶୁଦ୍ଧସ୍ୱରେଷ୍ୱୁକ୍ତଃ ସଂବାଦୀ ସ୍ୱରନିର୍ଣ୍ଣୟଃ ।। ୧୬୪ ।।
ସାଧାରଣାଖ୍ୟୋ ଗାନ୍ଧାରଃ କୈଶିକାଖ୍ୟୋ ନିଷାଦୟଃ ।
ତଥୈବାନ୍ତରକାକଲ୍ୟୋଃ ସଂବାଦୀ ବା ବିକୃତେଷ୍ୱପି ।। ୧୬୫ ।।
ଶୁଦ୍ଧର୍ଷଭେଣ ସଂବାଦୀ ବରାଳୀ ମଧମସ୍ତଥା ।
ଶୁଦ୍ଧଶ୍ଚ ମଧମଃ ଶୁଦ୍ଧନିଷାଦଶ୍ଚେତ୍ୟୁଭୌ ସ୍ୱରୌ ।। ୧୬୬ ।।
ଶ୍ରୁତ୍ୟଷ୍ଟକେନାନ୍ତରିତାବପି ସଂବାଦୀନୌ ନହି ।
ଏବଂ ସଂବାଦୀଲକ୍ଷ୍ମୋକ୍ତଂ ବିବାଦୀ ଲକ୍ଷ୍ୟତେଽଧୁନା ।। ୧୬୭ ।।
ଏକ ଶ୍ରୁତ୍ୟନ୍ତରିତୋ ଯୟୋସ୍ତୁ ସ୍ୱରୟୋର୍ଦ୍ୱୟୋଃ ।
ତୟୋର୍ମିଥୋ ବିବାଦୀତ୍ୱମେବଂ ସର୍ବତ୍ର କଳ୍ପୟେତ୍ ।। ୧୬୮ ।।
ରିଗୌଧନି ଚ ଶୁଦ୍ଧେଷୁ ସ୍ୱରୌ ସ୍ୟାତାଂ ବିବାଦିନୌ ।
ସାଧାରଣାନ୍ତରୌ ଚୈବ କୈଶିକୀ କାକଳୀସ୍ୱରୌ ।। ୧୬୯ ।।
ମିଥୋ ବିବାଦିନୌ ଜ୍ଞେୟୌ ବିକୃତେଷୁ ସ୍ୱରେଷ୍ୱପି ।
ବିବାଦୀବାଦୀସଂବାଦୀ ଭିନ୍ନାଃ ସ୍ୟୁରନୁବାଦିନଃ ।। ୧୭୦ ।।

ବାଦୀ, ସଂବାଦୀ, ବିବାଦୀ, ଅନୁବାଦୀ ଭେଦରେ ସ୍ୱର ଚତୁର୍ବିଧ । ଅନୁବାଦୀ ଓ ବାଦୀର ପ୍ରୟୋଗରେ ବହୁଳସ୍ୱର ହୁଏ । ପ୍ରୟୋଗରେ, ଜାତ୍ୟାଦିରେ ବହୁଳ ଗ୍ରହନ୍ୟାସାଦିରେ ପୁନଃପୁନଃ ଆବୃତ୍ତି କରିବାକୁ ହୁଏ । ବାଦୀ ଓ ସଂବାଦୀର ମଧବର୍ତ୍ତୀ ଶ୍ରୁତିମାନ

ଆଠ ବା ବାର ହେବେ, ବାଦୀ ସ୍ୱରଠାରୁ ସେହି ଦୂଇଟି ଅର୍ଥାତ୍ ଆଠ ବା ବାର ଶ୍ରୁତିରେ ଥିବା ସ୍ୱର ସଂବାଦୀ ହେବ। ଯଥା-ସ-ମା,ସ,ପା-ରି-ଧ ଓ ନି,ଗ,- ଏହି ସ୍ୱରମାନଙ୍କ ମଧ୍ୟରେ ସଂବାଦୀ ସ୍ୱରର ନିର୍ଣ୍ଣୟ କରାହୁଏ। ସାଧାରଣ ଗାନ୍ଧାର ଅର୍ଥାତ୍ କୋମଳ ଗାନ୍ଧାର ଓ କୈଶିକୀ ନିଷାଦ, ଅର୍ଥାତ୍ କୋମଳ ନିଷାଦ ମଧ୍ୟରେ ବାଦୀ-ସଂବାଦୀ ଅଛି। ସେହିପରି ଅନ୍ତର କି ଗାନ୍ଧାର ସହିତ କାକଳୀ (ନିଷାଦର) ବାଦୀ-ସଂବାଦୀ ସମ୍ବନ୍ଧ ବିକୃତରେ ମଧ୍ୟ ଜାଣିବ। ବାଦୀ ଶୁଦ୍ଧ ଋଷଭ (କୋମଳ ଋଷଭ) ସହିତ ବରାଳୀ ମଧ୍ୟମ ( ବା ତୀବ୍ର ମଧ୍ୟମ) ସଂବାଦୀ ଅଟେ। ଶୁଦ୍ଧ ମଧ୍ୟମ (କାମଳ ମଧ୍ୟମ) ଓ ଶୁଦ୍ଧ ନିଷାଦ (କୋମଳ ନିଷାଦ) ମଧ୍ୟରେ ବାଦୀ-ସଂବାଦୀ ସମ୍ବନ୍ଧ ରହେ। ଶ୍ରୁତି ଆଠଟି ଭିନ୍ନରେ (ଅର୍ଥାତ୍ କମ୍‌ରେ) ସଂବାଦୀ ହେବ ନାହିଁ। ଏହିପରି ସଂବାଦୀର ଲକ୍ଷଣ କୁହାଗଲା। ବର୍ତ୍ତମାନ ବିବାଦୀର ଲକ୍ଷଣ କୁହାଯାଉଅଛି। ଗୋଟିଏ ଶ୍ରୁତି ଛଡ଼ାରେ ଯେଉଁ ସ୍ୱରଦ୍ୱୟ ମଧ୍ୟରେ ପରସ୍ପର ବିବାଦୀଭାବ ରହେ, ଏହିଭଳି ସର୍ବତ୍ର କଳ୍ପନା କରିବ। ଋଷଭ, ଗାନ୍ଧାର, ଧୈବତ ଓ ନିଷାଦର ଶୁଦ୍ଧତ୍ୱରେ ତାର ଅନ୍ୟ ସ୍ୱର ବିବାଦୀ ହୁଏ। ସାଧାରଣ ଗାନ୍ଧାର ଓ ଅନ୍ତର ଗାନ୍ଧାର ଏବଂ କୈଶିକୀ ନିଷାଦ ଓ କାକଳୀ ନିଷାଦ ମଧ୍ୟରେ ବିବାଦୀ ସମ୍ବନ୍ଧ ରହେ। ବିକୃତ ସ୍ୱରମାନଙ୍କରେ ମଧ୍ୟ ପରସ୍ପର ମଧ୍ୟରେ ବିବାଦିତ୍ୱ ହୁଏ। ବିବାଦୀ-ବାଦୀ, ସଂବାଦୀ ଭିନ୍ନ ଅନ୍ୟ ସ୍ୱରସବୁ ଅନୁବାଦୀ ଅଟନ୍ତି।

### ବାଦୀସଂବାଦୀସଂଜ୍ଞା

ଚତୁର୍ବିଧା ସ୍ୱରେଷ୍ୱେଷୁ ବାଦୀ ରାଜା ପ୍ରକୀର୍ତ୍ତ୍ୟତେ।<br>
ସଂବାଦୀ ତ୍ୱନୁସାରିତ୍ୱବସ୍ୟାମାତ୍ୟୋ ବିଧୀୟତେ॥ ୧୭୧ ॥

**ବିବାଦୀ ବିପରୀତତ୍ୱାଦ୍ଧୀରୈରୁକ୍ତୋ ରିପୂପମଃ ।**
**ସ୍ୱରୂପମର୍ଦ୍ଦନଂ ତେନ ପ୍ରୟୋଗେ ସ୍ୟାଦ୍ୱିବାଦିନା ।। ୧୭୨ ।।**
**ସ୍ୱରୂପମର୍ଦ୍ଦନାଭାବେ ଗୀତେରକ୍ତିର୍ନ ଲଭ୍ୟତେ ।**
**ଶତ୍ରୁତା ମର୍ଦ୍ଦନେ ହି ସ୍ୟାଦ୍ରାଜ୍ୟଲୋକେ ପ୍ରକାଶନମ୍ ।। ୧୭୩ ।।**
**ପ୍ରାଚୁର୍ଯ୍ୟେଣ ବଦେଦ୍ୱାଦୀ ସଂବାଦୀ ତଚ୍ଛମୋ ଭବେତ୍ ।**
**ପଶ୍ଚାଦ୍ ବ୍ରୁତେନୁବାଦୀ ସ୍ୟାଦ୍‌ବିବାଦୀ ତଦ୍ୱିନା ଭବେତ୍ ।। ୧୭୪ ।।**
**ସଂବାଦୀ ସ ଭବତ୍ୟେବ ବାଦିନଶ୍ଚ ସମଶ୍ରୁତିଃ ।**
**ନ୍ୟୂନତ୍ୱଂ ଶୀତାଦେବସ୍ୟାଦ୍ରକ୍ତ୍ୟାୟା ରକ୍ତିଯୋଜକଃ ।। ୧୭୫ ।।**
**ନୃପାମାତ୍ୟାନୁସାରିତ୍ୱାଦନୁବାଦୀ ତୁ ଭୃତ୍ୟବତ୍ ।**
**ବାଦୀବିବାଦୀସଂବାଦ୍ୟନୁବାଦୀସ୍ୱରମଣ୍ଡଳମ୍ ।। ୧୭୬ ।।**

ଏହି ଚାରିପ୍ରକାର ସ୍ୱର ମଧ୍ୟରେ ବାଦୀ ରାଜା ବୋଲି କଥିତ । ସଂବାଦୀ ବାଦୀକୁ ଅନୁସରଣ କରିଥିବା ହେତୁ ସେ ମନ୍ତ୍ରୀ ହୁଏ । ବିବାଦୀ ବିପରୀତଭାବ ଧାରଣ କରିଥିବା ହେତୁ ପଣ୍ଡିତମାନେ ତାଙ୍କୁ ଶତ୍ରୁରୂପେ ଗ୍ରହଣ କରିଅଛନ୍ତି । ବିବାଦୀ-ସ୍ୱରଦ୍ୱାରା ପ୍ରୟୋଗରେ ବାଦୀସ୍ୱରର ମର୍ଦ୍ଦନ କରାଯାଏ । ସ୍ୱରୂପର ମର୍ଦ୍ଦନ ଅଭାବରେ ଗୀତର ଅନୁରଞ୍ଜନ ହୁଏ ନାହିଁ । ଯେପରି ଶତ୍ରୁତାର ନାଶରେ ସଂସାରରେ ରାଜ୍ୟର ବିକାଶ ହୁଏ (ରାଜ୍ୟ ଶୋଭା ପାଏ), ବହୁଳଭାବେ ବାଦୀକୁ ଗାଇବ- ସଂବାଦୀ ସେହିଭଳି ଗାଇବ । ତା ପଛରେ ଅନୁବାଦୀକୁ ଗାଇବ, ବିବାଦୀକୁ ଛାଡ଼ିବାକୁ ହେବ । ବାଦୀର ସମାନ ଶ୍ରୁତିବିଶିଷ୍ଟ ହେଲେ ସଂବାଦୀ ହୁଏ । ଗୀତରେ ଶ୍ରୁତିର କମି ହେଲେ ତାହା ଅନୁରଞ୍ଜନ ହୁଏନାହିଁ । ରାଜା ଓ ମନ୍ତ୍ରୀଙ୍କର ଅନୁଗାମୀ ହେତୁ ଅନୁବାଦୀ ଭୃତ୍ୟ ତୁଲ୍ୟ, ସ୍ୱରମଣ୍ଡଳରେ ବାଦୀ, ବିବାଦୀ, ସଂବାଦୀ, ଅନୁବାଦୀ ଥାଏ ।

ବାଦ୍ୟାଦିଶବ୍ଦବ୍ୟୁତ୍ପତ୍ତିଃ

**ବଦନାଦ୍ ବାଦୀ ସ୍ୱାମୀବଦ୍, ସଂବଦନାଦ୍ ସଂବାଦୀ ।**
**ଅମାତ୍ୟବଦ୍, ଅନୁବଦନାଦନୁବାଦୀ ପରିଜନବଦ୍ ॥ ୧୭୭ ॥**

**ବିବଦନାଦ୍ ବିବାଦୀ ଶତ୍ରୁବଦ୍, ନନୁ ବଦନାଦିକଂ ପ୍ରାଣିଧର୍ମଃ କଥମଚେତନାନାଂ ସ୍ୱରାଣାଂ ସମ୍ଭବତି । ସତ୍ୟମୁକ୍ତମ୍, ବଦନଂ ହି ନାମ ମାତ୍ର ପ୍ରତିପାଦକତ୍ୱମ୍ । ନ ବଚନମିତି, କିଂ ତତ୍ ପ୍ରତିପାଦୟତି, ରାଗସ୍ୟ ରାଗତ୍ୱଂ ଜନୟତି ।**

କହିବାରୁ ବାଦୀ ସ୍ୱାମୀ ତୁଲ୍ୟ । ସେହି ରୂପେ କହିବାରୁ (ଅର୍ଥାତ୍ ସ୍ୱାମୀର ମତ ଅନୁସାରେ କହିବାରୁ) ସଂବାଦୀ । ପଛରେ କହିବାରୁ ଅନୁବାଦୀ(ଅନୁକରଣ କରି କହିବାରୁ) ଭୃତ୍ୟ ତୁଲ୍ୟ । ବିରୁଦ୍ଧ ବଚନ କହିବାରୁ ବିବାଦୀ ଶତ୍ରୁତୁଲ୍ୟ । ଆଚ୍ଛା, କହିବା ପ୍ରଭୃତି ପ୍ରାଣୀଙ୍କର ଧର୍ମ କିପରି ଅଚେତନ ସ୍ୱରମାନଙ୍କର ତାହା ସମ୍ଭବପର ହେବ । ଠିକ୍ କହିଲ, ବଦନ (କଥନ) ନାମ ମାତ୍ର ବୁଝାଇବା, ଧର୍ମରୁ କଥନ ନୁହେଁ, କଣ ତାହା ବୁଝାଉଛି, ରାଗର ରାଗତ୍ୱ ଜନ୍ମାଏ ।

ବାଦୀ, ସଂବାଦୀ, ଅନୁବାଦୀ, ବିବାଦୀ କୋଷ୍ଟକମ୍

| ବାଦୀ | ସମଭାବ ସଂବାଦୀ | ମଧ୍ୟଭାଗ ସଂବାଦୀ | ଅନୁବାଦୀ ଆରୋହି | ଅନୁବାଦୀ *ଅବରୋହି | ବାଦୀ | ସଂବାଦୀ | ଅନୁବାଦୀ | ବିବାଦୀ |
|---|---|---|---|---|---|---|---|---|
| ସା | ପା | ମ୍ | ଗ | ଧ | | | | |
| ରି | ଧ | ମ | ମ | ନ | ସ | ପମ | ରିଗଧନି | |
| ରି | ଧ | ପ | ମ | ନ | ରି | ଧ | ସାମ ପନି | ଗ |
| ଗ | ନ | ଧ | ପ | ସା | ଗ | ନି | ସାମ ପଧ | ରି |
| ଗ | ନ | ଧ | ଧ | ରି | ମ | ସା | ରିଗପ ଧନି | |
| ମ | ରି | ନି | ନି | ଗ | ଧ | ରି | ସାଗ ମନି | |
| ପ | ଗ | ରି | ସା | ମ | | | | |
| ଧ | ଗ | ରି | ସା | ମ | | | | |
| ଧ | ଗ | ରି | ରି | ମ | | | | |
| ନି | ମ | ଗ | ରି | ପ | | | | |
| ନ | ମ | ଗ | ଗ | ଧ | | | | |
| ସା | ପ | ମ | ଗ | ଧ | | | | |

## ଗ୍ରହନ୍ୟାସାଦିଲକ୍ଷଣମ୍

**ଗ୍ରହାଂଶତାରମନ୍ଦ୍ରାଶ୍ଚ ନ୍ୟାସୋପନ୍ୟାସକୋ ତଥା ।**
**ଅପି ସଂନ୍ୟାସବିନ୍ୟାସୌ ବହୁତ୍ୱଂ ଚାଲ୍ପତା ଯଥା ।। ୧୭୮ ।।**
**ଲକ୍ଷଣାନି ଦଶୈତାନି ରାଗାଣାଂ ମୁନୟୋବ୍ରୁବନ୍ ।**
**ଦଶାନାମପି ଚୈତେଷାଂ କ୍ରମାଲ୍ଲକ୍ଷଣମୁଚ୍ୟତେ ।। ୧୭୯ ।।**

ଗ୍ରହ, ଅଂଶ, ତାର, ମନ୍ଦ୍ର, ନ୍ୟାସ, ଅପନ୍ୟାସ, ସନ୍ୟାସ ଓ ବିନ୍ୟାସ, ବହୁତ୍ୱ ଅଳ୍ପତ୍ୱ-ଏହି ଦଶଟି ଲକ୍ଷଣ ରାଗରେ ଥାଏ ବୋଲି ମୁନିମାନେ କହିଅଛନ୍ତି । ଏହି ଦଶଟିର ଲକ୍ଷଣ କ୍ରମଶଃ କୁହାଯାଉଅଛି ।

### (୧) ଗ୍ରହ

**ଯେନାଦୌ ଗୀୟତେ ଗୀତେ ସ୍ୱରେଣ ସ ଭବେଦ୍ ଗ୍ରହଃ**

ଯେଉଁ ସ୍ୱରରେ ପ୍ରଥମତଃ ଗାନ କରାଯାଏ, ତାହା ଗ୍ରହ ନାମରେ କଥିତ ।

### (୨) ଅଂଶଃ

**ବହୁଶୋ ଗୀୟତେ ଯେନ ସ୍ୱରେଣାଂଶ ସ କଥ୍ୟତେ ।।। ୧୮୦ ।।**

ଯେଉଁ ସ୍ୱରରେ ବହୁବାର ଗାନ କରାହୁଏ, ତାହାକୁ ଅଂଶ କହନ୍ତି ।

### ଜୀବସ୍ୱରଃ

**ଅଂଶଃ ସ୍ୱରୋଽପ୍ୟସାଦେବ ଜୀବସ୍ୱର ଇତି ସ୍ମୃତଃ ।**

ଏହି ଅଂଶ-ସ୍ୱର ମଧ ଜୀବସ୍ୱର ନାମରେ କଥିତ ଅଟେ ।

### (୩) ମନ୍ଦ୍ରଃ

ନୀଚୈଃ ସ୍ୱରେଣ ଯଦ୍‌ଗାନଂ ସ ମନ୍ଦ୍ରସ୍ୱର ଉଚ୍ୟତେ ॥ ୧୮୧ ॥

ନୀଚ ସ୍ୱରରେ ଯେ ଗାନ ହୁଏ, ସେ ସ୍ୱରକୁ ମନ୍ଦ୍ରସ୍ୱର କହନ୍ତି ।

### (୪) ତାରଃ

ଉଚ୍ଚୈଃସ୍ୱରେଣ ଯଦ୍ ଗାନଂ ସ ତାରସ୍ୱର ଉଚ୍ୟତେ ।

ଉଚ୍ଚ ସ୍ୱରରେ ଯେ ଗାନ ହୁଏ, ସେ ସ୍ୱରକୁ ତାରସ୍ୱର କହନ୍ତି ।

### (୫) ନ୍ୟାସଃ

ନ୍ୟାସସ୍ୱରଃ ସ କଥିତୋ ଯେନ ଗୀତଂ ସମାପ୍ୟତେ ॥ ୧୮୨ ॥

ଯେଉଁ ସ୍ୱରରେ ଗୀତ ସମାପ୍ତ ହୁଏ, ସେ ସ୍ୱରର ନାମ ନ୍ୟାସ ।

### (୬) ଅପନ୍ୟାସଃ

ଅବାନ୍ତର ସମାପ୍ତିଂ ଯୋ ରାଗସ୍ୟ ବିତନୋତି ସଃ ।
ଅପନ୍ୟାସଃ ସ ସ୍ମୃତୋଽନ୍ୟସ୍ତ୍ୱାତ୍ୟନ୍ତିକ ସମାପ୍ତିକୃଦ୍ ।
ଇତି ଭେଦା ଭବେନ୍ନ୍ୟାସାପନ୍ୟାସସ୍ୱରୟୋର୍ଦ୍ୱୟୋଃ ॥ ୧୮୩ ॥

ଯେ ସ୍ୱର ରାଗର ଅନ୍ୟ ସ୍ଥଳରେ ସମାପ୍ତି ସମ୍ପାଦନ କରେ ତାହାର ନାମ ଅପନ୍ୟାସ । ଅନ୍ୟଟି ସମ୍ପୂର୍ଣ୍ଣ ଗାନର ସମାପ୍ତି ବିଧାନ କରେ । ତହୁଁ ଏଭଳି ନ୍ୟାସ ଓ ଅପନ୍ୟାସର ଭେଦ ଜାଣିବ ।

## (୭-୮) ସନ୍ୟାସ-ବିନ୍ୟାସଃ

**ସନ୍ୟାସୋ ନାମ ଗୀତାଦ୍ୟଖଣ୍ଡସ୍ୟ ଚ ସମାପ୍ତିକୃତ୍।**
**ଗୀତଖଣ୍ଡସ୍ୟାବସାନେ ତିଷ୍ଠତି ବିନ୍ୟାସ ସ୍ୱରଃ॥ ୧୮୪॥**
**ବିନ୍ୟାସ ଏତୌ ସନ୍ୟାସଃ ବିନ୍ୟାସୌ ଭରତାଦିଭିଃ।**
**ଅନ୍ତର୍ଭୂତାବପନ୍ୟାସ ସ୍ୱରା ଏବେତି କୀର୍ତ୍ତିତମ୍॥ ୧୮୫॥**

ଯେ ସ୍ୱର ଗୀତର ଆଦ୍ୟ ଖଣ୍ଡର ସମାପ୍ତିବିଧାନ କରେ, ତାହାକୁ ସନ୍ୟାସ କହନ୍ତି। ଯେଉଁ ସ୍ୱର ଗୀତଖଣ୍ଡର ଅଂଶର ଶେଷରେ ରହେ, ସେ ସ୍ୱରକୁ ବିନ୍ୟାସ କହନ୍ତି। ଏହି ସନ୍ୟାସ ଓ ବିନ୍ୟାସଦ୍ୱୟ ଭରତାଦି ମୁନିମାନଙ୍କ ମତରେ ଅପନ୍ୟାସ ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି କଥିତ।

## (୯-୧୦) ଅଲଂଘନ-ଲଂଘନମ୍

ଅଲଂଘନଂ ତଦଭ୍ୟାସୋ ବହୁତ୍ୱଂ ଦ୍ୱିବିଧଂ ମତମ୍।
ସ୍ୱରସ୍ୟାସ୍ପର୍ଶନଂ ଯତ୍ତଲ୍ଲଘଂନଂ ପରିକୀର୍ତ୍ତିକମ୍॥ ୧୮୬॥
ସାକଲ୍ୟେନ ସ୍ୱରସ୍ପର୍ଶସ୍ତ୍ୱଲଘନମିତି ସ୍ମୃତମ୍।
ଯଦେକସ୍ୟ ସ୍ୱରସ୍ୟୈବ ନୈରନ୍ତର୍ଯ୍ୟେଣ ବାଥବା॥ ୧୮୭॥
ବ୍ୟବଧାନେ ନ ସ୍ୟାଦ୍ ଭୂୟୋଽପ୍ୟୁଚ୍ଚାରଣଂ ହି ତତ୍।
ଅଭ୍ୟାସ ଇତି ଶଂସନ୍ତି ବହୁତ୍ୱଂ ଦ୍ୱିବିଧଂ ଚ ତଦ୍॥ ୧୮୮॥
ଅଳ୍ପତ୍ୱଂ ଚ ଦ୍ୱିଧା ପ୍ରୋକ୍ତମନଭ୍ୟାସାଚ୍ଚ ଲଂଘନମ୍।
ପୂର୍ବୋକ୍ତାଭ୍ୟାସରାହିତ୍ୟମନଭ୍ୟାସଃ ପ୍ରକୀର୍ତ୍ତିତଃ॥ ୧୮୯॥
ପୂର୍ବୋକ୍ତାଲ୍ଲଘଂନାଭାବେ ଲଂଘନଂ ପରକୀର୍ତ୍ତିତମ୍।
ଲକ୍ଷଣାନାଂ ଦଶୋକ୍ତାନାଂ ନ୍ୟୂନଂ ସ୍ୟାଦ୍‌ଗୌରବଂ ପୁରା।
ଦେଶ୍ୟାମିହ ପୁନସ୍ତେଷାଂ ଦୃଶ୍ୟତେ ପରିଲୋପନମ୍॥ ୧୯୦॥

ଅଲଂଘନ ଓ ତାହାର ଅଭ୍ୟାସ ବହୁତ୍ୱ ଓ ଅଳ୍ପତ୍ୱ ଭେଦରେ ଦ୍ୱିବିଧ। ସ୍ୱରକୁ ସ୍ପର୍ଶ ନ କରିବାକୁ ଲଂଘନ କହନ୍ତି। ସମ୍ପୂର୍ଣ୍ଣ ଭାବରେ ସ୍ୱର ସ୍ପର୍ଶକୁ ଅଲଂଘନ କହନ୍ତି। ଏକ ସ୍ୱରର ଲାଗି ଲାଗି ବା ଛାଡ଼ି ଛାଡ଼ି ପୁଣି ପୁଣି ଉଚ୍ଚାରଣ ହୁଏ ତାହାକୁ ଅଭ୍ୟାସ କହନ୍ତି। ସେବହୁ ଦ୍ୱିବିଧ ଅଟେ, ଅଳ୍ପତ୍ୱ ମଧ ଦ୍ୱିବିଧ। ଅଭ୍ୟାସ ନକଲେ ଲଘଂନ ହୁଏ। ପୂର୍ବ କଥିତ ଅଭ୍ୟାସ ନ କରିବାକୁ ଅନଭ୍ୟାସ କୁହାଯାଏ। ପୂର୍ବୋକ୍ତ ଅଲଘଂନର ଅଭାବକୁ ଲଘଂନ କୁହାଯାଏ। ଉକ୍ତ ଦଶ ଲକ୍ଷଣମାନଙ୍କର ପୂର୍ବକାଳରେ ନିଶ୍ଚିତ ଭାବରେ ମର୍ଯ୍ୟାଦା ଥିଲା- ବର୍ତ୍ତମାନ ଦେଶୀ ସଂଗୀତରେ ସେମାନଙ୍କର ଲୋପ ଦେଖାଯାଏ।

### ଉତ୍କଳୀୟମତେ ଗ୍ରହନ୍ୟାସଃ

ଗୀତଂ ପ୍ରାରଭ୍ୟତେ ଯେନ ସ ସ୍ୱରୋ ଗ୍ରହ ଇରିତଃ।
ଗୀତସମାପ୍ତିକୃନ୍ନ୍ୟାସୋ ବର୍ଣ୍ଣ୍ୟତେ ଚାଂଶକୋଽଧୁନା ।। ୧୯୧ ।।
ବହୁଶୋ ଗୀୟତେ ଯେନ ସ୍ୱରେଣାଂଶଃ ସ କଥ୍ୟତେ।
ଅଂଶସ୍ୱରସ୍ତୁ ସାବେଵ ଜୀବସ୍ୱର ଇତି ସ୍ମୃତଃ ।। ୧୯୨ ।।
ମଧକାଳୀନଗ୍ରନ୍ଥେଷୁ ଗ୍ରହାଂଶନ୍ୟାସସଂଯୁତମ୍।
ଯଦ୍ରାଗଲକ୍ଷଣଂ ଖ୍ୟାତଂ ନ ତଦଦ୍ୟାଦ୍ର ଲକ୍ଷ୍ୟତେ ।। ୧୯୩ ।।
ଅଧୁନା ଲକ୍ଷ୍ୟମାର୍ଗେ ତୁ ମେଳଜାତ୍ୟାଦିସାଧନୈଃ।
ତଥା ବାଦୀସ୍ୱରେଣୈବ ସର୍ବେ ରାଗାଃ ସୁବର୍ଣ୍ଣିତାଃ ।। ୧୯୪ ।।
ପ୍ରତ୍ୟେକସ୍ମିଂସ୍ତୁ ରାଗେଽତ୍ର ବାଦୀହ୍ୟତି ମହତ୍ୱବାନ୍।
ନିର୍ଣ୍ଣାୟକୋ ରାଗନାମ୍ନଃ ସମୟସ୍ୟ ପ୍ରସୂଚକଃ ।। ୧୯୫ ।।
ବିଦଗ୍‌ଧା ଗାୟକା ଗୀତେ ପ୍ରାୟୋ ବିବାଦିନଂ ସ୍ୱରମ୍।
ଈଷଦ୍‌ସ୍ପର୍ଶ ପ୍ରୟୋଗେଣ ଦର୍ଶୟନ୍ତି ସ ପାଟବମ୍ ।। ୧୯୬ ।।

ବିବାଦିନଂ ସ୍ୱରଂ ପ୍ରାୟୋ ଯୋଜୟନ୍ତ୍ୟବରୋହଣେ ।
ନ ତନ୍ମାତ୍ରେଽତି ଦୋଷାର୍ହମିତ୍ୟୂଚୁର୍ଲକ୍ଷବେଦିନଃ ॥୧୯୭॥
ସୁପ୍ରମାଣଯୁତୋ ମନ୍ୟେ ବିବାଦ୍ୟପି ସୁରକ୍ତିଦଃ ।
ଯଥେଷତ୍ କୃଷ୍ଣବର୍ଣ୍ଣେନ ଶୁଭ୍ରସ୍ୟାତିବିଚିତ୍ରତା ॥ ୧୯୮ ॥

ଯେଉଁ ସ୍ୱରରେ ଗୀତର ଆରମ୍ଭ ହୁଏ, ସେହି ସ୍ୱରକୁ ଗ୍ରହ କହନ୍ତି । ଯେଉଁ ସ୍ୱର ଗୀତ ସମାପ୍ତି କରେ, ତାହକୁ ନ୍ୟାସ କହନ୍ତି । ଯେଉଁ ସ୍ୱରରେ ଗୀତ ବହୁବାର ଗାନ କରାଯାଏ, ତାହାକୁ ଅଂଶ ସ୍ୱର କହନ୍ତି । ଏହି ଅଂଶ ସ୍ୱରକୁ ମଧ୍ୟ ଜୀବସ୍ୱର କହନ୍ତି । ମଧ୍ୟକାଳୀନ ଗ୍ରନ୍ଥମାନଙ୍କରେ ଗ୍ରହ, ଅଂଶ ଓ ନ୍ୟାସ ସଂଯୁକ୍ତ ଯେଉଁ ରାଗ ଲକ୍ଷଣ କଥିତ, ତାହା ଆଜିକାଲି ଦେଖାଯାଉ ନାହିଁ । ଆଜିକାଲି କିନ୍ତୁ ଲକ୍ଷ୍ୟ-ମାର୍ଗରେ ମେଳ-ଜାତି ପ୍ରଭୃତି ସାଧନଦ୍ୱାରା ଓ ବାଦୀସ୍ୱର ଦ୍ୱାରା କେବଳ ସବୁ ରାଗ ଭଲରକମ ବର୍ଣ୍ଣିତ ହୋଇଅଛି । ଏ କ୍ଷେତ୍ରରେ ପ୍ରତ୍ୟେକ ରାଗରେ କିନ୍ତୁ ବାଦୀର ଅତି ଗୁରୁତ୍ୱ ଅଛି । ଗୀତରେ ରାଗର ନାମ ନିର୍ଣ୍ଣିତ ହେଉଛି ଓ ସମୟ ମଧ୍ୟ ସୂଚିତ ହେଉଛି । ପ୍ରବୀଣ ଗାୟକଗଣ ଗୀତରେ ପ୍ରାୟ ବିବାଦୀସ୍ୱରକୁ ପ୍ରୟୋଗରେ ଈଷଦ୍ ସ୍ପର୍ଶ କରି ନିଜ ନିଜର ପଟୁତା ଦର୍ଶାଉଅଛନ୍ତି । ଅବରୋହରେ ପ୍ରାୟ ବାଦୀସ୍ୱରକୁ ପ୍ରୟୋଗ କରନ୍ତି । ଲକ୍ଷ୍ୟବିତ୍ ସଙ୍ଗୀତଜ୍ଞମାନେ ଶାସ୍ତ୍ରରେ ଅତିଦୋଷରେ ଗଣନା ନୁହେଁ ବୋଲି କହନ୍ତି । ଏହା ସୁପ୍ରମାଣଯୁକ୍ତ ରୂପେ ଗଣା ହୁଏ । ବିବାଦୀ ମଧ୍ୟ ଅତି ରଞ୍ଜନକାରୀ ହୁଏ, ଯେପରି କଳାରଙ୍ଗ ଧଳା ପଦାର୍ଥର ଅତି ବିଚିତ୍ରତା ସମ୍ପାଦନା କରେ ।

# ।। ଅଲଙ୍କାରପ୍ରକରଣମ୍ ।।

## ବର୍ଣାଲଂକାରାଃ

ଗାନକ୍ରିୟୋଚ୍ୟତେ ବର୍ଣଃ ସ ଚତୁର୍ଧା ନିରୂପିତଃ ।
ସ୍ଥାଯ୍ୟାରୋହାବରୋହୀ ଚ ସଂଚାରୀତ୍ୟଥଲକ୍ଷଣମ୍ ।। ୧ ।।
ସ୍ଥିତ୍ୱା ସ୍ଥିତ୍ୱା ପ୍ରୟୋଗଃ ସ୍ୟାଦେବସ୍ୟୈବ ସ୍ୱରସ୍ୟ ଯଃ ।
ସ୍ଥାୟୀ ବର୍ଣଃ ସ ବିଜ୍ଞେୟୋ ପରାବନ୍ୱର୍ଥନାମକୌ ।। ୨ ।।
ଏତତ୍ସଂମିଶ୍ରଣାଦ୍ ବର୍ଣଃ ସଂଚାରୀ ପରିକୀର୍ତ୍ତିତଃ ।
ନହି ବର୍ଣାଦ୍ୱିନା ଗାନଂ କର୍ତ୍ତୁଂ କେନାପି ଶକ୍ୟତେ ।। ୩ ।।

ଗାନକ୍ରିୟା କୁହାଯାଉଅଛି । ବର୍ଣ ଚାରିପ୍ରକାର ବୋଲି ନିରୂପିତ, ସ୍ଥାୟୀ, ଆରୋହୀ, ଅବରୋହୀ ଓ ସଂଚାରୀ । ବର୍ତ୍ତମାନ ଲକ୍ଷଣ କୁହାଯାଉଅଛି । ରହି ରହି କେବଳ ଏକ ସ୍ୱର ଯେ ପ୍ରୟୋଗ ହୁଏ, ସେ ବର୍ଣ ସ୍ଥାୟୀ ବୋଲି ଜାଣିବ । ଆରୋହୀ ଅବରୋହୀର ନାମ ଅନୁସାରେ କରିବାକୁ ହୁଏ । ଏସବୁର ମିଶ୍ରଣରେ ବର୍ଣକୁ ସଂଚାରୀ କହନ୍ତି । ବର୍ଣ ବିନା କେହି ଗାନ କରି ପାରନ୍ତି ନାହିଁ ।

## ବର୍ଣଶବ୍ଦବ୍ୟୁତ୍ପତ୍ତିଃ

ନନୁ ବର୍ଣଶବ୍ଦେନ କିମୁଚ୍ୟତେ, ବର୍ଣ ଶବ୍ଦେନ ଗାନମଭିଧୀୟତେ । ଗାନକ୍ରିୟାୟା ବର୍ଣତ୍ୱଂ ସ୍ୱରପଦାଦେଃ ବର୍ଣନାଦ୍ ବିସ୍ତାରକରଣାଦ୍ । ଏକସ୍ୟୈବେତି ତତ୍ରାଦୌ ସାସାସା ରିରିରି ଏବମାଦି ପ୍ରୟୋଗଃ । ଦ୍ୱିତୀୟ ସାରି ମାମା ଇତ୍ୟେବମାଦିରୂପଃ । ପାବନ୍ୱର୍ଥ-ନାମକୌ । ପରାବାରୋହ୍ୟାବରୋହିଣୌବନ୍ୱର୍ଥନାମକୌ । ସରିଗମ ପଧନି ଇତ୍ୟାରୋହାଦାରୋହୀ । ନିଧପମଗରି ସେତେବରୋହାବରୋହୀତ୍ୟେବମ୍ ଏତତ୍ସଂମିଶ୍ରଣାଦ୍ ଏତେଷାଂ ସ୍ଥାୟ୍ୟାଦୀନାଂ ତ୍ରୟାଣାଂ ବର୍ଣନାଂ ସାରି ସାରି ଗା ସା ନିଧ ସରିଗ ଇତ୍ୟେବଂ ଯଥାଯୋଗଂ ମିଶ୍ରଣାଦ୍ ସଞ୍ଚାରୀ ବର୍ଣଃ ପରିକୀର୍ତ୍ତିତଃ । ଯତ୍ର

**ଗାନ କ୍ରିୟାୟାଂ ଯସ୍ୟ ବର୍ଣ୍ଣସ୍ୟ ବାହୁଲ୍ୟଂ ଦୃଶ୍ୟତେ ତତ୍ର ତେନ ବ୍ୟବଦେଶଃ କର୍ତ୍ତବ୍ୟ ଇତି ମନ୍ତବ୍ୟମ୍।**

**ସଞ୍ଚାରୀ ସ ତୁ ବିଜ୍ଞେୟଃ ସ୍ଥାଯ୍ୟାରୋହବିମିଶ୍ରିତଃ।**
**ଯତ୍ର ରାଗସ୍ୟ ବିଶ୍ରାନ୍ତିଃ ସମାପ୍ତ ଦ୍ୟୋତକୋ ହି ସଃ ॥୪॥**

ଆଚ୍ଛା, ବର୍ଣ୍ଣ ଶବ୍ଦରେ କଣ କୁହାଯାଏ। ବର୍ଣ୍ଣ ଶବ୍ଦଦ୍ୱାରା ଗାନ କଥିତ ହୁଏ। ଗାନ କ୍ରିୟାର ସ୍ୱର ପଦାଦିର ବର୍ଣ୍ଣନରୁ ଓ ବିସ୍ତାର କରଣରୁ ବର୍ଣ୍ଣତ୍ୱ ହୁଏ। ସେଥିରେ ପ୍ରଥମତଃ ଗୋଟିଏ ମାତ୍ର ବର୍ଣ୍ଣର, ଯଥା ସା, ସା, ସା, ବା ଗି, ଗି, ଗିଗ ପ୍ରୟୋଗ। ଦ୍ୱିତୀୟତଃ ସାରିଗାମା ପ୍ରଭୃତି ଆଦିରୂପ ପ୍ରୟୋଗ। ଆରୋହୀ, ଅବରୋହୀକୁ ନିଜ ନାମର ଅର୍ଥ ଅନୁସାରେ ଚଢ଼ିବା ଉତୁରିବା, ଯଥା-ସାରିଗା ମାପାଧାନି ଓ ନିଧାପାମା ଗାରିସା ଏପରି ଆରୋହୀ-ଅବରୋହୀ ଜାଣିବ। ଏହାଙ୍କର ମିଶ୍ରଣରେ, ଅର୍ଥାତ୍ ସ୍ଥାୟୀ ଆଦି ତିନ ବର୍ଣ୍ଣର, ସାରି, ସାରିଗା, ସାନିଧା, ସାରିଗ ଏହିଭଳି ଯେ ରୂପ ମିଶ୍ରଣରୁ ସଂଚାରୀ ବର୍ଣ୍ଣ କଥିତ, ଯେଉଁ ଗାନ କ୍ରିୟାରେ ଯେଉଁ ବର୍ଣ୍ଣର ବାହୁଲ୍ୟ ଦେଖାଯାଏ, ସେଠାରେ ସେହିନାମ କରାଯିବ। ସଂଚାରୀ ଜାଣିବ ଯେଉଁଠାରେ ସ୍ଥାୟୀ ଓ ଆରୋହୀ ମିଶିଥିବ, ଯେଉଁଠାରେ ରାଗର ବିଶ୍ରାମ ତାହାକୁ ସମାପ୍ତି କହନ୍ତି।

### ଅଳଙ୍କାରଲକ୍ଷଣମ୍

**ବିଶିଷ୍ଟବର୍ଣ୍ଣସଂଦର୍ଭମଳଂକାରଂ ପ୍ରଚକ୍ଷତେ।**
**ତସ୍ୟ ଭେଦା ବହୁତରା ଯୋଜନୀୟା ବିଚକ୍ଷଣୈଃ ॥୫॥**

ବିଶିଷ୍ଟ ବର୍ଣ୍ଣମାନଙ୍କର ଯୋଜନାକୁ ଅଳଂକାର କହନ୍ତି। ତାହାର ବହୁତ ଭେଦ; ଏହାର ସଂଗୀତ ପଣ୍ଡିତଙ୍କଦ୍ୱାରା ଯୋଜନା ହୁଏ।

**ସ୍ଥାୟୀଲକ୍ଷଣମ୍**

**ଯେଷାମାଦ୍ୟନ୍ତୟୋରେକଃ ସ୍ୱରସ୍ତେ ସ୍ଥାୟିବର୍ଣ୍ଣଗାଃ।**

ଯେଉଁମାନଙ୍କର ଆଦି ଓ ଶେଷରେ ଏକ ସ୍ୱର ଥାଏ, ସେସବୁ ସ୍ଥାୟୀ ବର୍ଣ୍ଣଗତ ବୋଲି ଜାଣିବ।

**ଅଳଂକାରନାମାନି**

**ଭଦ୍ରୋ, ନନ୍ଦଶ୍ଚ, ବିସ୍ତୀର୍ଣ୍ଣୋ ନିଷ୍କର୍ଷାଭ୍ୟୁଚ୍ଛୟୋ ତଥା ॥ ୬ ॥**
**ତ୍ରିବର୍ଣ୍ଣୋ ହସିତୋ ଗାତ୍ରବର୍ଣ୍ଣ ଆକ୍ଷିପ୍ତପ୍ରେଙ୍ଖିତୌ ॥ ୭ ॥**
**ପ୍ରସ୍ତରାକ୍ଷେପକ ପ୍ରେଙ୍ଖ୍ୟଃ ଶ୍ୟେନହୁଂକାର କୋକିଳଃ।**
**ସଦାନନ୍ଦୋ ମହାବଜ୍ରୋ ଜବଶଂଖଶ୍ଚ ବିଂଶତିଃ ॥ ୮ ॥**
**ଅଳଂକାରଂ ବିନା ରାଗା ବିସ୍ତାରଂ ନାପ୍ନୁବନ୍ତି ହି।**
**ଏତୈଃ କୃତ୍ୱା ପ୍ରଗାତୃଣାଂ ସ୍ୱରତାଳପ୍ରବୀଣତା ॥ ୯ ॥**
**ଶଶିନା ରହିତେବନିଶା, ନିର୍ଜଳେନ ନଦୀ, ଲତା ବିପୁଷ୍ପେବ।**
**ଅବିଭୂଷିତେବ କାନ୍ତା ଗୀତିରଳଙ୍କାରହୀନା ସ୍ୟାତ୍ ॥ ୧୦ ॥**

ଭଦ୍ର, ନନ୍ଦ, ବିସ୍ତୀର୍ଣ୍ଣ, ନିଷ୍କର୍ଷ, ଅଭ୍ୟୁଚ୍ଛୟ, ତ୍ରିବର୍ଣ୍ଣ, ହସିତ, ଗାତ୍ରବର୍ଣ୍ଣ, ଆକ୍ଷିପ୍ତ, ପ୍ରେଂକ୍ଷିତ, ପ୍ରସ୍ତାର, ଆକ୍ଷେପକ, ପ୍ରେଙ୍ଖ୍ୟଃ, ଶ୍ୟେନ, ହୁଂକାର, କୋକିଳଃ, ସଦାନନ୍ଦ, ମହାବଜ୍ର, ଜବ, ଶଙ୍ଖ, ଏରୂପ କୋଡିଏ ଅଳଂକାରମାନଙ୍କର ନାମ। ଅଳଂକାର ନଥିଲେ ରାଗ ବିସ୍ତାର ହୁଏ ନାହିଁ, ଏହା ସବୁ କଲେ ଗାୟକମାନଙ୍କର ସ୍ୱର ତାଳର ପାଣ୍ଡିତ୍ୟ ଜଣାଯାଏ। ଚନ୍ଦ୍ରହୀନ ରାତ୍ର, ଜଳହୀନ ନଦୀ, ପୁଷ୍ପହୀନ ଲତା, ଭୂଷଣହୀନା ସ୍ତ୍ରୀ ପରି ଅଳଂକାରହୀନ ଗୀତ ଅଟେ।

## ବିସ୍ତୀର୍ଣମ୍

ମୂର୍ଚ୍ଛନାଦେଃ ସ୍ୱରାଦ୍ୟତ୍ର କ୍ରମେଣାଽଽରୋହଣଂ ଭବେତ୍ ।
ସ୍ଥିତ୍ୱା ସ୍ଥିତ୍ୱା ସ୍ୱରୈ ଦୀର୍ଘୈଃ ସ ବିସ୍ତୀର୍ଣୋବିଧୀୟତେ ।। ୧୦ ।।
(ସଂ:ପା:୨୩୫ ଶ୍ଳୋକ ସଂ:ର:ଅ:)

ମୂର୍ଚ୍ଛନାରେ ଆଦି ସ୍ୱରରୁ ଯେଉଁଠାରେ ରହି ରହି ଦୀର୍ଘ ସ୍ୱରରେ କ୍ରମରେ ଆରୋହଣ କରାହୁଏ ତାହାକୁ ବିସ୍ତୀର୍ଣ ଅଳଂକାର କହନ୍ତି ।

ଯଥା:-ସ-ର-ଗ-ମ-ପ-ଧ-ନ-ସ

## ନିଷର୍ଷଃ

ହ୍ରସ୍ୱୈଃ ସ୍ୱରୈଃ ସ ନିଷର୍ଷୋଦ୍ୱିଦ୍ୱିରୁକ୍ତୈ ର୍ନିରନ୍ତରୈଃ ।
(ସଂ.ପ.ଅଳଂକାର-୨ ସଂ.ର-ଅଳଂକାର-୨)

ଯେବେ ଲାଗି ଲାଗି କରି ହ୍ରସ୍ୱସ୍ୱରମାନେ ଦୁଇ ଦୁଇଟି ହୋଇ ବୋଲା ଯାନ୍ତି । ତାହା ନିଷର୍ଷ ହୁଅନ୍ତି ।

ଯଥା:-ସସ ରର ଗଗ ମମ ପପ ଧଧ ନନ ସସ

## ଅଭ୍ୟୁଚ୍ଚୟଃ

ଏକାନ୍ତରସ୍ୱରାରୋହମାହୁ ରଭ୍ୟୁଚ୍ଚୟଂ ବୁଧାଃ ।। ୧୨ ।।
(ସଂ.ପା ୨୩୮ ଶ୍ଳୋ)

ନିଜ ପାଖ ସ୍ୱରକୁ ଛାଡି ଯଦି ଆରୋହ କ୍ରମରେ ବୋଲାଯାଏ ପଣ୍ଡିତମାନେ ତାହାକୁ ଅଭ୍ୟୁଚ୍ଚୟ କହନ୍ତି ।

ଯଥା:-ସ ଗ ମ ପନ । ରି ମ ଧ ସ ।

ଏଠାରେ ସ-ପଗ-ରି ଓ ଗ-ପଗ-ମ- ଓ -ପ-ପଖ-ଧ-ଛଡ଼ା ହୋଇଅଛି ।

## ଗାତ୍ରବର୍ଣ୍ଣମ୍

ତ୍ରିଷ୍ଚତୁର୍ବା ସ୍ୱରୋଚ୍ଚାରୋ ଗାତ୍ରବର୍ଣ୍ଣମିମଂ ବିଦୁଃ ।
ନିଷ୍କର୍ଷସ୍ୟୈବ ଦ୍ୱୌ ଭେଦୌ କେଚିଦେତୌ ବଭାଷିରେ ।। ୧୩ ।।
(ସଂ.ପା.ଶ୍ଳୋ ୨୩୬ ଓ ସଂ.ର)

ଗୋଟିଏ ସ୍ୱରକୁ ତିନିବାର ବା ଚାରିବାର ସଙ୍ଗେ ସଙ୍ଗେ ଗାଇବାକୁ ପଣ୍ଡିତମାନେ ଗାତ୍ରବର୍ଣ୍ଣ କହନ୍ତି । ନିଷ୍କର୍ଷରେ ଏହା ଦୁଇଟି ଭେଦ ବୋଲି କେହି କେହି କହିଅଛନ୍ତି ।

ଯଥାଃ-ସସସ ରରର ଗଗଗ ମମମ ପପପ ଧଧଧ ନନନ ସସସ

ଯଥାଃ-ସସସସ ରରରର ଗଗଗଗ ମମମମ ପପପପ ଧଧଧଧ ନନନନ ସସସସ

## ପ୍ରେଂଖିତଃ

ସ୍ୱରଦ୍ୱୟଂ ସମୁଚ୍ଚାର୍ଯ୍ୟ ପୂର୍ବପୂର୍ବଯୁତଂ ପରମ୍ ।
ଯଦାନ୍ଦୋଳିତମାରୋହେ ପ୍ରେଂଖିତସ୍ୟ କ୍ରମଂ ଇଗୁଃ ।। ୧୪ ।।
(ସଂ.ପା. ଶ୍ଳୋ ୨୪୦ ଓ ସଂ.ର.)

ଦୁଇଟି ସ୍ୱର ଉଚ୍ଚାରଣ କରି ପୂର୍ବ ପୂର୍ବ ସ୍ୱର ପର ପର ସ୍ୱରରେ ଯୁକ୍ତ ହେଲେ ଓ ଆରୋହରେ ଦୋଳାପରି ହେଲେ ତାହାକୁ ପ୍ରେଂଖିତ କ୍ରମ ବୋଲି କହନ୍ତି ।

ଯଥାଃ-ସର ରଗ ଗମ ମପ ପଧ ଧନ ନସ

## ଭଦ୍ରଃ

**ଯମାରଭ୍ୟାଗ୍ରିମଂ ଗତ୍ୱା ପୁନଃ ପୂର୍ବସ୍ୱରଂ ବଦେତ୍ ।**
**ଭଦ୍ର-ସଂଜ୍ଞମଳଙ୍କାରମାଜ୍ଞନେୟୋଽବଦତ୍ ସୁଧୀ ।**
**ଏକୈକସ୍ୟ ସ୍ୱରସ୍ୟାତ୍ର ହୀନାଦେବ କ୍ରମୋ ଭବେତ୍ ॥ ୧୫ ॥**

( ସଂ.ପା. ଶ୍ଳୋ ୨୨୭)

ଯେଉଁ ଏକ ସ୍ୱରକୁ ଆରମ୍ଭ କରି ତାହାର ପର ସ୍ୱରକୁ ଯାଇ ପୁଣି ପୂର୍ବ ସ୍ୱରକୁ କହିଲେ ଭଦ୍ରନାମକ ଅଳଙ୍କାର ହୁଏ ବୋଲି ପଣ୍ଡିତମାନେ କହିଅଛନ୍ତି । ଏଥିରେ ଗୋଟିଏ ଗୋଟିଏ ସ୍ୱର ବାଦରେ ମଧ କ୍ରମ ହୁଏ ।

ଯଥାଃ-ସରସ ରଗର ଗମଗ ମପମ ପଧପ ଧନଧ ନସନ ସନସ ଏହିପରି ଅବରୋହ ମଧ ହୁଏ ।

ଯଥା-ସନସ ନଧନ ଧପଧ ପମପ ମଗମ ଗରଗ ରିସରି ସନସ

## ନନ୍ଦଃ

**ନନ୍ଦଃ ସାନ୍ଦ୍ରପକେଣାତ୍ର ସ୍ୱର-ଦ୍ୱନ୍ଦ୍ୱେନ ପୂର୍ବବତ୍ ।**

(ସଂ.ପା ଶ୍ଳୋ-୨୨୮)

ଏହି ଅଳଂକାର-ପ୍ରକରଣରେ ରୂପକ ତାଳରେ ଦୁଇଟି ସମସ୍ୱର ପୂର୍ବପରି ଗୀତ ହେଲ ନନ୍ଦ ହୁଏ ।

ଯଥାଃ- ସସ ରିରି ସସ, ରିରି ଗଗ ରିରି, ଗଗ ମମ ଗଗ, ମମ ପପ ମମ, ପପ ଧଧ ପପ, ଧଡ଼ ନିନି ଧଧ, ନିନି ସସ ନନ, ସସ ନିନି ସସ ଏହି ଅନୁକ୍ରମେ ଅବରୋହ ହେବ ।

### ଆକ୍ଷେପଃ

କ୍ରମାତ୍ ସ୍ୱରତ୍ରୟଂ ଯତ୍ର ଜଗୁରାକ୍ଷେପକଂ ବୁଧାଃ॥ ୧୬॥

(ସଂ.ପା. ଶ୍ଳୋ୨୬୨)

ତ୍ରିସ୍ୱରାଖ୍ୟେ କ୍ଳାପୂର୍ବ ପୂର୍ବତ୍ୟାଗୋର୍ଦ୍ଧ୍ୱସଂକ୍ରମୈଃ।

(ସଂ.ର)

କ୍ରମରେ ସ୍ୱରତିନୋଟି ଯେଉଁଠି ଗୀତ ହୁଏ, ତାହାକୁ ପଣ୍ଡିମାନେ ଆକ୍ଷେପ କହନ୍ତି।

ଯଥା- ସରଗ, ରଗମ, ଗମପ, ମପଧ, ପଧନ, ଧନସ।

### ସଦାନନ୍ଦଃ

ସ-ରି-ଗ-ମୈଃ ସଦାନନ୍ଦୋ ଲଘୁତାଲେନ ଶୋଭିତଃ ॥୧୭॥

(ସଂ.ପା.ଶ୍ଳୋକ-୨୯୬)

"ସରିଗମ" ଏହିପରି ଚାରିସ୍ୱର-ପ୍ରୟୋଗ ଦ୍ୱାରା ସଦାନନ୍ଦ ନାମକ ଅଳଂକାର ହୁଏ; ପୁଣି ଏହା ଲଘୁତାଳ ଦ୍ୱାରା ଶୋଭାପାଏ। ଲଘୁତାଳର ଅନ୍ୟ ନାମ ରାସତାଳ ଅଟେ। ଏହା ଚାରିମାତ୍ରାର ତାଳ।

ଯଥା-ସରଗମ, ରଗମପ, ଗମପଧ, ମପଧନ, ପଧନସ।

### ଆକ୍ଷିପ୍ତଃ

ଏକାନ୍ତରସ୍ୱରଦ୍ୱନ୍ଦ୍ୱଂ ତ୍ୟକ୍ତଂ ପୂର୍ବଯୁତଂ ପରମ୍।

ଦ୍ରମାଦାରୋହଣଂ ଯତ୍ର ତଦାକ୍ଷିପ୍ତଂ ପ୍ରଚକ୍ଷତେ॥ ୧୮ ॥

(ସଂ.ପା.ଶ୍ଳୋ-୨୪୨ ଓ ସଂ.ର.)

ଦୁଇଟି ସମସ୍ୱର ମଝିରେ ଗୋଟିଏ ଗୋଟିଏ ସ୍ୱରକୁ ଛାଡ଼ି ଆରୋହ-ଅବରୋହରେ ଯଦି ବୋଲାଯାଏ ତେବେ ଆକ୍ଷିପ୍ତ ଅଳଙ୍କାର ହୁଏ।

ଯଥା-ସସଗଗ, ରିରିମମ, ଗଗପପ, ମମଧଧ, ପପନିନି, ଧଧସସ

**ପ୍ରସ୍ତାରଃ**

ତ୍ୟକ୍ତାତରଂ ସ୍ୱରଦ୍ୱନ୍ଦ୍ୱଂ ତ୍ୟକ୍ତା ଦାରଭ୍ୟତେ ପୁନଃ।
ଯୁଗଂ ତାଦୃକ୍ ସମାରୋହେ ତଦା ପ୍ରସ୍ତାର ଉଚ୍ୟତେ ॥ ୧୯ ॥

(ସଂ.ପା.ଶ୍ଳୋ ୨୫୭ ଓ ସଂ.ର

ମଝିର ଦୁଇଟି ସ୍ୱରକୁ ଛାଡ଼ି ଦୁଇଗୋଟି ସ୍ୱର ଯଦି ଆରୋହ ଓ ଅବରୋହ କ୍ରମରେ ବୋଲାଯାଏ, ପ୍ରସ୍ତାର ଅଳଂକାର ହୁଏ।

ଯଥା-ସମ, ରିପ, ଗଧ, ମନି, ଧସ
ସଧ, ନିମ, ଧଗ, ଓରି, ମସ।

**ପ୍ରେଙ୍ଖ୍ୟଃ**

ଦ୍ୱିଦ୍ୱ୍ୟନ୍ତରେ ସ୍ୱରଦ୍ୱନ୍ଦ୍ୱେ ତ୍ୟକ୍ତାଦାରମ୍ଭ ଈଦୃଶଃ।
କ୍ରମାଦେକୈକହାନାଚ ପ୍ରେଙ୍ଖ୍ୟଃ ଉକ୍ତୋ ମନୀଷିଭିଃ ॥ ୨୦ ॥

(ସଂ.ପା.ଶ୍ଳୋ ୨୬୭)

ଦୁଇଟି ସ୍ୱର ଛାଡ଼ି ସମସ୍ୱରଦୁଇଟିକୁ ପ୍ରୟୋଗ କରି ଆରୋହ ଓ ଅବରୋହ କ୍ରମରେ ଗାଇଲେ ପ୍ରେଙ୍ଖ୍ୟଃ ଅଳଙ୍କାର ହୁଏ।

ଯଥା-ସସ ମମ ରିରି ପପ ଗଗଧଧ ମମନିନି ପପସସ
ସସପପ ନିନିମମ ଧଧଗଗ ପପରିରି ମମସସ।

**ହୁଁକୃତିଃ**

ଦ୍ୱାଭ୍ୟାଂ ଦ୍ୱାଭ୍ୟାଂ ସ୍ୱରାଭ୍ୟାଂ ଯଃ ସନ୍ୟାଦିଭ୍ୟାଂ ସ ହୁଂକୃତିଃ।

ଦୁଇ ଦୁଇ ଗୋଟି ସମସ୍ୱର ଓ ତାହାର ସଂବାଦୀର ଦୁଇ ଦୁଇ ସମସ୍ୱରକୁ ନେଇ ଯେତେବେଳେ ଗତି କରେ ତାହାକୁ ହୁଁ କୃତି ଅଳଙ୍କାର କହନ୍ତି।

ଯଥା-ସସପପ ରରଧଧ ଗଗନନ ମମସସ।

ଷଡ୍ଗଃ

ଦୀର୍ଘାତ୍ୟସ୍ୟ ଦ୍ୱିରାବୃତ୍ତିରୁପାନ୍ତ୍ୟେ ତଦଧଃ ସ୍ୱରୌ।
ଯତ୍ରେତି ସ୍ୱରସଂବନ୍ଧଃ ଷଡ୍ଗୋ ଜ୍ଞେୟୋ ମନୀଷିଭିଃ।। ୨୧ ।।

ସଂ.ପା-ଶ୍ଳୋ ୨୯୧

ଅନ୍ୟ ସ୍ୱର ଅର୍ଥାତ୍ ତାରାସାକୁ ଦୁଇଥର କହି ତାହା ସହିତ ଉପାନ୍ତ୍ୟ (ତାରା ସାର ପୂର୍ବସ୍ୱର) ଦୁଇ ସ୍ୱର (ଅର୍ଥାତ୍ ନିଧ) ଯୋଗ କରି କ୍ରମଶଃ ଅବରୋହରେ ଗାଇଲେ ଷଡ୍ଗ ଅଳଙ୍କାର ହୁଏ ବୋଲି ପଣ୍ଡିତମାନେ କହନ୍ତି।

ଯଥା-ସସନଧ, ନନଧପ, ଧଧପମ, ପପମଗ, ମମଗର, ଗଗରସ।

ତ୍ରିବର୍ଣ୍ଣଃ

ତୃତୀୟସ୍ୟ ତ୍ରିରାବୃତ୍ତୌ ତ୍ରିବର୍ଣ୍ଣଂ ବର୍ଣ୍ଣୟନ୍ତ୍ୟମୁମ୍।

(ସଂ.ପା. ୧୧ ଅଳଙ୍କାର)

ପ୍ରତ୍ୟେକ ସ୍ୱରର ତୃତୀୟ ସ୍ୱରକୁ ତିନିବାର ଓ ସେହି ତୃତୀୟ ସ୍ୱରର ପୂର୍ବ ଓ ତାର ପୂର୍ବକୁ ଏକାଠି କରି କ୍ରମରେ ପ୍ରୟୋଗ କରି ଗାଇଲେ ତ୍ରିବର୍ଣ୍ଣାଳଂକାର ହୁଏ।

ଯଥା-ସରିଗଗଗ, ରିଗମମମ, ଗମପପପ, ମପଧଧଧ, ପଧନନନ, ଧନସସସ।

ହସିତ

ଯତ୍ରୈକୈକସ୍ୱରବୃନ୍ଦାଭିରାବୃତ୍ତିଭିରୁଦୀତରିତାଃ
ଆରୁହ୍ୟନ୍ତେ ସ୍ୱରାଃ ପ୍ରାହୁ ହସିତଂ ତଂ ଶିବପ୍ରିୟାଃ।।। ୨୨ ।।

(ସଂ.ପା-ଶ୍ଳୋ ୨୩୯ ଓ ସଂ.ର)

ଯେତେବେଳେ ସ୍ୱରସବୁ ଉତ୍ତରୋତ୍ତର ବଢ଼ିଯାଇ ଗତି କରନ୍ତି, ତାହାକୁ ହସିତାଳଂକାର କହନ୍ତି। ଏହା ଶିବପ୍ରିୟ ଅଟେ।

ଯଥା-ସ, ରିରିଗଗଗ, ମମମମ, ପପପପପ, ଧଧଧଧଧଧ, ନନନନନନନ, ସସସସସସସସ।

### ଶ୍ୟେନଃ

**ଆଦ୍ୟସ୍ୱରଃ କ୍ରମାତ୍ ସର୍ବାନ୍ ସ୍ପୃଶନ୍ନେକୈକମାବ୍ରଜେତ୍।**
**ଅଳଂକାରସ୍ତୁ ଶ୍ୟେନଃ ସ୍ୟାଦନିବଦ୍ଧଃ ସୁଖପ୍ରଦଃ॥ ୨୩॥**

(ସଂ.ପା-ଶ୍ଳୋ ୨୬୯)

ଆଦ୍ୟସ୍ୱର କ୍ରମଶଃ ଯେବେ ଅନ୍ୟସବୁ ସ୍ୱରକୁ ଗୋଟି ଗୋଟି କରି ସ୍ପର୍ଶ କରି ଗତି କରେ, ତେବେ ସେ ଅଳଙ୍କାରକୁ ଶ୍ୟେନ କହନ୍ତି; ତାହା ଅନିବଦ୍ଧ ତଥା ସୁଖପ୍ରଦ।

ଶ୍ୱେନ ଯଥା-ସରି ସଗ ସମ ସପ ସଧ ସନ ସସ।
ରିଗ ରିମ ରିପ ରିଧ ରିନି ରିସ।
ଗମ ଗପ ଗଧ ଗନ ଗସ।
ମପ ମଧ ମନି ମସ।
ପଧ ପନ ପସ।
ଧନ ଧସ।
ନସ।

### ମହାବଜ୍ରଃ

**ସ-ରୀ=ଗ ରୀ ସ-ରୀ ଯତ୍ର ସରୀଗମୀ ତଥୈବ ଚ।**
**ଅଳଂକାରୋ ମହାବଜ୍ରୋ ମଣ୍ଡତାଳେନ ଶୋଭିତଃ॥ ୨୪॥**

(ସ.ପା.-ଶ୍ଳୋ ୨୮୧)

ଯେଉଁଠାରେ ସରୀ ଗରୀ ସରୀ ସରିଗମ- ଏହି ପ୍ରକାରରେ ଯଦି ଆରୋହକ୍ରମରେ ସ୍ୱର ପ୍ରୟୋଗ ହୁଏ, ତେବେ ତାର ନାମ ମହାବକ୍ର ଅଳଂକାର ଅଟେ। ପୁଣି ଏହା ମଣ୍ଠ ତାଳରେ ଶୋଭାପାଏ।

ଯଥା-ସର, ଗର, ସର, ସରଗମ। ରଗ, ମଗ, ରଗ, ରଗମପ। ଗମ, ପମ, ଗମ, ଗମ, ପଧ। ମପ, ଧପ, ମପ, ମପ, ଧନ। ପଧ, ନଧ, ପଧ, ପଧ, ନସ।

କୋକିଳଃ

ସ-ରିଗଶ୍ଚ ସ-ରୀଗୋମ୍ ଇତ୍ୟେତୈଃ କଳିକା ଭବେତ୍।
ତ୍ରିପୁଟାଖ୍ୟେନ ତାଳେନ କଳିତଃ କୋକିଳୋ ଭବେତ୍॥ ୨୫॥

(ସଂ.ପା-ଶ୍ଲୋ ୨୮୪)

ସରିଗ ଓ ସରିଗମ- ଏହି ସ୍ୱରମାନଙ୍କ ଦ୍ୱାରା କଳିକା ହୁଏ। ଏହା ତ୍ରିପୁଟ ତାଳରେ ଧରା ଗଲେ କୋକିଳ ଅଳଂକାର ହୁଏ।

ଯଥା-ସରିଗ ସରିଗମ, ରିଗମ ରିଗମପ, ଗମପ ଗମପଧ, ମପଧ ମପଧନି, ପଧନି ପଧନିସ।

ଜବଃ

କ୍ରମାଦ୍ ସର୍ବାନ୍ ସ୍ୱରାନୁକ୍ତ୍ୱାଽଥାଚ୍ୟାଦେକୈକହାନତଃ।
ଅଳଂକାରୋ ଜବୋ ନାମ ପ୍ରକାଶିତୋ ହନୁମତା॥ ୨୬॥

(ସଂ.ପା ଶ୍ଲୋ ୨୯୦)

କ୍ରମରେ ସର୍ବ ସ୍ୱରକୁ କହି ପରେ କ୍ରମଶଃ ଅନ୍ତ୍ୟ ଗୋଟିଏ ଗୋଟିଏ ସ୍ୱର ଛାଡ଼ି କରି ଗତି କଲେ ଜବ ନାମକ ଅଳଂକାର

ହୁଏ । ଏହାକୁ ହନୁମାନ ପ୍ରକାଶ କରିଅଛନ୍ତି ।

ଯଥା-ସରିଗମପଧନିସ

ନିଧପମଗରିସ ।   ସରିଗମପଧନିଧପମଗସ ।

ସରିଗମପଧପମଗରିସ - ସରିଗମପମଗରିସ । ସରିଗମ ଗରିସ ।

ସରିଗରିସ, ସରିସ, ସରି ।

ଦଶାଳଙ୍କାରାଃ

ବିଶିଷ୍ଟ ବର୍ଣ୍ଣ-ସଂଦର୍ଭମଳଂକାରଂ ପ୍ରଚକ୍ଷତେ ।

ଏକୈକମୂର୍ଚ୍ଛନାୟା ତଦ୍ ପ୍ରକାରବହବୋ ମତାଃ ।। ୨୭ ।।

ଅଳଂକାରାନଳଂକାରାଭିଧାନ୍ ବକ୍ଷ୍ୟେ ସମାସତଃ ।

ଗୀତେ ତାଳେ ଚୋପଯୁକ୍ତାନବାନିହ ଦଶ କ୍ରମାଦ୍ ।। ୨୮ ।।

ସୁବର୍ଣ୍ଣୋ ମୌକ୍ତିକୋ ହୀରଃ କୁଣ୍ଡଳଃ କଂକଣୋଽଗଦଃ ।

ତାଟଂକୋ ନୂପୁରୋ ରତ୍ନହାରେଽଳଂକୃତୟୋ ଦଶ ।। ୨୯ ।।

ବିଶେଷ ବିଶେଷ ବର୍ଣ୍ଣ-ସଂଯୋଗରେ (ଅର୍ଥାତ୍ ସ୍ୱରମାନଙ୍କରେ) ଅଳଙ୍କାର ହୋଇଥାଏ । ଗୋଟିଏ ଗୋଟିଏ ମୂର୍ଚ୍ଛନାରେ ବହୁ ପ୍ରକାର ଅଳଙ୍କାର ହୁଏ । ମୋଟରେ ଅଳଙ୍କାର ନାମଧାରୀ ଅଳଙ୍କାରମାନଙ୍କୁ କହୁଛି । ଗୀତ ଓ ତାଳରେ ପ୍ରଯୁକ୍ତ ହୋଇଥିବା କ୍ରମଶଃ ନୂଆ ଦଶ ଅଳଂକାର । ସୁବର୍ଣ୍ଣ, ମୌକ୍ତିକ, ହୀରା, କୁଣ୍ଡଳ, କଙ୍କଣ, ଅଙ୍ଗଦ, ତାଟଂକ, ନୂପୁର, ରତ୍ନ ଓ ହାର, ଏହି ଦଶଟି ଅଳଙ୍କାର ।

ସ୍ୱର୍ଣ୍ଣାଳଙ୍କାରଃ

ପ୍ରଥମଂ ଚ ଦ୍ୱିତୀୟଂ ଚ ଦ୍ୱିରୁଚାର୍ଯ୍ୟ ତତୋ ଗମୌ ।

ସୁବର୍ଣ୍ଣଂ ଷଟ୍ ସ୍ୱରୋପେତକଳାଭିଃ ପଞ୍ଚଭିର୍ମତଃ ।। ୩୦ ।।

ପ୍ରଥମ ଓ ଦ୍ୱିତୀୟ ସ୍ୱରକୁ କ୍ରମଶଃ ଦୁଇବାର ଉଚ୍ଚାରଣ କରି ତଦ୍‌ପରେ ଗ ଓ ମକୁ ଯୋଗ କରିବ। ଏ ରୂପ ଛ'ଟି ସ୍ୱରରେ ପାଞ୍ଚ ମାତ୍ରାରେ ଗାଇଲେ ସୁବର୍ଣ୍ଣ ଅଳଙ୍କାର ହୁଏ।

ଯଥା-ସସରିରିଗମ, ରିରିଗଗମପ, ଗଗମମପଧ, ମମପପଧନି, ପପଧଧନିସ ଇତ୍ୟାଦି।

### ମୌକ୍ତିକାଳଙ୍କାରଃ

**ସପୌ ରିଧୌ ଗନୀ ଚୈବ ମସା ବିତି ଚତସ୍ତୃଭିଃ।**
**ଦ୍ୱିସ୍ୱରାଭିଃ କଳାଭିଃ ସ୍ୟାଦଳଙ୍କାରସ୍ତୁ ମୌକ୍ତିକଃ ॥ ୩୧ ॥**

ସପ, ରଧ, ଗନି, ମସ- ଏହି ଦୁଇ ଦୁଇ ସ୍ୱର ଚାରିମାତ୍ରାରେ ଶୋଭିତ ହେଲେ ମୌକ୍ତିକ ଅଳଙ୍କାର ହୁଏ।

ଯଥା-ସପ, ରିଧ, ଗନି, ମସ ଏବଂ ସପ, ରିଧ, ଗନି, ମସ।

### ହୀରକାଳାଙ୍କାରଃ

**ସରୀ ସଗୌ ସମୌ ଚୈବ ପୁନରୁକ୍ତୌ ସଗୌ ସମୌ।**
**ଦଶ ସ୍ୱରାଃ କଳାଃ ପଞ୍ଚ ହୀରାଳଙ୍କାର ଉଚ୍ୟତେ ॥ ୩୨ ॥**

ସରୀ ସଗ ସମ ସଗ ସମ ଆଦି ଦଶ ସ୍ୱର ଯେତେବେଳେ ପାଞ୍ଚ କଳା ବା ମାତ୍ରାରେ କ୍ରମଶଃ ଶୋଭାପାଏ, ତାହା ହୀରକ ଅଳଙ୍କାର ହୁଏ।

ଯଥା-ସର ସଗ ସମ ସଗ ସମ, ରିଗ ରିମ ରିପ ରିମ ରିପ, ଗମ ଗପ ଗଧ ଗପ ଗଧ, ମପ ମଧ ମନି ମଧ ମନି, ପଧ ପନି ପସ ପନି ପସ ଇତ୍ୟାଦି।

## କୁଣ୍ଡଳାଳଙ୍କାରଃ

**ସରୀ ଗରୀ ସରୀ ଚୈବ ତତଃ ସରି ଗମଗରୀ ।**
**କୁଣ୍ଡଳାଳଂକୃତୌ ପଞ୍ଚକଳାଃ ସ୍ୟୁ ଦ୍ୱାଦଶ ସ୍ୱରାଃ ।। ୩୩ ।।**

ସରୀ, ଗରୀ, ସରୀ, ସରୀ, ଗମ, ଗରୀ ଦ୍ୱାଦଶ ସ୍ୱର ପାଞ୍ଚ ମାତ୍ରାରେ ଯୋଗିତ ହୋଇ କ୍ରମଶଃ ଗତି କଲେ କୁଣ୍ଡଳାଳଂକାର ହୁଏ ।

ଯଥା-ସରି, ଗରି ସରି ସରିଗ ମଗରି, ରିଗ ମଗ ରିଗ ରିଗମ ପମଗ । ଗମ ପମ ଗମ ଗମପ ଧପମ, ମପ ଧପ ମପ ମପଧ ନିଧପ । ପଧ ନିଧ ପଧ ପଧନି ସନିଧ, ଧନି ସନି ଧନି ଧନିସ ରି ସନି, ନି ରିସା ନିସ ନିସରି ଗରିସ-ଇତ୍ୟାଦି ।

## କଙ୍କଣାଳଙ୍କାରଃ

ସ ଦ୍ୱୟଂ ରି ତ୍ରୟଂ ସୋଽଥ ରିଦ୍ୱୟଂ ସରିଗାସ୍ତଥା ।
ରିଗମା କଙ୍କଣେ। ପଞ୍ଚ କଳାଶ୍ଚତୁର୍ଦ୍ଦଶ ସ୍ୱରାଃ ।। ୩୪ ।।

ଦୁଇଟି ସ ତିନିଟି ର ପୁଣି ସ-ସହ ଦୁଇଟି-ରି ଓ ସରୀଗ ରୀଗମ (ସସ ରିରିରି ସରିଗ, ରିଗମ) ଚଉଦଟି ସ୍ୱର ପାଞ୍ଚମାତ୍ରାରେ କ୍ରମରେ ଏହିପରି ଗାଇଲେ କଙ୍କଣ ଅଳଙ୍କାର ହୁଏ ।

ଯଥା- ସସ ରିରିରି ସରିରି, ସରିଗ ରିଗମ । ରିରି ଗଗଗ ରିଗଗ ରିଗମ, ଗମପ ଗଗ ମମମ ଗମମ ଗମପ ମପଧ । ମମ ପପପ ମପପ ମପଧ ପଧନି ପପ ଧଧଧ ପଧଧ ପଧନି ଧନିସ ଇତ୍ୟାଦି ।

## ଅଙ୍ଗଦଃ

ସରି ସରି ଗରି ସୌରୀ ସୌରୀ ଗୌ ଷୋଡ଼ଶ ସ୍ୱରଃ ।
ଷଟ୍‌କଳା ପ୍ରବନ୍ଦଂତ୍ୟସ୍ମିନ୍ନଳଂକାରୋଽଙ୍ଗଦୋ ବୁଧାଃ ।। ୩୫ ।।

ସରି ସରି ଗରି ସସରିରି ସସରିରି ଗଗ- ଏହି ଷୋଡ଼ଶ ସ୍ୱର ଛଅଟି ମାତ୍ରାରେ (କଳାରେ) ହେଲେ ପଣ୍ଡିତମାନେ ଅଳଙ୍କାରକୁ ଅଙ୍ଗଦ କହନ୍ତି ।

ଯଥା-ସରି ସରି ଗରି ସସ ରିରି ସସ ରିରି ଗଗ ।
ରିଗ ରିଗ ମଗ ରିରିଗଗ ରିରିଗଗ ମମ-ଇତ୍ୟାଦି

## ତାଟଂକଃ

ସଗୌ ରିମୌ ଭରି ଚୈବ ସରି ସଗରିଗାଃ ସମୌ ।
ସମଗରିଗମାଃ ପଞ୍ଚକଳାଃ ସ୍ୟୁ ବିଂଶତି ସ୍ୱରାଃ ।
ଯସ୍ମିନ୍ନସାବଳଙ୍କାରସ୍ତାଟଂକଃ କଥିତୋ ବୁଧୈଃ ।। ୩୬ ।।

ସଗ ରିମ ଗରି ସରି ସଗ ରିଗ ସମ ସମ ଗରିଗମ ପଞ୍ଚମାତ୍ରା (କଳା) ବିଂଶ ସ୍ୱରରେ ତାଟଙ୍କ ଅଳଙ୍କାର ହୁଏ । ଏହା କ୍ରମାନ୍ୱୟରେ ହୁଏ ।

ଯଥା-ସଗରିମ, ଗରିସରି, ସଗରିଗ ସମସମ ଗରିଗମ, ରିମଗପ ଗମରିଗ ରିମଗମ ରିପରିପ ମଗମପ-ଇତ୍ୟାଦି ।

## ନୂପୁରାଳଙ୍କରଃ

ସୋମାଦ୍ୱୟଂ ଚ ସମସାରିଦ୍ୱୟଂ ଗଦ୍ୱୟଂ ଚ ମଃ ।
ସରିଗ ମମଗାରିଶ୍ଚ ସଦ୍ୱୟଂ ରିଗମାସ୍ତଥା ।
ନୂପୁରେ ତୁ କଳା ପଞ୍ଚ ସ୍ୟଶ୍ଚତୁର୍ବିଂଶତି ସ୍ୱରାଃ ।। ୩୭ ।।

ସମମମସମ ସରୀରୀଗଗମ ସରୀଗମ ମଗରୀସ, ସରିଗମ-ଏହିପରି ନୂପୁର ଅଳଙ୍କାରରେ ପଞ୍ଚମାତ୍ରା ଓ ଚବିଶ ସ୍ୱର ରହେ।

ଯଥା-ସମମମସମ, ସରିରିଗଗମ ସରିଗମ, ମଗରିସ, ସରିଗମ ରିପପପରିପ ରିଗଗମମପ ରିଗମପ ପମଗରି ରିଗମପ-ଇତ୍ୟାଦି।

### ରତ୍ନାଳଙ୍କାରଃ

**ସରିଗମପମାଶ୍ଚୈବ ଗରିସା ଗରିମା ଗପୌ।**
**ମଗୌ ରିଗୌ ଚ ସରିସା ରିଗମା ରିଗମାଶ୍ଚ ପଃ।**
**କଳାଶ୍ଚତସ୍ରୋ ରତ୍ନାଳଂକାରେଽଷ୍ଟାବିଂଶତି ସ୍ୱରାଃ ।। ୩୮ ।।**

ସରିଗମ ପମଗରୀ ସଗରିମଗପ ମଗରିଗସରି, ସରିଗମ ରିଗମପ ଚାରିମାତ୍ରା ଓ ଅଠାଇଶ ସ୍ୱରରେ ରତ୍ନାଳଙ୍କାର ହୁଏ।

ଯଥା-ସରିଗମପମଗରି, ସଗରିମଗପ ମଗରିଗ ସରି ସରିଗମ ରିଗମପ- ଇତ୍ୟାଦି।

### ହାରଃ

**ସରିଗମ ସରିଗମ ସରିସରି ସରିଗମ**
**ସରିଗ ସରିଗ ସରି ସସ ରିରିଗୈଃ ଗମମୈ**
**ରୁକ୍ତାଃ ପଞ୍ଚଦ୍ୱାତ୍ରିଂଶତ୍‌ସ୍ୱରକଳାଭିରିହ ହାରଃ ।। ୩୯ ।।**

ସରିଗମ ସରିଗମ ସରି ସରି ସରିଗମ ସରିଗ ସରିଗ ସରି ସସ ରିରି ଗଗ ମମ ଏହି ବତିଶ ସ୍ୱରରେ ତଥା ପାଞ୍ଚମାତ୍ରାରେ ହାର ଅଳଙ୍କାର ହୁଏ।

ଯଥା-ସରୀଗମସରୀଗମ, ସରି ସରି ସରୀ ଗମ, ସରୀଗ ସରୀଗ ସରୀ, ସସରୀରୀ, ଗଗମମ।

**ଦଁଶାଦ୍ରୈବମଲଙ୍କରାଃ ସଂଚାରିଣ ଉଦାହୃତାଃ।**
**ଆରୋହେଣାବରୋହେଣ ଗେୟାଃ ସର୍ବୈର୍ମନୀଷିଭିଃ॥୪୦॥**
**ଅଲଙ୍କାରୈଃ ସ୍ୱରଜ୍ଞାନଂ ରକ୍ତିର୍ଗୀତିବିଚିତ୍ରତା।**
**ସର୍ବରାଗେଷୁ ବିସ୍ତାରଃ କର୍ତ୍ତୁଂ ଶକ୍ୟୋ ଭବେଦ୍ଧ୍ରୁବମ୍॥୪୧॥**
**ପୂର୍ବୋକ୍ତାନଲଙ୍କାରାନ୍ ବିପରୀତକ୍ରମେହିଣ ଅବରୋହିଣଃ କୁର୍ଯ୍ୟାତ୍।**

ସଂଚାରୀ ତିରିଶଗୋଟି ଅଲଙ୍କାରର ଉଦାହରଣ ଦିଆଗଲା; ଆରୋହଣ ଓ ଅବରୋହଣରେ ଏହାକୁ ସଂଗୀତଜ୍ଞମାନେ ଗାନ କରନ୍ତି। ଅଲଙ୍କାରଦ୍ୱାରା ସ୍ୱରଜ୍ଞାନ ହୁଏ। ଲୋକରଞ୍ଜନ ଓ ବିଚିତ୍ରତା ଗୀତିରେ ହୁଏ। ସବୁ ରାଗରେ ବିସ୍ତାର କରିବା ଉଚିତ୍ ବୋଲି ନିଶ୍ଚିତ ହୋଇଅଛି। ପୂର୍ବୋକ୍ତ ଅଲଙ୍କାରମାନଙ୍କୁ ବିପରୀତ କ୍ରମରେ ଅବରୋହଣ କରିବ।

### ଅଲଙ୍କାରନିରୂପଣଫଳମ୍

**ରକ୍ତିଲାଭଃ ସ୍ୱରଜ୍ଞାନଂ ବର୍ଣ୍ଣାଙ୍ଗାନାଂ ବିଚିତ୍ରତା।**
**ଇତି ପ୍ରୟୋଜନାନ୍ୟାହୁରଲଙ୍କାର-ନିରୂପଣେ॥୪୨॥**

(ସ.ର)

ଲୋକରଞ୍ଜନପ୍ରାପ୍ତି, ସ୍ୱରଜ୍ଞାନ, ବର୍ଣ୍ଣର ଅଙ୍ଗମାନଙ୍କର ବିଚିତ୍ରତା ଏହି ପ୍ରୟୋଜନମାନ ଅଲଙ୍କାର ନିରୂପଣରେ କଥିତ ହୋଇଅଛି।

### ଗମକ-ବ୍ୟୁତ୍ପତ୍ତିଃ

**ଯଃ ଶ୍ରୋତୃଚିତ୍ତସ୍ୟ ସୁଖଂ ତନୋତି ସ୍ୱରସ୍ୟ ...**
**କଂପୋଗମକଃ ସ ଏବ।**

ବ୍ୟୁତ୍ପତ୍ତିରସ୍ୟାଭିହିତା ଚ ପାର୍ଶ୍ୱ
ଦେବେନ ସଂଗୀତ-ବିଶାରଦେନ ॥ ୪୩ ॥
**ସ୍ୱୀୟ ଶ୍ରୁତି-ସ୍ଥାନ-ସମୁଦ୍ଭବାଂ ଚ**
ଛାୟାଂ ତଥାନ୍ୟା ଶ୍ରୁତିଯୋଗଭାଜାମ୍ ।
ଯତ୍ତୁ ସ୍ୱରୂପଂ ଗମୟେଦ୍ ସ ଏବ
ନିରୂପିତଃ ସ୍ୟାଦ୍‌ଗମକାଭିଧାନଃ ॥ ୪୪ ॥

ଯାହା ଶ୍ରୋତାଙ୍କର ଚିତ୍ତରେ ସୁଖ ପ୍ରଦାନ କରେ, ତାହା ସ୍ୱରର କମ୍ପନରେ ଗମକ ହୁଏ । ସଂଗୀତ-ପଣ୍ଡିତ ପାର୍ଶ୍ୱଦେବ ଏହାର ବ୍ୟୁତ୍ପତ୍ତି କରିଅଛନ୍ତି ।

ଯଥା-ନିଜ ଶ୍ରୁତିସ୍ଥାନରୁ ଜାତ ଛାୟା (ରୂପ)କୁ ଅନ୍ୟ ଶ୍ରୁତିମାନଙ୍କର ଯୋଗରୁ ଜାତ ସ୍ୱରମାନଙ୍କର ସ୍ୱରୂପକୁ ଯେ ଗତି କରାଏ, ସେ ଗମକ ନାମରେ କଥିତ ।

### ଗମକଭେଦାଃ

**ବକ୍ଷ୍ୟାମହେଽଥୋ ଗମକସ୍ୟ ଭେଦା**
ନାଦ୍ୟଃ ପ୍ରତୀତସ୍ତିରୁ ପାଭିଧାନଃ ।
ତତୋଦ୍ୱିତୀୟଃ ସ୍ଫୁରିତସ୍ତୃତୀୟ
ସ୍ୟାତ୍ କମ୍ପିତୋ ଲୀନ ଇହ-ପରଃ ସ୍ୟାତ୍ ॥ ୪୫ ॥
ଆନ୍ଦୋଳିତୋଽନ୍ୟଶ୍ଚ ବଳିସ୍ତୁ ଷଷ୍ଠ
ସ୍ତ୍ରିଭିନ୍ନ ନାମାପି ଚ ସପ୍ତମଃ ସ୍ୟାତ୍ ।
ତତଃ ପରଂ ସ୍ତଃ କୁରଳାହତୌ
ଦ୍ୱାବୁଲ୍ଲାସିତଃ ପ୍ଲାବିତହୁମ୍ଫିତୌ ଚ ।
ସ୍ୟାନ୍ନୁ ଦ୍ରକୋ ନାମିତ ମିଶ୍ରିତୌ ଚେ
ତ୍ୟେବଂ ମତାଃ ପଞ୍ଚଦଶାସ୍ୟ ଭେଦାଃ ॥ ୪୬ ॥

ବର୍ତ୍ତମାନ ଗମକର ଭେଦମାନ କହୁଅଛୁଁ; ପ୍ରଥମତଃ ତ୍ରିରୂପ, ଦ୍ୱିତୀୟ ସ୍ଫୁରିତ, ତୃତୀୟ କମ୍ପିତ, ଚତୁର୍ଥ ଲୀନ, ପଞ୍ଚମ ଆନ୍ଦୋଳିତ, ଷଷ୍ଠ ବଳି, ସପ୍ତମ ତ୍ରିଭିନ୍ନ, ଅଷ୍ଟମ କୁରଳ, ଆହତ ଉଲ୍ଲସିତ, ପ୍ଲାବିତ, ହୁମ୍ପିତ (ହୁଁକୃତ), ମୁଦ୍ରିକ, ନାମିତ, ମିଶ୍ରିତ- ଏହି ପନ୍ଦର ଭେଦ ଗମକର ଅଟନ୍ତି।

## ଗମକଲକ୍ଷଣମ୍

କ୍ରମେଣ ତୈଷାମଥ ଲକ୍ଷଣାନି
 ବକ୍ଷ୍ୟାମହେ ଗାୟକସଂପ୍ରଦାୟାଦ୍।
ଅତ୍ୟନ୍ତତାବଦ୍‌ଦ୍ରୁତମନ୍ଦ୍ରୁ ପ୍ରଘୋଷ
 କମ୍ପାନୁକାରାଦ୍ କମନୀୟରୂପଃ ।। ୪୭ ।।
ଦ୍ରୁତସ୍ୟ ତୂର୍ଯାଂଶ ଜବେନ ଯୁକ୍ତାଃ
 ସ୍ୱରସ୍ୟ କମ୍ପସ୍ତ୍ରିରୂପାଭିଧାନଃ।
ଅନ୍ୟୋ ଦ୍ରୁତସ୍ୟାପି ତୃତୀୟଭାଗ
 ବେଗେନ ଯୁକ୍ତଃ ସ୍ଫୁରିତୋ ଭବେଦ୍ ସଃ ।। ୪୮ ।।
ଦ୍ରୁତାର୍ଦ୍ଧମାନେନ ଜବେନ ଯୁକ୍ତଃ
 ସ୍ୱରସ୍ୟ କମ୍ପଃ ଖଳୁ କମ୍ପିତାଖ୍ୟଃ।
ତଥୈବ ପୂର୍ଣ୍ଣଦ୍ରୁତମାନଯୁକ୍ତଂ
 ସ୍ୱରସ୍ୟ କମ୍ପଃ ଖଳୁ ଲୀନମାହୁଃ ।। ୪୯ ।।
ଦ୍ରୁତେନ ମଧ୍ୟେନ ବିଳମ୍ବିତେନ
 ବିଲୀୟତେ ଯେନ ଘନ ପ୍ରମାଣଃ।
ଆନ୍ଦୋଳିତାଖ୍ୟଃ ସ୍ୱରକମ୍ପଯୁକ୍ତୋ

ଲଘୁ ପ୍ରମାଣ ସ୍ୱରକମ୍ପନେନ ।। ୫୦ ।।
ନାନାବିଧୋ ରାଗ-ଗତି- ପ୍ରଭିନ୍ନ
ବେଗ ତ୍ରିଭିନ୍ନୋ ଭବତି ସ୍ୱରାଣାମ୍ ।
କମ୍ପେ ବଳିଃ ସ୍ୟାଦତ ମନ୍ଦ୍ର ମଧ୍ୟ
ତାରେଷ୍ୱବିଶ୍ରାନ୍ତ ଘନସ୍ୱରଃ ସ୍ୟାଦ୍ ।। ୫୧ ।।
କଣ୍ଠୋଭବଃ କୋମଳ ଏବ ତ୍ରୟୀ
ବଳିଃ କିଳ ସ୍ୟାଦ୍ କୁରଳାଭିଧାନଃ ।।
ଅଗ୍ର୍ୟଂ ସ୍ୱରଂ ପ୍ରାପ୍ୟ ସହାହତେନ
ନିବର୍ତନେନାହତ ଇତ୍ୟୁପାରଃ ।। ୫୨ ।।
ଉଲ୍ଲାସିତାଖ୍ୟଃ ସ ଭବେଦ୍ କ୍ରମେଣୋ
ଋରୋଋରାନ୍ ଗଚ୍ଛତି ଯଦ୍ ସ୍ୱରୌଘାନ୍ ।
ପ୍ଲୁତସ୍ୟ ମାନେନ ଚ କମ୍ପନଂ ତୁ
ସ୍ୟାଦ୍ ପ୍ଲାବିତୋ ଗାୟକ-ସଂପ୍ରଦାୟାଦ୍ ।। ୫୩ ।।
ସ ହୁଂଫିତଃ ସ୍ୟାଦ୍‌ଗମକୋ ମନୋଜ୍ଞ
ହୁଂକାରଗର୍ଭସ୍ୱରକମ୍ପନଂ ସ୍ୟାଦ୍ ।
ଦନ୍ତଚ୍ଛଦଦ୍ୱନ୍ଦ୍ୱ ବିମୁଦ୍ରଣାତ୍ତୁ
ସ୍ୱରସ୍ୟ କମ୍ପଃ ଖଲୁ ମୁଦ୍ରକାଖ୍ୟଃ ।। ୫୪ ।।
ମନ୍ଦ୍ରେ ସ୍ୱରାଣାମବରୋହଣେନ
ସ୍ୱରସ୍ୟ କମ୍ପାତ୍ କିଳ ନାମିତାଖ୍ୟଃ ।
ଏଷାଂ ପୁନର୍ଲ୍ଲକ୍ଷଣମିଶ୍ରଣେନ
ମିଶ୍ରୋଭବେ ନୈକବିଧଃ ପ୍ରଭେଦଃ ।। ୫୫ ।।

(ସଂ. ସୁଧାକର)

ଗାୟକସମ୍ପ୍ରଦାୟ ଅନୁସାରେ ବର୍ତ୍ତମାନ କ୍ରମରେ ଗମକର ଲକ୍ଷଣମାନ କହୁଅଛୁ। ଅତି ଅଳ୍ପ ଡମ୍ବରୁ-ଘୋଷର କମ୍ପ ଅନୁକରଣରେ ସୁନ୍ଦର କମ୍ପନକୁ ଗମକ କହନ୍ତି। ଦ୍ରୁତ ସ୍ୱରର ତୃତୀୟ ଭାଗ ବେଗରେ ଯୁକ୍ତ ସ୍ୱରର କମ୍ପନକୁ ସ୍ଫୁରିତ କହନ୍ତି। ଦ୍ରୁତର ଅର୍ଦ୍ଧମାନ ବେଗରେ ଯୁକ୍ତସ୍ୱରର କମ୍ପନକୁ କମ୍ପିତ କହନ୍ତି। ପୂର୍ଣ୍ଣ ଦ୍ରୁତମାନ ଯୁକ୍ତ ସ୍ୱରର କମ୍ପନର ନାମ ଲୀନ। ତାହା ଦ୍ରୁତ, ମଧ୍ୟ ଓ ବିଳମ୍ବିତରେ ଘନ ପ୍ରମାଣରେ ବିଲୀନ ହୁଏ। ଲଘୁ ପ୍ରମାଣ ସ୍ୱର କମ୍ପନରେ ଆନ୍ଦୋଳିତ ହୁଏ। ମନ୍ଦ୍ର, ମଧ୍ୟ ଓ ତାରରେ ଅବିଶ୍ରାନ୍ତ ଘନ ସ୍ୱର-କମ୍ପନର ନାମ ବଳି। ସ୍ୱରମାନଙ୍କର ନାନା ପ୍ରକାର ରାଗର ଭିନ୍ନ ଗତି ଅନୁସାରେ କମ୍ପନକୁ ତ୍ରିଭିନ୍ନ କହନ୍ତି। ବଳିକୁ କଣ୍ଠରୁ ଜାତ କରାଇ କୋମଳ କମ୍ପନ କଲେ କୁରୁଳ ହୁଏ। ଆଗ ସ୍ୱରକୁ ଆଘାତ କରି ପୂର୍ବ ସ୍ୱରକୁ ଫେରିବାରୂପ କମ୍ପନକୁ ଆହତ କହନ୍ତି। ସ୍ୱରମାନଙ୍କର କ୍ରମଶଃ ଉତ୍ତରୋତ୍ତର ଆରୋହଣ ରୂପ କମ୍ପନକୁ ଉଲ୍ଲସିତ କହନ୍ତି। ପ୍ଲୁତ (ତ୍ରିମାତ୍ର) ମାନରେ ଯେ କମ୍ପନ ହୁଏ ତାହାର ନାମ ପ୍ଲାବିତ। ମନୋହର ହୁଁ ଗର୍ଭରେ ଥିବା ସ୍ୱର-କମ୍ପନକୁ ହୁମ୍ଫିତ (ହୁମ୍ପିତ) କହନ୍ତି। ଗାୟକର ଓଷ୍ଠ ଦୁଇଟିକୁ ମୁଦ୍ରିତ କରି ସ୍ୱର କମ୍ପନ କରିବାକୁ ମୁଦ୍ରକ କହନ୍ତି। ମନ୍ଦ୍ରରେ ସ୍ୱରମାନଙ୍କର ଅବରୋହଣରେ କମ୍ପନକୁ ନାମିତ କହନ୍ତି। ଏହି ଗମକ ମାନଙ୍କରେ ଲକ୍ଷଣ ମିଶ୍ରଣରେ ମିଶ୍ରିତ ହୁଏ। ଏହା ନାନାବିଧ ଅଟେ।

### ଗ୍ରାମଲକ୍ଷଣମ୍

ଯଥା କୁଟୁମ୍ବିନଃ ସର୍ବେ ଏକୀଭୂତା ଭବନ୍ତୀହ।
ତଥା ସ୍ୱରାଣାଂ ସଂଦୋହୋ ଗ୍ରାମ ଇତ୍ୟଭିଧୀୟତେ॥ ୫୬।

**ସ୍ୱରାଣାଂ ମୂର୍ଚ୍ଛନା-ତାନ-ଜାତି-ଜାତ୍ୟାଂଶକାତ୍ମନାମ୍ ।**
**ବ୍ୟବସ୍ଥିତ ଶ୍ରୁତୀନାଂ ହି ସମୂହୋ ଗ୍ରାମ ଉଚ୍ୟତେ ॥ ୫୭ ॥**

ଯେପରି କୁଟୁମ୍ବର ଲୋକ ଏକାଠି ରହନ୍ତି, ସେହିପରି ସ୍ୱରମାନଙ୍କର ମିଶ୍ରଣକୁ ଗ୍ରାମ କହନ୍ତି । ସ୍ୱରର ମୂର୍ଚ୍ଛନା, ତାନ, ଜାତି, ଅଂଶ ଓ ସ୍ଥିର ସ୍ଥିତ ଶ୍ରୁତିସମୂହ ମଧ୍ୟ ଗ୍ରାମ ନାମରେ କଥିତ ।

### ଗ୍ରାମନାମାନି

**ଶୁଦ୍ଧସ୍ୱରସମୂହାତ୍ମା ଗ୍ରାମୋ ଲକ୍ଷ୍ୟେ ସମୀରିତଃ ।**
**ଷଡ୍ଜମଧ୍ୟମଗାଂଧାରା ଗ୍ରାମାଃ ପ୍ରୋକ୍ତାଃ ପୁରାତନୈଃ ॥ ୫୮ ॥**
**ଏକ ଏବ ଭବେତ୍ ଷଡ୍ଜ ଗ୍ରାମୋଽଧୁନାତ୍ର ଲକ୍ଷ୍ୟତେ ।**
**ଷଡ୍ଜ-ପଞ୍ଚମ-ଭାବେନ ସ୍ୱରାସ୍ତତ୍ର ବ୍ୟବସ୍ଥିତାଃ ॥ ୫୯ ॥**

ଶୁଦ୍ଧ ସ୍ୱରସମୂହଦ୍ୱାରା ଗ୍ରାମ ହୁଏ । ଷଡ୍ଜ, ମଧ୍ୟମ, ଗାନ୍ଧାର ନାମରେ ଗ୍ରାମମାନ ଅଟନ୍ତି । ଏହା ପ୍ରାଚୀନ ପଣ୍ଡିତମାନେ କହିଅଛନ୍ତି । ବର୍ତ୍ତମାନ କେବଳ ଷଡ୍ଜ ଗ୍ରାମର ପ୍ରଚଳନ ଲକ୍ଷିତ ହୁଏ । ଷଡ୍ଜ ଓ ପଞ୍ଚମ ଭାବରେ ସ୍ୱରମାନେ ଗ୍ରାମରେ ଥାଆନ୍ତି ।

### ଗ୍ରାମବିଭାଗଲକ୍ଷଣମ୍

ଗ୍ରାମଃ ସ୍ୱରସମୂହଃ ସ୍ୟାନ୍ମୂର୍ଚ୍ଛନାଦେଃ ସମାଶ୍ରୟଃ ।
ତୌ ଦ୍ୱୌ ଧରାତଳେ ତତ୍ର ସ୍ୟାଦ୍‌ଷଡ୍ଜଗ୍ରାମ ଆଦିମଃ ॥ ୬୦ ॥
ଦ୍ୱିତୀୟୋ ମଧ୍ୟମଗ୍ରାମସ୍ତୟୋର୍ଲକ୍ଷଣମୁଚ୍ୟତେ ।
ଷଡ୍ଜଗ୍ରାମଃ ପଞ୍ଚମେ ସ୍ୱଚତୁର୍ଥଶ୍ରୁତି-ସଂସ୍ଥିତେ ॥ ୬୧ ॥
ସ୍ୱୋପାନ୍ତ୍ୟଶ୍ରୁତିସଂସ୍ଥେଽସ୍ମିନ୍ ମଧ୍ୟମ ଗ୍ରାମ ଉଚ୍ୟତେ ।
ଯଦ୍ୱାଧସ୍ତ୍ରିଶ୍ରୁତି ଷଡ୍ଜେ ମଧ୍ୟମେ ତୁ ଚତୁଃଶ୍ରୁତିଃ ॥ ୬୨ ॥
ରିମୟୋଃ ଶ୍ରୁତିମେକୈକାଂ ଗାଂଧାରଶ୍ଚେଦ୍ ସମାଶ୍ରିତଃ ।

ପଶ୍ରୁତିଂ ଧୋନିଷାଦସ୍ତୁ ଧଶ୍ରୁତିଂ ସ ଶ୍ରୁତିଂ ଶ୍ରିତଃ ।। ୬୩ ।।
ଗାନ୍ଧାର ଗ୍ରାମମାଚଷ୍ଟେ ତଦା ତଂ ନାରଦୋ ମୁନିଃ ।
ପ୍ରବର୍ତ୍ତତେ ସ୍ୱର୍ଗଲୋକେ ଗ୍ରାମାଽସୌ ନ ମହୀତଳେ ।। ୬୪ ।।
(ସଂ.ର.)

ସ୍ୱରସମୂହରେ ଗ୍ରାମ ହୁଏ । ତାହା ମୂର୍ଚ୍ଛନାଦିକୁ ଆଶ୍ରୟ କରେ । ସେହି ଦୁଇଟି ଗ୍ରାମ ସଂସାରରେ ଦେଖାଯାଏ । ତହିଁ ମଧ୍ୟରେ ଷଡ୍‌ଜ ପ୍ରଥମ ଗ୍ରାମ । ଦ୍ୱିତୀୟଟି ହେଉଛି ମଧ୍ୟମ; ତାହାର ଲକ୍ଷଣ କୁହାଯାଉଅଛି । (ଷଡ୍‌ଜ ସ୍ୱରର ଚତୁର୍ଥ ଶ୍ରୁତି ଛନ୍ଦୋବତୀ ପଞ୍ଚମର କରୁଣା ଜାତିଭେଦରେ ଆଳାପିନୀ ଆଦିରେ ସପ୍ତଦଶୀ ଶ୍ରୁତିରେ ରହିଲେ ଷଡ୍‌ଜ ଗ୍ରାମ ହୁଏ ।) ଷଡ୍‌ଜ୍ ସ୍ୱରର ଚତୁର୍ଥ ଶ୍ରୁତି ଛନ୍ଦୋବତୀରେ ରହିଥିବା ପଞ୍ଚମ ସ୍ୱରରେ ଷଡ୍‌ଜ ଗ୍ରାମ ହୁଏ । ନିଜର ଉପାନ୍ତ୍ୟ ଶ୍ରୁତିରେ ରହିଲେ ମଧ୍ୟମ ଗ୍ରାମ ହୁଏ । 'ରି, ମ' ର ଏକ ଏକ ଶ୍ରୁତିକୁ ଗାନ୍ଧାର ଆଶ୍ରୟ କରେ । ତାହାକୁ ସେତେବେଳେ ଗାନ୍ଧାର ଗ୍ରାମ ବୋଲି ନାରଦ କହିଅଛନ୍ତି । ଏହି ଗାନ୍ଧାର ଗ୍ରାମ ସ୍ୱର୍ଗଲୋକରେ ପ୍ରଚଳିତ କିନ୍ତୁ ପୃଥିବୀ ପୃଷ୍ଠରେ ପ୍ରଚଳିତ ନାହିଁ ।

### ଗ୍ରାମେଷୁ ଶ୍ରୁତିବଣ୍ଟନମ୍

ଚତୁଶ୍ଚତୁଶ୍ଚତୁଶ୍ଚୈବ ଷଡ୍‌ଜ-ମଧ୍ୟମ-ପଞ୍ଚମାଃ ।
ଦ୍ୱେ ଦ୍ୱେ ନିଷାଦଗାନ୍ଧାରୌ ତ୍ରି ତ୍ରି ଋଷଭଧୈବତୌ ।। ୬୫ ।।
ଅନ୍ୟ ଏବ ବ୍ୟବସ୍ଥିତ୍ୟା ପୁରାଣୈରପୁରାଣକୈଃ ।
ଗ୍ରନ୍ଥକାରୈଃ ସମାଦିଷ୍ଟଃ ଷଡ୍‌ଜ ଗ୍ରାମାଭିଧଃ ସଦା ।। ୬୬ ।।
ପଦ୍ଧତ୍ୟାଂ ଦାକ୍ଷିଣାତ୍ୟାନାଂ ମେଳଶୁଦ୍ଧସ୍ୱରାନ୍ୱିତଃ ।
ମୁଖାରୀତି ପ୍ରସିଦ୍ଧଃ ସ୍ୟାତ୍‌କନକାଂଗୀତି ବାଽଧୁନା ।। ୬୭ ।।

**ପଣ୍ଡିତୈଃ ମଧ୍ୟକାଳୀନୈ ହୃଦୟାହୋବଳାଦିଭିଃ ।**
**ନିଷ୍ଠିତଃ ଶୁଦ୍ଧମେଳୋଽତ୍ର ଧନାଶ୍ରୀ ସୈନ୍ଧବୋଽଥବା ॥ ୬୮ ॥**
**ଶୁଦ୍ଧସ୍ଥାନାନ୍ୟପୁଂଶ୍ଛାନି ଦୃଷ୍ଟ୍ୱାଽସ୍ମିନ୍ ପଣ୍ଡିତୈଃ ପୁନଃ ।**
**ହିନ୍ଦୁସ୍ଥାନୀୟ ପଦ୍ଧତ୍ୟାଂ ଶ୍ରୁତିକ୍ରମ-ବିପର୍ଯ୍ୟୟାତ୍ ॥ ୬୯ ॥**
**ବେଲାବଲ୍ୟଭିଧୋ ମେଳଃ ଶୁଦ୍ଧନାମ୍ନା ସମାଦୃତଃ ।**
**ଉତ୍କଳୀୟପଦ୍ଧତ୍ୟାଞ୍ଚ ଶ୍ରୁତ୍ୟୁଭୟସ୍ୟ ବିପର୍ଯୟାତ୍ ॥ ୭୦ ॥**
**ନଟ୍‌ଏବାଭିଧୋ ମେଳଃ ଶୁଦ୍ଧନାମ୍ନା ପ୍ରକୀର୍ତ୍ତିତଃ ।**
**ଶୁଦ୍ଧୋମେଳା ହି ସର୍ବତ୍ର ଷଡ୍‌ଜଗ୍ରାମ ଉଦୀର୍ଯତେ ॥ ୭୧ ॥**
**ଲକ୍ଷେ ଷଡ୍‌ଜଗ୍ରାମଦ୍ୱମର୍ହୟେତ୍**

ଷଡ୍‌ଜ, ମଧ୍ୟମ ଓ ପଞ୍ଚମରେ ଚାରି ଶ୍ରୁତି ଲେଖାଏଁ ଓ ନିଷାଦ, ଗାନ୍ଧାରରେ ଦୁଇ ଶ୍ରୁତି ଲେଖାଏଁ ହୁଏ । ପୁରାଣକାର ଓ ଅନ୍ୟ ଗ୍ରନ୍ଥକାରମାନେ ଷଡ୍‌ଜଗ୍ରାମକୁ କହିଅଛନ୍ତି । ଦାକ୍ଷିଣାତ୍ୟ ପଦ୍ଧିତରେ ଶୁଦ୍ଧ ସ୍ୱରଯୁକ୍ତ ହୋଇ ମୁଖାରୀ ନାମରେ ପ୍ରସିଦ୍ଧ । ଆଜିକାଲି ତାହା କନକାଙ୍ଗୀ ନାମରେ କଥିତ । ମଧ୍ୟକାଳୀନ ପଣ୍ଡିତ ହୃଦୟ ଅହୋବଳାଦି ଏହା ଶୁଦ୍ଧ ମେଳର ବୋଲି ନିଷ୍ଠିତ କରିଅଛନ୍ତି । ତାହା ଧନାଶ୍ରୀ ଓ ସୈନ୍ଧବ, ପୁଣି ହିନ୍ଦୁସ୍ଥାନୀ ପଦ୍ଧତିରେ ଶ୍ରୁତିର କ୍ରମ ବିପରୀତ ହୁଅନ୍ତେ ଏହାର ନାମ ହେଲା ବେଲାବଳୀ । ମେଳ ଶୁଦ୍ଧ ବୋଲି କୁହାଯାଏ । ଉତ୍କଳୀୟ ପଦ୍ଧିତରେ ଶ୍ରୁତିକ୍ରମ ବିପରୀତ ହେବାରୁ ଏହା ଶୁଦ୍ଧ ନଟମେଳ ବୋଲି କଥିତ । ସର୍ବ ସ୍ଥାନରେ ଷଡ୍‌ଜ ଗ୍ରାମ ଶୁଦ୍ଧମେଳର ବୋଲି କଥିତ ।

**ସଙ୍ଗୀତପାରିଜାତମତେ ଗ୍ରାମସ୍ୱରପରିଚୟଃ**

ଷଡ୍‌ଜ ଗ୍ରାମ-ସ ରି ଗ ମ ପ ଧ ନି

ମଧ୍ୟମ ଗ୍ରାମ-ସ ରି ଗ ମ ପ ଧ ନି

ଅର୍ଥାତ୍- - - -ମ୍ ପ ଧ ନି ସ ରି ଗ

ଗାନ୍ଧାର ଗ୍ରାମ-ସ ର ଗ ମ ପ ଧ ନି

ଅର୍ଥାତ୍-ଗ ମ ପ ଧ ନ ସ ରେ

ଉତ୍କଳୀୟମତେ ଗ୍ରାମସ୍ୱର-ପରିଚୟଃ

ଯଥା-ଷଡ଼୍‌ଜ ଗ୍ରାମ-ସ ରି ଗ ମ ପ ଧ ନି

ମଧ୍ୟମ ଗ୍ରାମ-- - - ମ ପ ଧ ନି ସ ରି ଗ

ଅର୍ଥାତ୍ -- - - ସ ରି ଗ ମ ପ ଧ ନି

ଗାନ୍ଧାର ଗ୍ରାମ-- - ଗ ମ ପ ଧ ନି ସ ରି

ଅର୍ଥାତ୍ -- - ସ ରି ଗ ମ ପ ଧ ନି

ମୂର୍ଚ୍ଛନାବ୍ୟୁତ୍ପତ୍ତିଃ

ମୂର୍ଚ୍ଛା ମୋହସମୁଚ୍ଛ୍ରୟୋଃ ।

ମୂର୍ଚ୍ଛତେ ଯେନ ରାଗୋ ହି ମୂର୍ଚ୍ଛନେତ୍ୟଭିସଂଜ୍ଞିତା ।

ଆରୋହଣାବରୋହଣକ୍ରମେଣ ସ୍ୱରସପ୍ତକମ୍ ।। ୭୨ ।।

(ବୃ. ଦେଶ୍ୟାଂ)

ମୋହ ଓ ସମୁଚ୍ଛ୍ରୟକୁ (ଉପରକୁ ବଢ଼ିଯିବା) ମୂର୍ଚ୍ଛା କହନ୍ତି, ଯାହାଦ୍ୱାରା ରାଗ ମୂର୍ତ୍ତିପ୍ରାପ୍ତ ହୁଏ, ତାହାକୁ ମୂର୍ଚ୍ଛନା କହନ୍ତି। ଆରୋହ ଓ ଅବରୋହ କ୍ରମରେ ଏହାସପ୍ତ ସ୍ୱରକୁ ଆଶ୍ରୟ କରେ।

ମୂର୍ଚ୍ଛନାଲକ୍ଷଣମ୍

କ୍ରମାତ୍ ସ୍ୱରାଣାଂ ସପ୍ତାନାମାରୋହଶ୍ଚାବରୋହଣମ୍ ।

ମୂର୍ଚ୍ଛନେତ୍ୟୁଚ୍ୟତେ ଗ୍ରାମଦ୍ୱୟେ ତାଃ ସପ୍ତ ସପ୍ତ ଚ ।। ୭୩ ।।

(ସଂ:ର:)

ସ୍ୱରାରୋହାବରୋହାଭ୍ୟାଂ ଗ୍ରାମେଽଭିବ୍ୟାପ୍ୟତେ ଯୟା ।

ଶ୍ରୋତା ବା ମୁହ୍ୟତେ ସା ତୁ ମୂର୍ଚ୍ଛନା ପରିକୀର୍ତ୍ତିତା ।। ୭୪ ।।

**ସ୍ୱରଃ ସମ୍ମୂର୍ଚ୍ଛିତୋ ଯତ୍ର ରାଗତାଂ ପ୍ରତିପଦ୍ୟତେ ।**
**ମୂର୍ଚ୍ଛନାମିତି ତାଂ ପ୍ରାହୁଃ କବୟୋ ଗ୍ରାମସମ୍ଭବାଃ ।। ୭୫ ।**

**କ୍ରମରେ ସପ୍ତସ୍ୱରମାନଙ୍କର ଆରୋହଣ-ଅବରୋହଣରେ ମୂର୍ଚ୍ଛନା ହୁଏ । ଗ୍ରାମଦ୍ୱୟରେ ସାତ ସାତ ହୋଇ ସ୍ୱରସବୁ ଆରୋହ ଓ ଅବରୋହରେ ବ୍ୟାପି ରହନ୍ତି ବା ଯାହାଦ୍ୱାରା ଶ୍ରୋତା ମୋହପ୍ରାପ୍ତ ହୁଏ, ତାହାକୁ ମଧ ମୂର୍ଚ୍ଛନା କହନ୍ତି । ସ୍ୱରସବୁ ଉପରକୁ ଉଠି ଯେଉଁଠାରେ ରାଗକୁ ପ୍ରାପ୍ତ ହୁଏ, ଗ୍ରାମରୁ ଜାତ ତାହାକୁ କବିମାନେ ମୂର୍ଚ୍ଛନା ବୋଲି କହନ୍ତି ।**

**ମୂର୍ଚ୍ଛନାଭେଦାଃ**

**ଷଡ୍‌ଜେ ତୂତ୍ତରମନ୍ଦ୍ରାଦୌ ରଜନୀ ଚୋତ୍ତରାୟତା ।**
**ଶୁଦ୍ଧଷଡ୍‌ଜାମତ୍ସରିକୃଦଶ୍ୱକ୍ରାନ୍ତାଭିରୁଦଗତା ।। ୭୬ ।।**
**ମଧମେ ସ୍ୟାତ୍ତୁ ସୌବୀରୀ ହାରିଣାଶ୍ୱା ତତଃ ପରମ୍ ।**
**ସ୍ୟାଦ୍ କଲୋପନତଃ ଶୁଦ୍ଧ ମଧମାର୍ଗୀ ଚ ପୌରବୀ ।। ୭୭ ।।**
**ହୃଷ୍ୟକେତ୍ୟଥ ତାସାଂ ତୁ ଲକ୍ଷଣଂ ପ୍ରତିପାଦ୍ୟତେ ।**
**ମଧସ୍ଥାନସ୍ଥ ଷଡ୍‌ଜେନ ମୂର୍ଚ୍ଛନାରଭ୍ୟତେଽଗ୍ରିମା ।। ୭୮ ।।**

ଷଡ୍‌ଜ ଗ୍ରାମର ମୂର୍ଚ୍ଛନା ଉତ୍ତର ମନ୍ଦ୍ରା, ରଜନୀ, ଉତ୍ତରାୟତା, ଶୁଦ୍ଧ ଷଡ୍‌ଜା, ମତ୍ସରିକୃତ୍, ଅଶ୍ୱକ୍ରାନ୍ତା ଓ ଅଭିରୁଦ୍‌ଗତା ସାତୋଟି । ମଧମ ଗ୍ରାମରେ ସୌବୀରୀ, ହାରିଣାଶ୍ୱା, କଳୋପନତା, ଶୁଦ୍ଧ ମଧା, ମାର୍ଗୀ ପୌରବୀ ଓ ହୃଷ୍ୟକା ଏପରି ସାତଗୋଟି ମୂର୍ଚ୍ଛନା ହୁଅନ୍ତି । ମଧ ସ୍ଥାନରେ ଥିବା ଷଡ୍‌ଜ ଦ୍ୱାରା ପ୍ରଥମରେ ମୂର୍ଚ୍ଛନା ଆରମ୍ଭ ହୁଏ ।

| ଷଡ୍ଜ ଗ୍ରାମ ମୂର୍ଚ୍ଛନା | | ସ୍ୱରାନ୍ତର୍ଗତ ଶ୍ରୁତିସଂଖ୍ୟା | | | | | | |
|---|---|---|---|---|---|---|---|---|
| ଉତ୍ତର ମନ୍ଦ୍ରା | ସା | ୩ରି | ୨ଗ | ୪ମ | ୪ପ | ୩ଧ | ୨ନି | ୪ସା |
| ରଜନୀ | ନୀ | ୪ସା | ୩ରି | ୨ଗ | ୪ମ | ୪ପ | ୩ଧ | ୨ନି |
| ଲକ୍ଷସ୍ୱର | ସା | ୪ରି | ୩ଗ | ୨ମ | ୪ପ | ୪ଧ | ୩ନୀ | ୨ସା |
| ଉତ୍ତରାୟତା | ଧ | ୨ନୀ | ୪ସା | ୩ରି | ୨ଗ | ୪ମ | ୪ପ | ୩ଧ |
| ଲକ୍ଷସ୍ୱର | ସା | ୨ରି | ୪ଗ | ୩ମ | ୨ପ | ୪ଧ | ୪ନୀ | ୩ସା |
| ଶୁଦ୍ଧଷଡ୍ଜା | ପ | ୩ଧ | ୨ନୀ | ୪ସା | ୩ରି | ୨ଗ | ୪ମ | ୪ପ |
| ଲକ୍ଷସ୍ୱର | ସା | ୩ରି | ୨ଗ | ୪ମ | ୩ପ | ୨ଧ | ୪ନୀ | ୪ସା |
| ମଚ୍ଛରିକୃତା | ମ | ୪ପ | ୩ଧ | ୨ନୀ | ୪ସା | ୩ରି | ୨ପ | ୪ମ |
| ଲକ୍ଷସ୍ୱର | ସା | ୪ରି | ୩ଗ | ୨ମ | ୪ପ | ୩ଧ | ୨ନି | ୪ସା |
| ଅଶ୍ୱକ୍ରାନ୍ତ | ଗ | ୪ମ | ୪ପ | ୩ଧ | ୨ନି | ୪ସା | ୩ରି | ୨ଗ |
| ଲକ୍ଷସ୍ୱର | ସା | ୪ରି | ୪ଗ | ୩ମ | ୨ପ | ୪ଧ | ୩ନି | ୨ସା |
| ଅଭିରୁଦ୍‌ଗତା | ରି | ୨ଗ | ୪ମ | ୪ପ | ୩ଧ | ୨ନି | ୪ସା | ୩ରି |
| ଲକ୍ଷସ୍ୱର | ସା | ୨ରି | ୪ଗ | ୪ମ | ୩ପ | ୨ଧ | ୪ନି | ୩ସା |

| ମଧ୍ୟମ ଗ୍ରାମମୂର୍ଚ୍ଛନା | | ସ୍ୱରାନ୍ତର୍ଗତ ଶ୍ରୁତିସଂଖ୍ୟା | | | | | | |
|---|---|---|---|---|---|---|---|---|
| ସୌବୀର | ମ | ୩ପ | ୪ଧ | ୨ନୀ | ୪ସା | ୩ରି | ୨ଗ | ୪ମ |
| ଲକ୍ଷସ୍ୱର | ସା | ୩ରି | ୪ଗ | ୨ମ | ୪ପ | ୩ଧ | ୨ନୀ | ୪ସ |
| ହରିଣାକ୍ଷା | ଗ | ୪ମ | ୩ପ | ୪ଧ | ୨ନୀ | ୪ସା | ୩ରି | ୨ଗ |
| ଲକ୍ଷସ୍ୱର | ସା | ୪ରି | ୩ଗ | ୪ମ | ୨ପ | ୪ଧ | ୩ନୀ | ୨ସା |
| କଳୋପନା | ରି | ୨ଗ | ୪ମ | ୩ପ | ୪ଧ | ୨ନୀ | ୪ସା | ୩ରି |
| ଲକ୍ଷସ୍ୱର | ସା | ୨ରି | ୪ଗ | ୩ମ | ୪ପ | ୨ଧ | ୪ନୀ | ୩ସା |
| ଶୁଦ୍ଧମଧ୍ୟା | ସା | ୩ରି | ୨ଗ | ୪ମ | ୩ପ | ୪ଧ | ୨ନି | ୪ସା |

| | | | | | | | | |
|---|---|---|---|---|---|---|---|---|
| ମାର୍ଗୀ | ନି | ୪ସା | ୩ରି | ୨ଗ | ୪ମ | ୩ପ | ୪ଧ | ୨ସା |
| ଲକ୍ଷସ୍ୱର | ସା | ୪ରି | ୩ଗ | ୨ମ | ୪ପ | ୩ଧ | ୪ନି | ୨ସା |
| ପୌରବୀ | ଧ | ୨ନୀ | ୪ସା | ୩ରି | ୨ଗ | ୪ମ | ୩ପ | ୪ଧ |
| ଲକ୍ଷସ୍ୱର | ସା | ୨ରି | ୪ଗ | ୩ମ | ୨ପ | ୪ଧ | ୩ନି | ୪ସା |
| ହୃଷ୍ୟକା | ପ | ୪ଧ | ୨ନୀ | ୪ସା | ୩ରି | ୨ଗ | ୨ମ | ୩ପ |
| ଲକ୍ଷସ୍ୱର | ସା | ୪ରି | ୨ଗ | ୪ମ | ୩ପ | ୨ଧ | ୪ନି | ୩ସା |

## ସଂଗୀତପାରିଜାତମତେ ମୂର୍ଚ୍ଛନାଗତସ୍ୱରପରିଚୟଃ

### ଷଡ୍ଜଗ୍ରାମ

୧. ଉତ୍ତରମନ୍ଦ୍ରା, ଷଡ୍ଜମୂର୍ଚ୍ଛନା-ସ ର ଗ ମ ପ ଧ ନ
୨. ରଂଜନୀ, ନିଷାଦମୂର୍ଚ୍ଛନା-ସ ର ଗ ମ ପ ଧ ନ
୩. ଉତ୍ତରାୟତା, ଧୈବତମୂର୍ଚ୍ଛନା-ସ ର ଗ ମ ମ ଧ ନ
୪. ଶୁଦ୍ଧଷଡ୍ଜା, ପଞ୍ଚମମୂର୍ଚ୍ଛନା-ସ ର ଗ ମ ପ ଧ ନ
୫. ମତ୍ସରିକୃତା, ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନ
୬. ଅଶ୍ୱକ୍ରାନ୍ତା, ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନ
୭. ଅଭିରୁଦ୍‌ଗତା, ଋଷଭମୂର୍ଚ୍ଛନା-ସ ର ଗ ମ ପ ଧ ନ

### ମଧ୍ୟମ ଗ୍ରାମ

୧. ସୌରବୀ ମଧ୍ୟମମୂର୍ଚ୍ଛନା-ସ ର ଗ ମ ପ ଧ ନ
୨. ହରିଣାକ୍ଷ-ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନ
୩. କଲୋପନା-ଋଷଭ ମୂର୍ଚ୍ଛନା-ସ ର ଗ ମ ପ ଧ ନ
୪. ଶୁଦ୍ଧମଧ୍ୟା-ଷଡ୍ଜ ମୂର୍ଚ୍ଛନା-ସ ର ଗ ମ ପ ଧ ନ
୫. ମାର୍ଗୀ-ନିଷାଦ ମୂର୍ଚ୍ଛନା-ସ ର ଗ ମ ପ ଧ ନ
୬. ପୌରବୀ-ଧୈବତ ମୂର୍ଚ୍ଛନା-ସ ର ଗ ମ ପ ଧ ନ
୭. ହୃଷ୍ୟକା-ପଞ୍ଚମ ମୂର୍ଚ୍ଛନା-ସ ର ଗ ମ ପ ଧ ନ

## ଗାନ୍ଧାରଗ୍ରାମାନ୍ତର୍ଗତମୂର୍ଚ୍ଛନାନାମାନି

**ନନ୍ଦା ବିଶାଳା ସୁମୁଖୀ ଚିତ୍ରା ଚିତ୍ରାବତୀ ସୁଖା ।**
**ଆଳାପ ଚେତି ଗାନ୍ଧାରଗ୍ରାମେ ସ୍ୟୁଃସପ୍ତମୂର୍ଚ୍ଛନାଃ**
**ତାସ୍ତ ସ୍ୱର୍ଗେ ପ୍ରୟୋକ୍ତବ୍ୟା ବିଶେଷାତ୍ତେନ ନୋଦିତାଃ ॥ ୭୯ ॥**
**(ସଂ.ର)**

ନନ୍ଦା, ବିଶାଳା, ସୁମୁଖୀ, ଚିତ୍ରା, ଚିତ୍ରାବତୀ, ସୁଖା, ଆଳାପ ଆଦି ୭ଟି ମୂର୍ଚ୍ଛନା ଗାନ୍ଧାର ଗ୍ରାମରେ । ସେସବୁ ସ୍ୱର୍ଗରେ ପ୍ରୟୋଗ ହୁଅଚି ବୋଲି କୁହାଗଲା ନାହିଁ ।

### ଉତ୍କଳୀୟମତେ ମୂର୍ଚ୍ଛନାଗତସ୍ୱରପରିଚୟଃ

ଷଡ୍‌ଜଗ୍ରାମ

୧. ଉତ୍ତରମନ୍ଦ୍ରା, ଷଡ୍‌ଜମୂର୍ଚ୍ଛନା-ସ ର ଗ ମ ପ ଧ ନି
୨. ରଂଜନୀ, ନିଷାଦମୂର୍ଚ୍ଛନା-ସ ର ଗ ମ ପ ଧ ନି
୩. ଉତ୍ତରାୟତା, ଧୈବତମୂର୍ଚ୍ଛନା-ସ ର ଗ ମ ମ ଧ ନି
୪. ଶୁଦ୍ଧଷଡ୍‌ଜା, ପଞ୍ଚମମୂର୍ଚ୍ଛନା-ସ ର ଗ ମ୍ ପ ଧ ନି
୫. ମତ୍ସରିକୃତା, ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନି
୬. ଅଶ୍ୱକ୍ରାନ୍ତା, ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନି
୭. ଅଭିରୁଦ୍‌ଗତା, ଋଷଭ ମୂର୍ଚ୍ଛନା-ସ ର ଗ ମ ପ ଧ ନି

ମଧ୍ୟମ ଗ୍ରାମ

୧. ସୌରବୀ ମଧ୍ୟମ ମୂର୍ଚ୍ଛନା-ସ ର ଗ ମ ପ ଧ ନି
୨. ହରିଣାକ୍ଷ-ଗାନ୍ଧାରମୂର୍ଚ୍ଛନା-ସ ର ଗ ମ ପ ଧ ନି
୩. କଲୋପନା-ଋଷଭ ମୂର୍ଚ୍ଛନା-ସ ର ଗ ମ ପ ଧ ନି
୪. ଶୁଦ୍ଧମଧ୍ୟା-ଷଡ୍‌ଜ ମୂର୍ଚ୍ଛନା-ସ ର ଗ ମ ପ ଧ ନି

୫. ମାର୍ଗୀ-ନିଷାଦ ମୂର୍ଚ୍ଛନା-ସ ର ଗ ମ ପ ଧ ନି
୬. ପୌରବୀ-ଧୈବତ ମୂର୍ଚ୍ଛନା-ସ ର ଗ ମ ପ ଧ ନି
୭. ହୃଷ୍ୟକା-ପଞ୍ଚମମୂର୍ଚ୍ଛନା-ସ ର ଗ ମ ପ ଧ ନି

### ମଧ୍ୟଯୁଗୀୟମତମ୍

**ପ୍ରାକ୍‌କାଳୀନେଷୁ ଗ୍ରନ୍ଥେଷୁ ମୂର୍ଚ୍ଛନା ସପ୍ତକୀର୍ତ୍ତିତାଃ ।**
**ପ୍ରତିଗ୍ରାମ-ସମାସକ୍ତା ଯତୋ ରାଗାଃ ସମୁଦ୍‌ଥିତାଃ ।। ୮୦ ।।**
**ଭିନ୍ନସ୍ୱରଂ ସମାରଭ୍ୟ ସପ୍ତସ୍ୱର-ବ୍ୟବସ୍ଥୟା ।**
**ଭବେଦ୍ ପରିସ୍ଫୁଟା ତତ୍ର ସ୍ୱରାନ୍ତର ବିଭିନ୍ନତା ।। ୮୧ ।।**
**ରତ୍ନାକରାଦି ଗ୍ରନ୍ଥେଷୁ ମୂର୍ଚ୍ଛନା ଜାତି-ଯୋଗତଃ ।**
**ରାମମେଳାଃ ସମାଖ୍ୟାତା ରହସ୍ୟଂ ତଦ୍ ସୁସଂମତମ୍ ।। ୮୨ ।।**
**ପଣ୍ଡିତୈର୍ମଧମାଳୀନୈରହୋବଳାଦିଭିଃ ପୁନଃ ।**
**ରହସ୍ୟଂ ମୂର୍ଚ୍ଛନାନାଂ ତଦ୍‌ବିଭିନ୍ନଂ ସମୁଦୀରିତମ୍ ।। ୮୩ ।।**
**ମେଳଃ ସ୍ୟାନ୍ମୂର୍ଚ୍ଛନାଧାରୋ ଗ୍ରାମାଧାରା ତୁ ମୂର୍ଚ୍ଛନା ।**
**ସ୍ୱରେଭ୍ୟୋ ଗ୍ରାମ-ସଂଭୂତିଃ ଶ୍ରୁତୟଃ ସ୍ୱର-ଜନ୍ମଭୂଃ ।। ୮୪ ।।**

ପ୍ରାଚୀନକାଳର ଗ୍ରନ୍ଥମାନଙ୍କରେ ମୂର୍ଚ୍ଛନା ସାତଗୋଟି ବୋଲି କଥିତ । ମୂର୍ଚ୍ଛନାମାନ ପ୍ରତି ଗ୍ରାମରେ ଥିବା ହେତୁ ତହିଁରୁ ରାଗ ଜାତ ହୁଏ । ଭିନ୍ନ ଭିନ୍ନ ସ୍ୱରକୁ ଆରମ୍ଭ କରି ସପ୍ତସ୍ୱର-ବ୍ୟବସ୍ଥାଦ୍ୱାରା ଅନ୍ୟ ସ୍ୱରଦ୍ୱାରା ଭିନ୍ନତା ପ୍ରାପ୍ତ ହୋଇ ମୂର୍ଚ୍ଛନା ଜାତି-ଯୋଗରୁ ରାଗମେଳ କଥିତ ହୁଏ । ତାହାର ରହସ୍ୟ ଅତି ସମ୍ମତ ଅଟେ । ମଧ୍ୟକାଳୀନ ପଣ୍ଡିତ ଅହୋବଳାଦିଙ୍କଦ୍ୱାରା ପୁଣି ମୂର୍ଚ୍ଛନାମାନଙ୍କର ରହସ୍ୟ ଭିନ୍ନ ଭାବେ କଥିତ । ମୂର୍ଚ୍ଛନାରେ ମେଳ ରହେ, ଗ୍ରାମ ରହେ । ମୂର୍ଚ୍ଛନାରେ ସ୍ୱରମାନଙ୍କରୁ ଗ୍ରାମ ଜାତ ହୁଏ । ସ୍ୱରମାନେ ଶ୍ରୁତିରୁ ଜାତ ହୁଅନ୍ତି ।

# ॥ମେଳ ପ୍ରକରଣମ୍॥

## ମେଳଲକ୍ଷଣମ୍

ମେଳଃ ସ୍ୱରସମୂହଃ ସ୍ୟାଦ୍ରାଗବ୍ୟଞ୍ଜନଶକ୍ତିମାନ୍।
ଶ୍ଲିଷ୍ଟୋଚ୍ଚାରଣମେବାତ୍ର ସବୂହ ପରିକୀର୍ତ୍ତିତଃ॥ ୧ ॥
ମେଳଜ୍ଞାନଂ ବିନା ମେଳଜନ୍ୟଂ ଜ୍ଞାତୁଂ ନ ଶକ୍ୟତେ।
ସ୍ୱରେଷୁ ଦ୍ୱାଦଶେଷ୍ୱେଷୁ ତତ୍ତଦ୍ରାଗ ପ୍ରୟୋଗତଃ।
ତତ୍ସ୍ୱରସମୂହାତ୍ମା ମେଳ ଇତ୍ୟେବମୀରିତଃ॥ ୨ ॥

(ସଂ.ସାର.)

ସ୍ୱରସମୂହରେ ମେଳ ହୁଏ। ମେଳର ରାଗ ପ୍ରକାଶ କରିବାରେ ତାହାର ସାମର୍ଥ୍ୟ ଅଛି। ମିଶ୍ରିତ ହୋଇ ଉଚ୍ଚାରିତ ହେଲେ ସମୂହ କୁହାଯାଏ। ମେଳ-ଜ୍ଞାନ ବିନା ମେଳରୁ ଜାତ ରାଗମାନ ଜଣାଯାଇପାରିବ ନାହିଁ। ବାରଗୋଟି ସ୍ୱର ରାଗମାନଙ୍କରେ ଆବଶ୍ୟକମତେ ପ୍ରଯୁକ୍ତ ହେଲେ ସେହି ସ୍ୱର ସମୁଦାୟକୁ ମେଳ କୁହାଯାଏ।

## ମେଳଭେଦାଃ

ଶୁଦ୍ଧୈଃ ସ୍ୱରୈଃ ସମସ୍ତୈର୍ଯୋ ଯୁକ୍ତଃ ସଂପୂର୍ଣ୍ଣ ଶବ୍ଦଭାକ୍।
ଷଡ୍‌ଭିଃ ଷାଡ଼ବ ଇତ୍ୟୁକ୍ତଃ ସ୍ୱରୈଃ ପଞ୍ଚଭିରୌଡ଼ବ॥ ୩॥

ସମସ୍ତ ସାତଗୋଟି ଶୁଦ୍ଧ ସ୍ୱର ବ୍ୟବହାରରେ ସମ୍ପୂର୍ଣ୍ଣ, ଛଅଟି ସ୍ୱରରେ ଷାଡ଼ବ, ପାଞ୍ଚଟି ସ୍ୱରରେ ଓଡ଼ବ କଥିତ।

## ମେଳଗତମୂର୍ଚ୍ଛନାୟାଃ ନବଭେଦାଃ

ଆରୋହେ ସ୍ୟାଦ୍ ସୁସମ୍ପୂର୍ଣ୍ଣୋ ବିଲୋମେଽପି ତଥୈବ ଚ।
ସ ଭବେଦ୍ ପ୍ରଥମୋ ଭେଦୋ ଦ୍ୱିତୀୟଃ କଥ୍ୟତେଽଧୁନା॥ ୪ ॥

ପ୍ରାରୋହେ ସ୍ୟାତ୍ସୁସଂପୂର୍ଣ୍ଣୋ ବିଲୋମେ ଷାଡ଼ବଃ ପୁନଃ ।
ଦୃତୀୟଃ ପୂର୍ଣ୍ଣ ଆରୋହେ ବିଲୋମେ ଚୌଡ଼ବସ୍ତଥା ।। ୫ ।।
ପ୍ରାରୋହେ ଷାଡ଼ବଃ ପ୍ରୋକ୍ତଃ ସଂପୂର୍ଣ୍ଣଃ ସ୍ୟାଦ୍ବିଲୋମକେ ।
ଚତୁର୍ଥୋ ବର୍ଣ୍ଣିତୋ ଭେଦଃ ପଞ୍ଚମଃ କଥ୍ୟତେଽଧୁନା ।। ୬ ।।
ଆରୋହେ ଚୌଡ଼ବୋ ଯସ୍ତୁ ସମ୍ପୂର୍ଣ୍ଣଶ୍ଚ ବିଲୋମକେ ।
ପ୍ରାରୋହ ଷାଡ଼ବୋ ନିତ୍ୟଂ ବିଲୋମଽପିତ ଥୈବ ଚ ।। ୭ ।।
ଷାଡବଷାଡ଼ବ ଷଷ୍ଠ କିର୍ତ୍ତୀତୋ ଲକ୍ଷ୍ୟବେଦିଭିଃ ।
ପ୍ରାରୋହେ ଷାଡ଼ବ ଖ୍ୟାତୋ ବିଲୋମେ ଚୌଡ଼ବଃ ପୁନଃ ।। ୮ ।।
ସପ୍ତମଃ ସଂମତୋ ଭେଦୋଽଷ୍ଟମୋଽଥ କଥ୍ୟତୋଽଧୁନା ।
ଔଡ଼ବାରୋହସଂପନ୍ନୋ ବିଲୋମେ ଷାଡ଼ବଃ ପୁନଃ ।। ୯ ।।
ଔଡ଼ବୋ ରୋହଣେ ନିତ୍ୟମବରୋହେଽପି ଚୌଡ଼ବଃ ।
ନବମଃ କଥ୍ୟତେ ଭେଦୋ ଲକ୍ଷ୍ୟେ ନିତ୍ୟଂ ସୁଖପ୍ରଦଃ ।। ୧୦ ।।
ଦ୍ୱିସପ୍ତତିର୍ଯତୋ ମେଳାଃ ଶାସ୍ତ୍ରକାରୈଃ ସୁନିଶ୍ଚିତା ।
ପ୍ରତ୍ୟେକମେଳନେଽବଶ୍ୟଂ ନବଭେଦା ଭବନ୍ତ୍ୟମୀ ।। ୧୧ ।।

ଆରୋହ ଅବରୋହ ସମ୍ପୂର୍ଣ୍ଣ ହେଲେ ପ୍ରଥମ । ଆରୋହରେ ସମ୍ପୂର୍ଣ୍ଣ ଅବରୋହରେ ଷାଡ଼ବ ହେଲେ ଦ୍ୱିତୀୟ । ଆରୋହରେ ସମ୍ପୂର୍ଣ୍ଣ ଅବରୋହରେ ଓଡ଼ବ ହେଲେ ତୃତୀୟ । ଆରୋହରେ ଷାଡ଼ବ ଅବରୋହରେ ସମ୍ପୂର୍ଣ୍ଣ ହେଲେ ଚତୁର୍ଥ । ଆରୋହରେ ଔଡ଼ବ ଅବରୋହରେ ସମ୍ପୂର୍ଣ୍ଣ ହେଲେ ପଞ୍ଚମ- ଆରୋହରେ ଷାଡ଼ବ ପୁଣି ଅବରୋହରେ ଷାଡ଼ବ ହେଲେ ଅର୍ଥାତ୍ ଷାଡ଼ବ ଷାଡ଼ବରେ ଷଷ୍ଠ, ଆରୋହରେ ଷାଡ଼ବ ଅବରୋହରେ ଔଡ଼ବ ହେଲେ ସପ୍ତମ, ଆରୋହରେ ଔଡ଼ବ ଅବରୋହରେ ଷାଡ଼ବ ହେଲେ ଅଷ୍ଟମ,-

ଆରୋହରେ ଔଡ଼ବ ଅବରୋହରେ ଔଡ଼ବ ହେଲେ ନବମ ହେଲେ ନିତ୍ୟ ସୁଖପ୍ରଦ। ଶାସ୍ତ୍ରକାରମାନେ ୭୨ ମେଳ ନିର୍ଣ୍ଣୟ କରିଥିବାରୁ ପ୍ରତ୍ୟେକ ମେଳରେ ଅବଶ୍ୟ ନବଭେଦ ରହିବ।

## ମୂର୍ଚ୍ଛନାଜନ୍ୟରାଗନିରୂପଣମ୍

ସମ୍ପୂର୍ଣ୍ଣ ସମ୍ପୂର୍ଣ୍ଣ ୧ ସମ୍ପୂର୍ଣ୍ଣ ଷାଡ଼ବ ୬ ସଂପୂର୍ଣ୍ଣ ଔଡ଼ବ ୧୫।
ଷାଡ଼ବ ସମ୍ପୂର୍ଣ୍ଣାଃ ୬ ଔଡ଼ବ ସମ୍ପୂର୍ଣ୍ଣାଃ ୧୫ ଷାଡ଼ବ ଷାଡ଼ବାଃ ୩୬।
ଷାଡ଼ବୌଡ଼ବାଃ ୯୦ ଔଡ଼ବ ଷାଡ଼ବାଃ ୯୦ଔଡ଼ବୌଡ଼ବାଃ୨୨୫
ଏବଂ ସର୍ବେ ୪୮୪

ସମ୍ପୂର୍ଣ୍ଣ ସମ୍ପୂର୍ଣ୍ଣ ୧ ସମ୍ପୂର୍ଣ୍ଣ ଷାଡ଼ବ ୬ ସମ୍ପୂର୍ଣ୍ଣ ଓଡ଼ବ ୧୫ ଷାଡ଼ବ ସମ୍ପୂର୍ଣ୍ଣ ୬ ଓଡ଼ବ ୧୫ ଷାଡ଼ବ ଷାଡ଼ବ ୩୬ ଷାଡ଼ବ ଓଡ଼ବ ୯୦ ଓଡ଼ବ ଓଡ଼ବ ୨୨୫- ଏହି ସମସ୍ତ ୪୮୪

## ମେଳପ୍ରସ୍ତାରଃ

ସରିଗମପଧନୀତି ସଂଗୀତେ ମେଳ ଇରିତଃ।
ପର୍ଯ୍ୟୟୋ ମୂର୍ଚ୍ଛନାୟାଃ ସ୍ୟାଦ୍ ସଦ୍ଭୁତୋ ଲକ୍ଷ୍ୟବର୍ତ୍ମନି ॥ ୧୨ ॥
ସରିଗମସ୍ୱରୋପେତଂ ମେଳେ ପୂର୍ବାଂଶମାପ୍ତିତମ୍।
ପଧନିସସ୍ୱରାଣ୍ଡାଥ ସମ୍ଭବତ୍ୟୁତ୍ତରାଙ୍ଗକମ୍ ॥ ୧୩ ॥

'ସରିଗମପଧନି'ରୁ ସଙ୍ଗୀତରେ ମେଳ ହେବା କୁହାଯାଇଅଛି। ମୂର୍ଚ୍ଛନାରୁ ପର୍ଯ୍ୟାୟ ହୁଏ- ଏହା ଲକ୍ଷ୍ୟ-ମାର୍ଗରେ ଦେଖାଯାଏ। ସରିଗମ ସ୍ୱରରୁ ପୂର୍ବାଂଶ ବା ପୂର୍ବାଙ୍ଗ ଓ ପଧନିସ ସ୍ୱରରୁ ଉତ୍ତରାଙ୍ଗ ହୁଏ।

## ଉତ୍କଳୀୟମତେ ସ୍ୱରସ୍ଥିତିଃ

ପୂର୍ବାଂଶେ କୋମଳୌ ଜ୍ଞେୟୌ ସ୍ୱରୌ ରିଗୌ ତଥୈବ ଚ।
ଉତ୍ତରାଂଶେ ନିଧୌ ଜ୍ଞେୟୌ ରାଗାବୟବସଂସ୍ଥିତୌ ॥ ୧୪ ॥

ପୂର୍ବାଂଶେ ତ୍ରଚଳୌ ଶିଷ୍ଟୌ ସ୍ୱରୌ ତୌ ଷଡ୍‌ଜ-ମଧମୌ।
ପଞ୍ଚୌ ତଥୋତ୍ତରାଂଗେ ତୌ ନିଶ୍ଚଳୌ ଲକ୍ଷିତୌ ପୁନଃ ।। ୧୫ ।।
ରିଗଧନିସ୍ୱରାଣାଂ ହି ବିକୃତିଭିଃ ସମୀରିତାଃ।
ପ୍ରସ୍ତାର-କ୍ରିୟାୟା ଲକ୍ଷ୍ୟେ ମୁଖ୍ୟତୋ ରାଗମେଳକାଃ ।। ୧୬ ।।
ମେଳାନୁସାରତସ୍ତତ୍ର ତ୍ରୈବିଧ୍ୟଂ ମୂର୍ଚ୍ଛନାସ୍ୱପି।
ସମାଦିଷ୍ଟଂ ତୁ ସୁସ୍ପଷ୍ଟଂ ରାଗୋତ୍‌ପାଦନହେତବେ ।। ୧୭ ।।
ସମାନସ୍ୱରମେଳେଽପି କେବଳଂ ମୂର୍ଚ୍ଛନାଭିଧା।
ରାଗଭେଦସମୁତ୍ପତ୍ତିଃ ସମ୍ଭବେଦିତି ପ୍ରସ୍ଫୁଟମ୍ ।। ୧୮ ।।
ଲକ୍ଷ୍ୟେଧୁନା ତୁ ସର୍ବତ୍ର ରାଗମେଳନିରୂପଣମ୍।
ମୃଦୁତୀବ୍ରାଦିସଂଜ୍ଞାଭିଃ କ୍ରିୟତେ ଇତ୍ୟସଂଶୟମ୍ ।। ୧୯ ।।
ମୂର୍ଚ୍ଛନଂ ତୁ ସ୍ୱରସ୍ୟୈବ ଗମକାଦିକସଂ ଜ୍ଞିତମ୍।
ସ୍ୱୀକୃତଂ ଲକ୍ଷ୍ୟସଂମତ୍ୟାଂ ଶ୍ରୋତୃତୁଷ୍ଟିତ୍ତାନୁରଂଜନମ୍ ।। ୨୦ ।।
ସପ୍ତସ୍ୱରସମୂହାତ୍ମା ନିତ୍ୟଂମେଳ ଇତୀରିତଃ।
ଷାଡ଼ବୌଡ଼ବସମ୍ପୂର୍ଣ୍ଣାଃ ସତତଂ ରାଗ ହେତୁକାଃ ।। ୨୧ ।।
ଉତ୍କଳୀୟାୟାଂ ପଦ୍ଧତ୍ୟାଂ ମାର୍ଗା ସ୍ତ୍ୟୁରପରା ଅପି।
ଲକ୍ଷ୍ୟବିଭିଃ ସମାଦିଷ୍ଟା ରାଗୋତ୍ପାଦନହେତବେ ।। ୨୨ ।।
ପ୍ରାରୋହେ ସଂପ୍ରଯୁକ୍ତାସ୍ତେ ସ୍ୱରା ନ ସ୍ୟୁର୍ବିଲୋମକେ।
ଅଥବା ତଦ୍ୱିପର୍ଯାସୋ ଜନୟେଦ୍ରାଗଭେଦକମ୍ ।। ୨୩ ।।
ରାଗୋଚିତସ୍ୱରେଷ୍ୱୁ ସ୍ୟାଦ୍ୱିଶିଷ୍ଟା ବକ୍ରତା କ୍ୱଚିତ୍।
ସମାନ ସ୍ୱରପଂକ୍ତୌ ବା ବାଦୀ ଭେଦାଦ୍‌ଭବେଭିଦା ।। ୨୪ ।।
ନ ରାଗାଣାଂ ନ ତାଳାନାମନ୍ତଃ କୁତ୍ରାପି ବିଦ୍ୟତେ।
ଇତି ଯଚ୍ଛୂୟତେ ଲୋକେ କେବଳଂ ସତ୍ୟମେବ ତତ୍ ।। ୨୫ ।।

ପୂର୍ବାଂଶରେ ରି.ଗ. କୋମଳ ହୁଏ। ଉତ୍ତରାଂଶରେ ନି.ଧ. କୋମଳ ହୁଏ। ପୂର୍ବାଂଶରେ ସ.ମ.-ସ୍ୱରସ୍ଥିର ହୁଏ, ଉତ୍ତରାଂଶରେ ପ. ସ-ସ୍ୱର ନିଶ୍ଚଳ ହୁଏ। ରି.ଗ.ଧ.ନି ସ୍ୱର ବିକୃତ ହୁଅନ୍ତି। ପ୍ରସ୍ତାର କ୍ରିୟାରେ ରାଗ ମେଳରେ ମୁଖ୍ୟରୂପେ ଏହା ଦେଖାଯାଏ। ମେଳ ଅନୁସାରେ ମୂର୍ଚ୍ଛନାରୁ ପରିଷ୍କାର ଭାବେ ତିନିପ୍ରକାର ରାଗର ଉତ୍ପାଦନ ନିମିତ୍ତ ଜାତି ତ୍ରିବିଧ, ସମାନ ସ୍ୱର ମେଳରୁ ମୂର୍ଚ୍ଛନା ହୁଏ। ମୂର୍ଚ୍ଛନାରୁ ରାଗ ଭେଦ ହୁଏ। ସେହି ସମସ୍ତଙ୍କୁ ଲକ୍ଷ୍ୟରଖି ରାଗ ମେଳ ନିରୂପଣ ହୋଇଅଛି। ତାହା କୋମଳ ତୀବ୍ର ଆଦି ସ୍ୱର ସଂଜ୍ଞାରୁ ହୁଏ। ସ୍ୱରର ଗମକାଦିକୁ ମୂର୍ଚ୍ଛନା କହନ୍ତି। ସର୍ବ ସମ୍ମତ ହୋଇ ଏହା ଶ୍ରୋତାର ମନକୁ ରଞ୍ଜାଏ। ସପ୍ତ ସ୍ୱର ସମୂହରୁ ମେଳ ହୁଏ। ଷାଡ଼ବ ଔଡ଼ବ ସମ୍ପୂର୍ଣ୍ଣ ଦ୍ୱାରା ରାଗ ଉତ୍ପନ୍ନ ହୁଏ। ଉତ୍କଳୀୟ ପଦ୍ଧତିରେ ଅପର ମାର୍ଗମାନେ ମଧ ରାଗ ଉତ୍ପାଦନ ନିମିତ୍ତ ସଙ୍ଗୀତଜ୍ଞଙ୍କଦ୍ୱାରା କଥିତ ହୋଇଅଛି। ଆରୋହଣରେ (ବିଲୋମରେ) ସେହି ସ୍ୱରମାନେ ପ୍ରଯୁକ୍ତ ହେବେନାହିଁ ଅଥବା ତାହାର ବିପରୀତ ହେଲେ ରାଗ ଭେଦ ଜନ୍ମାଏ। ରାଗବି ତ ସ୍ୱରମାନଙ୍କରେ କ୍ୱଚିତ୍ ବିମିଷ୍ଟ ବକ୍ରତା ହୁଏ। ସମାସ ସ୍ୱର ପଂକ୍ତିରେ ବାଦୀ ଭେଦରୁ ଭେଦ ହୁଏ। ରାଗମାନଙ୍କର ତାଳମାନଙ୍କର ଶେଷ ମଧ କେଉଁଟାରେ ନାହିଁ ଯାହା ଲୋକରେ ଶୁଣାଯାଏ ତାହା କେବଳ ସତ୍ୟ ଅଟେ।

### ଉତ୍କଳୀୟମତେ ମେଳନିରୂପଣମ୍

ଯଦ୍ୟପ୍ୟେତାବତୀ ସଂଖ୍ୟା ମେଳାନାଂ ଶାସ୍ତ୍ରସଂମତା।
ବ୍ୟବହାରେ ନ ତେ ସର୍ବେ ପ୍ରତୀତା ଇତି ସଂମତମ୍॥ ୨୬॥

ପ୍ରସିଦ୍ଧା ପୁନରେତେଷୁ ମେଳାଃ କରିଚିଦେବ ହି ।
ଦୃଶ୍ୟନ୍ତେ ନତୁ ସର୍ବେଽପି ତେନ ତଦ୍ କଳ୍ପନଂ ବୃଥା ।। ୨୭ ।।
ତଥାପି ନ ରଂଜକାସ୍ତେ ସର୍ବେ ଲୋକେ ସମଂତତଃ ।
ପ୍ରସିଦ୍ଧା ପୁନରେତେଷୁ ରାଗାଃ କତିଚିଦେବ ହି ।। ୨୮ ।।
ଅତସ୍ତେଷୁ ପରିତ୍ୟଜ୍ୟ ସର୍ବାନ୍ ସ୍ଥାନପ୍ରସିଦ୍ଧକାନ୍ ।
ଦିଙ୍‌ମାତ୍ରାନେବ ସ୍ୱୀକୁର୍ମୋ ଲକ୍ଷ୍ୟମାର୍ଗୋପଯୋଗିନଃ ।। ୨୯ ।।

ଯଦି ମେଳମାନଙ୍କ ଏତେ ସଂଖ୍ୟା ଶାସ୍ତ୍ରମାନଙ୍କ ମତରେ କଥିତ ବ୍ୟବହାରରେ କିନ୍ତୁ ସେସବୁ ଦେଖାଯାଏ ନାହିଁ । ଏହା ଲୋକମାନଙ୍କ ମତ । ସେମାନଙ୍କ ମଧ୍ୟରେ ପୁଣି କେତେକ ପ୍ରସିଦ୍ଧ ଅଟନ୍ତି । ସେସବୁ ଦେଖାଯାଉ ନ ଥିବାରୁ ସେପରି କଳ୍ପନା ବୃଥା । ତଥାଚ ସଂସାରରେ ସେ ସବୁ ସମଭାଗରେ ରଞ୍ଜକ ନୁହନ୍ତି । ପୁଣି ଏମାନଙ୍କ ମଧ୍ୟରେ କେତେକ କେବଳ ପ୍ରସିଦ୍ଧ । ଏଣୁ ସେମାନଙ୍କ ମଧ୍ୟରେ ଯେ ସବୁ ସ୍ଥାନମାନଙ୍କରେ ପ୍ରସିଦ୍ଧ । ତାକୁ ଛାଡି ଲକ୍ଷ୍ୟମାର୍ଗରେ ଉପଯୋଗୀ କେତେକ ମାତ୍ର ସ୍ୱୀକାର କରୁଅଛୁଁ ।

ଉତ୍କଳୀୟମତେ ମେଳସଂସ୍ଥାନମ୍

ସରିଗମପଧାଖ୍ୟେଷୁ ଶୁଦ୍ଧସ୍ୱରେଷୁ କେବଳମ୍ ।
ପ୍ରତ୍ୟେକଂ ଷଡ୍‌ଜଭାବନ କଳ୍ପିତେଷୁ ଯଥାକ୍ରମମ୍ ।। ୩୦ ।।
ନଟରାଗଧନାଶ୍ରୀଭୈରବୀକଲ୍ୟାଣସଂଜ୍ଞକାଃ ।
ଶ୍ରୀରାଗ କର୍ଣ୍ଣାଟସ୍ତୈତେ ଷଣ୍ମେଳାଃ ସିଦ୍ଧିମାପ୍ନୟୁଃ ।। ୩୧ ।।
ଶୁଦ୍ଧବିକୃତଭିଦ୍ୱାରା ଚୈତେଷୁ ସ୍ୟାସ୍ତପାଟବମ୍ ।
ସମାବେଶୟିତୁଂ ଶକ୍ୟମସ୍ମତ୍ସଂଗୀତମୁତ୍ତମମ୍ ।। ୩୨ ।।

କଳ୍ପିତ ସରିଗମପଧ ଶୁଦ୍ଧ ସ୍ୱରମାନଙ୍କର କେବଳ ପ୍ରତ୍ୟେକକୁ ଷଡ୍‌ଜ ଭାବରେ ଯଥାକ୍ରମରେ ନଟ, ଧନାଶ୍ରୀ, ଭୈରବୀ, କଲ୍ୟାଣ,

ଶ୍ରୀରାଗ, **କର୍ଣ୍ଣାଟ**, **ଏହି ଛଅ** ଗୋଟି ମେଳ ପ୍ରସିଦ୍ଧ। ଶୁଦ୍ଧ ବିକୃତ ଭେଦଦ୍ୱାରା ଏମାନଙ୍କ ମଧ୍ୟରେ ପଟୁତା ହୁଏ। ଏହା ସମାବେଶ କରିବାକୁ ହେବ। ଏଣୁ ଏହି ସଂଗୀତ ଉତ୍ତମ ଅଟେ।

**ଉତ୍କଳୀୟଦଶମେଳଲକ୍ଷଣମ୍**

ଅଥୋ ବକ୍ଷ୍ୟେ **କ୍ରମାନ୍ମେଳାନ୍** ଦଶସଂଖ୍ୟାନ୍ ସଲକ୍ଷଣମ୍।
ଅତ୍ର ସଙ୍ଗୀତଗ୍ରନ୍ଥାନାଂ **ଜୀବଭୂତାଂଶ୍ଚ** ତତ୍ତ୍ୱତଃ ।। ୩୩ ।।
ଶୁଦ୍ଧସ୍ୱରସମୁଦ୍ଭୂତୋ **ନଟମେଳକ**ନାମକଃ।
**କାର୍ଣ୍ଣାଟକୀମତେ ଚାସୌ ଶଙ୍କରାଭରଣାଭିଧଃ ।। ୩୪ ।।**
**ହିନ୍ଦୁସ୍ଥାନୀୟପଦ୍ଧତ୍ୟାଂ କେଦାବଳୀ ଇତୀରିତଃ।**
ତସ୍ମିଂସ୍ତୀବ୍ରାଭିଧୋ **ମସ୍ତେଦ୍** ପ୍ରବିଷ୍ଟୋ ଲକ୍ଷ୍ୟବର୍ତ୍ମନି ।।୩୫ ।।
ଶେଷଶୁଦ୍ଧସ୍ୱରୈସ୍ତତ୍ର **କଲ୍ୟାଣୀ**ମେଳ ଉଦ୍ଭବେତ୍।
ଶ୍ରୀରାଗମେଳକେ ପ୍ରୋକ୍ତାଃ ଶୁଦ୍ଧାଃ ସରିଗମାଃ ପଧୌ ।। ୩୬ ।।
ଶୁଦ୍ଧୋ ନିଃ କୋମଳାଖ୍ୟଃ ସ୍ୟାଦିତି ଲକ୍ଷ୍ୟଜ୍ଞସଂମତମ୍।
ଗୌର୍ଯ୍ୟାଖ୍ୟେ ସୁମେଳେ ସ୍ୟୁ ଶୁଦ୍ଧାଃ ସଗମପସ୍ତଥା ।।୩୭ ।।
ନିଷାଦୋଽପି **ଭବେଚ୍ଛୁଦ୍ଧୋ** ରିଧୌ କୋମଳସଂଜ୍ଞିତୌ।
ରିଧୌ ତୁ କୋମଳୋ ଯତ୍ର ଗନିତୀବ୍ରୌ ଚ ତୀବ୍ରୋ ମଃ ।। ୩୮ ।।
ବରାଡ଼ିନାମକୋ **ମେଳଃ** ପଞ୍ଚମୋ କଥ୍ୟତେଽଧୁନା।
ଉପର୍ଯ୍ୟୁକ୍ତେ ତୁ ମେଳେ ଚେଦ୍ଧୈବତଃ ଶୁଦ୍ଧସଞ୍ଜିତଃ ।। ୩୯ ।।
ପଞ୍ଚମମେଳକଃ **ସିନ୍ଧୁ** ପରମେଳପ୍ରବେଶକଃ।
ନିଗୌ ତୁ କୌମଳୌ ଯତ୍ର ପରେ ଶୁଦ୍ଧାଭିଧାଃ ସ୍ୱରାଃ ।। ୪୦ ।।
ଲକ୍ଷ୍ୟେ ଧନାଶ୍ରୀସଂଜ୍ଞ ସ୍ୟାନ୍ମେଳକୋ ଲୋକବିଶ୍ରୁତଃ।
କୋମଳା ନିଧଗା ଯତ୍ର ଶେଷାସ୍ତେ ଶୁଦ୍ଧସଂଜ୍ଞିତାଃ ।।୪୧ ।।
ତସ୍ମିନ୍ କର୍ଣ୍ଣାଟୋ ମେଳଶ୍ଚ କୀର୍ତ୍ତିତୋ ଗାୟନୋତ୍ତମୈଃ।

ଭୈରବୀ ନାମକମେଳେ ମୃଦୁରିଗଧନିସ୍ୱରାଃ ।। ୪୨ ।।
ମନ୍ୟୋସ୍ତନ୍ତ୍ରେବ ତୀବ୍ରତ୍ୱେ ମେଳଃ ଶୋବରାଡ଼ିଃ ସ୍ୟାତ୍ ।
ଇତ୍ୟେତେ ଦଶ ସଂପ୍ରୋକ୍ତା ଲକ୍ଷ୍ୟ ଲକ୍ଷଣ ସଂମତାଃ ।
ସବିସ୍ତରମଥୋ ମେଳା ରାଗୋତ୍ପାଦନହେତବଃ ।। ୪୩ ।।

ଏହାପରେ ଲକ୍ଷଣ ସହ କ୍ରମାନ୍ୱୟରେ ଦଶସଂଖ୍ୟକ ମେଳମାନଙ୍କୁ କହୁଅଛୁ । ପ୍ରକୃତରେ ସଙ୍ଗୀତ ଗ୍ରନ୍ଥମାନଙ୍କର ଏହା ପ୍ରାଣ ସ୍ୱରୂପ । ଶୁଦ୍ଧ ସ୍ୱରମାନଙ୍କରୁ ନଟମେଳ ଜାତ । କର୍ଣ୍ଣାଟ ମତରେ ଶଙ୍କରାଭରଣ ଓ ହିନ୍ଦୁସ୍ଥାନୀୟ ପଦ୍ଧତିରେ ବେଲାବଲୀ ନାମରେ ଏହା କଥିତ । ଏହି ନଟମେଳରେ ମ-ସ୍ୱରକୁ ତୀବ୍ର କରି ଲକ୍ଷ୍ୟମାର୍ଗରେ ପ୍ରବେଶ କଲେ ତହିଁ ଶୁଦ୍ଧ ସ୍ୱରମାନଙ୍କ ସହ କଲ୍ୟାଣ-ମେଳ ଜାତହୁଏ । ଶ୍ରୀ ରାଗ ମେଳରେ ସରିଗମପଧ ଶୁଦ୍ଧ କଥିତ, ଶୁଦ୍ଧ ନି କୋମଳ ହୁଏ ବୋଲି ସଙ୍ଗୀତଜ୍ଞଙ୍କ ମତ । ଗୌରୀ-ମେଳରେ ସ, ଗ, ମ, ପ, ନି ଶୁଦ୍ଧ ଓ ରି, ଧ କୋମଳ ହୁଏ । ଯେଉଁଠାରେ ରି-ଧ କୋମଳ ସ, ନି, ମ ତୀବ୍ର ହେଲେ ବରାଡି ନାମ ମେଳ ହୁଏ । କିନ୍ତୁ ବର୍ତ୍ତମାନ ପଞ୍ଚମ କଥା କୁହାହେଉଅଛି । ଉପଯୁକ୍ତ ମେଳରେ (ଅର୍ଥାତ୍ ବରାଡି-ମେଳରେ) ଧୈବତ ଶୁଦ୍ଧ ହେଲେ ପଞ୍ଚମ ମେଳକ ସିଦ୍ଧ ହେବ; ଏହାପରେ ମେଳ ପ୍ରବେଶ କରେ । ଯେଉଁଠାରେ ନି, ଗ କୋମଳ ଅନ୍ୟ ସ୍ୱରସବୁ ଶୁଦ୍ଧ, ଲକ୍ଷ୍ୟମାର୍ଗରେ ଧନାଶ୍ରୀ ବୋଲାଇ ମେଳକରେ ପ୍ରସିଦ୍ଧ ଅଟେ । ଯେଉଁଠାରେ ନି-ଧ-ଗ କୋମଳ ଅନ୍ୟ ସ୍ୱରସବୁ ଶୁଦ୍ଧ ହୁଏ କର୍ଣ୍ଣାଟ ମେଳ ବୋଲି ଶ୍ରେଷ୍ଠ ଗାୟକଙ୍କ ଦ୍ୱାରା କଥିତ । ଭୈରବୀ ନାମ ମେଳରେ ରି-ଗ-ଧ-ନି ସ୍ୱରମାନେ କୋମଳ ହୁଅନ୍ତି । ତହିଁରେ ମ ଓ ନି

ତୀବ୍ର ହେଲେ ଶୋକ-ବିରାଡି ମେଳ ହୁଏ। ଏହି ସବୁ ଦଶମେଳ କଥିତ ହେଲା, ଲକ୍ଷ୍ୟ ଲକ୍ଷଣରେ ସମ୍ମତ, ଏଥୁଁ ବହୁଳ ଭାବରେ ରାଗମାନଙ୍କର ଉତ୍ପାଦନର କାରଣ ମେଳମାନେ ଅଟନ୍ତି।

## ଉତ୍କଳୀୟମେଳାନାଂ ହିନ୍ଦୁସ୍ଥାନୀକର୍ଣ୍ଣାଟକୀନାମାନାଂ ଚ ସ୍ୱରପରିଚୟଃ

| | ଉତ୍କଳୀୟ ନାମାନି | ହିନ୍ଦୁସ୍ଥାନୀ ନାମାନି | କର୍ଣ୍ଣାଟକି ନାମାନି | ସ୍ୱରାଃ |
|---|---|---|---|---|
| ୧. | କଲ୍ୟାଣ | କଲ୍ୟାଣ | କଲ୍ୟାଣ | ସ-ରି-ଗ-ମ-ପ-ଧ-ନି |
| ୨. | ନଟ | ବେଲାବଲ | ଶଙ୍କରାଭରଣ | ସ-ରି-ଗ-ମ-ପ-ଧ-ନି |
| ୩. | ଶ୍ରୀରାଗ | ଖମ୍ବଜ | କାମ୍ବୋଜୀ | ସ-ରି-ଗ-ମ-ପ-ଧ-ନି |
| ୪. | ଗୌରୀ | ଭୈରବ | ମଳବଗୌଡ଼ା | ସ-ରି-ଗ-ମ-ପ-ଧ-ନି |
| ୫. | ବରାଡ଼ି | ପୂର୍ବୀ | କାମବର୍ଦ୍ଧନୀ | ସ-ରି-ଗ-ମ-ପ-ଧ-ନି |
| ୬. | ପଞ୍ଚମ | ମାରୁଥା | ଗମନାଶ୍ରମ | ସ-ରି-ଗ-ମ-ପ-ଧ-ନି |
| ୭. | ଧନାଶ୍ରୀ | କାଫି | ଖରହରପ୍ରିୟା | ସ-ରି-ଗ-ମ-ପ-ଧ-ନି |
| ୮. | କର୍ଣ୍ଣାଟ | ଆଶାବରୀ | ନଟଭୈରବୀ | ସ-ରି-ଗ-ମ-ପ-ଧ-ନି |
| ୯. | ଭୈରବୀ | ଭୈରବୀ | ତୋଡ଼ି | ସ-ରି-ଗ-ମ-ପ-ଧ-ନି |
| ୧୦. | ଶୋକ ବରାଡ଼ି | ତୋଡ଼ି | ମରାଳି | ସ-ରି-ଗ-ମ-ପ-ଧ-ନି |

## ଜନକରାଗନାମାନି

### କଲ୍ୟାଣମେଳଃ

ଯମନ କଲ୍ୟାଣ କଲ୍ୟାଣ କେଦାର ଖଣ୍ଡକାମୋଦୀ।
କାମୋଦୀ ମାଳଶ୍ରୀ ଚୈବ ରାଜବିଜେ ଜୟଦ୍‌କଳା।
ଶ୍ୟାମ କଲ୍ୟାଣ ଇତ୍ୟେତେ କଲ୍ୟାଣମେଳଜା ମତାଃ ।। ୪୪ ।।

କଲ୍ୟାଣ ମେଳରୁ ୟମନ କଲ୍ୟାଣ, କଲ୍ୟାଣ, କେଦାର, ଖଣ୍ଡ-କାମୋଦୀ, କାମୋଦୀ, ମାଳଶ୍ରୀ, ରାଗଛବି, ଛୟତ୍‌କଳା, ଶ୍ୟାମ କଲ୍ୟାଣୀ ପ୍ରଭୃତି ଜାତ ହୁଅନ୍ତି ।

ନଟମେଳଃ

**ଆନନ୍ଦାରଭୀ କେଦାରଃ ଗୁଣ୍ଡକିରୀ କୋଳାହଳଃ ।**
**ନଟ ପାହାଡ଼ି ଭୂପାଲୋ ପଟ୍ଟମଞ୍ଜରୀ ବସନ୍ତଃ ।। ୪୫ ।।**
**ବସନ୍ତ ବରାଡ଼ିଶ୍ଚୈବ ବିଲାହୁରି ବେହାଗଡ଼ା ।**
**ବେହାଗୋ ବେଲାବଳୀ ଚୈବ ଶଙ୍କରାଭରଣ ଏବ ଚ ।**
**ଇତ୍ୟେତେ କଥିତା ରାଗା ନଟମେଳେ ସମୁଦ୍‌ଥିତାଃ ।। ୪୬ ।।**

ଆନନ୍ଦ, ଆରଭି, କେଦାର, ଗୁଣ୍ଡକିରୀ, କୋଳାହଳ, ନଟ, ପାହାଡ଼ି, ଭୂପାଳ, ପଟ୍ଟମଞ୍ଜରୀ, ବସନ୍ତ, ବସନ୍ତ-ବରାଡ଼ି, ବିଲାହୁରି, ବେହାଗଡ଼, ବେହାଗ ବେଲାବଳୀ, ଶଙ୍କରାଭରଣ ପ୍ରଭୃତି ନଟମେଳରୁ ଉତ୍ପନ୍ନ ହୁଅନ୍ତି ।

ଶ୍ରୀରାଗମେଳଃ

**କେଦାରଗୌଡ଼ା କୁମଞ୍ଜ, ଖମ୍ବାଜଗୌଡ଼କାନଡ଼ାଃ ।**
**ଜୟଜୟନ୍ତୀ ଝିଂଝୋଟି ଦ୍ରାବିଡ଼ ନଳିନୀ ଗୌଡ଼ାଃ ।। ୪୭ ।।**
**ମୋହନା ଶ୍ରୀରାଗଃ ସୁରଟୋ ଦେଶମଲ୍ଲାରସ୍ତଥା ।**
**ନାଟକୁରଙ୍ଗୀ ଇତ୍ୟେତେ ରାଗାଃ ଶ୍ରୀରାଗମେଳଜାଃ ।। ୪୮ ।।**

କେଦାର-ଗୌଡ଼ା, କୁମଞ୍ଜ, ଖମ୍ବାଜ, ଗୌଡ଼, କାନଡ଼ା, ଜୟ-ଜୟନ୍ତୀ, ଝିଂଝୋଟି, ଦ୍ରାବିଡ଼, ନଳିନୀଗୌଡ଼ା, ମୋହନା ଶ୍ରୀରାଗ, ସୁରଟ, ଦେଶମଲ୍ଲାର, ନାଟକୁରଙ୍ଗୀ ପ୍ରଭୃତି ଶ୍ରୀରାଗମେଳରୁ ଜାତ ହୁଅନ୍ତି ।

### ଗୌରୀମେଳଃ

ଆନନ୍ଦଭୈରବଶ୍ଚୈବ ଆଶାବରୀ, କାଲେଂଗଡ଼ା ।
ଗୁର୍ଜ୍ଜରୀ-ଗୌରୀ ଗୌଳଶ୍ଚ ଗୁଣ୍ଡକିରୀ ତଥୈବ ଚ ॥୪୯ ॥
ବିଭାସ ପାହାଡ଼ୀ ପୂର୍ବୀ ବସନ୍ତଭୈରବାପର୍ଜା ।
ମାଳବଗୌଡ଼ା ଭୂପାଳ ଭୈରବ ବଙ୍ଗଳା ତଥା ॥ ୫୦ ॥
ମଙ୍ଗଳ ରାମକିରୀ ଚ ସୌରାଷ୍ଟ୍ର ସାବେରୀ ମତା ।
ବଙ୍ଗଳାଶ୍ରୀ ମାଳବ ଚ ପ୍ରସିଦ୍ଧା ଗୌରୀ ମେଳଜାଃ ॥ ୫୧ ॥

ଆନନ୍ଦଭୈରବ, ଆଶାବାରୀ, କଲେଙ୍ଗଡ଼ା, ଗୁର୍ଜ୍ଜରୀ, ଗୌରୀ ଗୌଳ, ଗୁଣ୍ଡକିରୀ, ବିଭାସ, ପାହାଡ଼ୀ, ପର୍ବୀ, ବସନ୍ତ-ଭୈରବ, ପରଜ, ମାଳବଗୌଡ଼ା, ଭୂପାଳ, ଭୈରବ, ବଙ୍ଗଳା, ମଙ୍ଗଳ, ରାମକିରୀ, ସୌରାଷ୍ଟ୍ର, ସାବେରୀ, ବଙ୍ଗଳାଶ୍ରୀ, ମାଳବ ପ୍ରଭୃତି ଗୌରୀମେଳରୁ ଜାତ ।

### ବରାଡ଼ିମେଳଃ

ଜୟନ୍ତ ବରାଡ଼ି ପରଜ ପୂରବୀ ବସନ୍ତ ବିଭାସାଃ ।
ମାଳଶ୍ରୀ ପଞ୍ଚମାଃ ରେଗୁପ୍ତା କରୁଣାଶ୍ରୀସ୍ତଥା ।
ଇତ୍ୟେତେ କୀର୍ତ୍ତିତା ଲକ୍ଷ୍ୟେ ରାଗା ବରାଡ଼ିମେଳଜାଃ ॥ ୫୨ ॥

ଜୟନ୍ତ ବରାଡ଼ି, ପରଜ, ପୂରବୀ, ବସନ୍ତ, ବିଭାସ, ମାଳଶ୍ରୀ, ପଞ୍ଚମ, ରେଗୁପ୍ତ, କରୁଣା-ଶ୍ରୀ ଏସବୁ ବରାଡ଼ି-ମେଳରୁ ଜାତ ।

### ପଞ୍ଚମମେଳଃ

ପଞ୍ଚମବରାଡିରାଗଃ କୋଳାହଳଶ୍ଚ ପଞ୍ଚମଃ ।
ପୂରବୀ ବସନ୍ତ ବିଭାସ ଭାଟିଆରୀ ତଥୈବଚ ॥ ୫୩ ॥

**ଜୟନ୍ତ ପୁନ୍ନାଗ ମାର୍ବା ଲଳିତ ପୁରୀକଲ୍ୟାଣାଃ ।**
**ଇତ୍ୟେତେ କୀର୍ତ୍ତିତା ରାଗା ଜାତା ପଞ୍ଚମମେଳକାଃ ॥ ୫୪ ॥**

ପଞ୍ଚମ ବରାଡି, କୋଳାହଳ, ପଞ୍ଚମ, ପୁରୀ ବସନ୍ତ, ବିଭାସ, ଭାଟିଆରୀ, ଜୟନ୍ତ, ପୁନ୍ନାଗ, ମାରବା, ଲଳିତ, ପୁରୀ କଲ୍ୟାଣ-ଏସବୁ ପଞ୍ଚମ-ମେଳରୁ ଜାତ ।

### ଧନାଶ୍ରୀମେଳଃ

**ଆହାରୀ କାଫି ମାଳଶ୍ରୀ କାନଡ଼ ଗୌଡ଼ା ଏବ ଚ ।**
**ଧନାଶ୍ରୀ ପିଲୁ ଦେଶାକ୍ଷଃ ପଟମଂଜରୀ ସୋମକଃ ॥ ୫୫ ॥**
**କଳହଂସ କଳହଂସକେଦାର ଜଙ୍ଗଲାସ୍ତଥା ।**
**ଖରହରପ୍ରିୟା ମୁଖାରୀ ମେଘ-ମହ୍ଲାର ମହ୍ଲାରାଃ ॥ ୫୬ ॥**
**ରାଜବିଜେ ଚ ସାରଙ୍ଗ ସିନ୍ଧୁରା ହୋସେନୀ ତଥା ।**
**ମାଳଶ୍ରୀ ସାହାନା ରାଗା ଜାତା ଧନାଶ୍ରୀମେଳକାଃ ॥ ୫୭ ॥**

ଆହାରୀ, କାଫି, ମାଳଶ୍ରୀ, କାନଡ଼ ଗୌଡ଼ା, ଧନାଶ୍ରୀ, ପିଲୁ, ଦେଶାକ୍ଷ, ପଟମଞ୍ଜରୀ, ସୋମ, କଳହଂସ, କଳହଂସ-କେଦାର, ଜଙ୍ଗଲା, ଖରହରପ୍ରିୟା, ମୁଖାରୀ, ମେଘମହ୍ଲାର, ମହ୍ଲାର, ରାଜବିଜେ, ସାରଙ୍ଗ, ସିନ୍ଧୁରା, ହୋସେନୀ, ମାଳଶ୍ରୀ, ସାହାନା ପ୍ରଭୃତି ଧନାଶ୍ରୀ ମେଳରୁ ଜାତ ।

### କର୍ଣ୍ଣାଟମେଳଃ

**ଆଶାବାରୀ ଚ କର୍ଣ୍ଣାଟୋ ଘଣ୍ଟାରବଶ୍ଚ କୌଶିକଃ ।**
**ଜୌନପୁରୀ ଚ ଭୈରବୀ ବସନ୍ତ ବରାଡ଼ି ତଥା ।**
**ଆନନ୍ଦ ଭୈରବୀ ରାଗା ଜାତା କର୍ଣ୍ଣାଟ-ମେଳକାଃ ॥ ୫୮ ॥**

ଆଶାବରୀ, କର୍ଣ୍ଣାଟ, ଘଣ୍ଟାରବ, କୌଶିକ, କୌନପୁରୀ, ଭୈରବୀ, ବସନ୍ତବିରାଡ଼ି, ଆନନ୍ଦଭୈରବୀ ପ୍ରଭୃତି କର୍ଣ୍ଣାଟ-ମେଳରୁ ଜାତ ଅଟନ୍ତି।

ଭୈରବୀମେଳଃ

ଆନନ୍ଦଭୈରବୀ ତୋଡ଼ି ଭୂପାଳାହାରୀ ଏବ ଚ।
ଭୈରବୀମୁଖାରୀ ଧନାଶ୍ରୀ ତକ୍କୁସରଷ୍ଟଥୈବ ଚ।
ଇତ୍ୟେତେ କୀର୍ତ୍ତିତା ଲକ୍ଷ୍ୟେ ରାଗା ଭୈରବୀମେଳକାଃ॥ ୫୯ ॥

ଆନନ୍ଦଭୈରବୀ-ତୋଡ଼ି ଭୂପାଳ, ଆହାରି ଭୈରବୀ ଅର୍ଥ ମୁଖାରୀ, ଧାନଶ୍ରୀ ତୁକ୍କୁସର ଏସବୁ ଭୈରବୀ ମେଳରୁ ଜାତ।

ଶୋକବରାଡ଼ୀମେଳ

ଗୁର୍ଜ୍ଜରୀ ତୋଡ଼ିପରଜ ତୋଡ଼ୀ, ଶୋକ-ବରାଡ଼ୀକଃ।
ବଙ୍ଗଳା ଇତ୍ୟେତେ ରାଗା ଶୋକ-ବରାଡ଼ୀ-ମେଳକାଃ ॥୬୦ ॥

ଗୁର୍ଜ୍ଜରୀ, ତୋଡ଼ିପରଜ, ତୋଡ଼ୀ, ଶୋକବରାଡ଼ୀ, ବଙ୍ଗଳା-ଏହି ରାଗମାନେ ଶୋକବରାଡ଼ୀ-ମେଳରୁ ଜାତ।

ତାନଶବ୍ଦବ୍ୟୁତ୍ପତ୍ତିଃ

ତନ୍ୟନ୍ତ ଇତି ତାନାଃ ସ୍ୟୁସ୍ତନୁବିସ୍ତାରଧାତୁନା।
ଇଦାନୀ ତୈବ ତାନାନାଂ ସମ୍ୟକ୍ ଲକ୍ଷଣମୁଚ୍ୟତେ ॥ ୬୧ ॥

ତନ୍ ଧାତୁର ବିସ୍ତାର ଅର୍ଥ ହେତୁ ଯାହା ବିସ୍ତୃତ ହୁଅନ୍ତି ସେସବୁ ତାନ ହୁଅନ୍ତି। ବର୍ତ୍ତମାନ ତାନମାନଙ୍କର ସମ୍ୟକ୍‌ଭାବରେ ଲକ୍ଷଣ କୁହାଯାଉଛି।

### ତାନମୂର୍ଚ୍ଛନୟୋର୍ଭେଦାଃ

**ଆରୋହାବରୋହକ୍ରମଯୁକ୍ତଃ ସ୍ୱରସମୁଦାୟୋ ମୂର୍ଚ୍ଛନେତ୍ୟୁଚ୍ୟତେ ତାନସ୍ତୁ ଆରୋହଣଂ ଭବତୀତି ଭେଦାଃ । -ମାତଙ୍ଗ**

କ୍ରମଯୁକ୍ତ ହୋଇ ଆରୋହ ଓ ଅବରୋହରେ ସ୍ୱର ସମୂହର ମୂର୍ଚ୍ଛନା ହୁଏ । ତାନ କେବଳ ଆରୋହଣରେ ହୁଏ; ଏହି ମାତ୍ର ଭେଦ ।

### ତାନଭେଦାଃ

**ତାନୋ ଦ୍ୱିଧା ଶୁଦ୍ଧତାନଃ କୂଟତାନ ଇତି କ୍ରମାତ୍ ।**
**ଏକୈକରାଗମାତ୍ରାଭିର୍ବ୍ୟକ୍ତି ସଂପାଦକସ୍ତୁ ଯଃ ।। ୬୨ ।।**
**ସ ଶୁଦ୍ଧ ତାନ ଇତ୍ୟୁକ୍ତଃ କୂଟତାନଃ ସ ଉଚ୍ୟତେ ।**
**ଯସ୍ତୁ ରାଗଦ୍ୱୟସ୍ଫୂର୍ତ୍ତିଃ ସାଧାରଣତୟା ସ୍ଥିତଃ ।। ୬୩ ।।**
**ଅଥ ତାନପ୍ରଭେଦାନାଂ ସଂହତି କଥ୍ୟତେଽଧୁନା ।**
**ପଲ୍ଲବେନ ଯୁତସ୍ତାନୋ ଯୋଗ ଇତ୍ୟଭିଧୀୟତେ ।। ୬୪ ।।**
**ଏକସ୍ୱରାଦିତାନାନାଂ ଯୋଗାନ୍ ବ୍ରବୀମି ତାନ୍ ଶୃଣୁ ।**
**କୃତଜ୍ଞା ଦୃଢ଼ଚିତ୍ତେନ ତାନ୍ ସର୍ବାନବଧାରୟ ।। ୬୫ ।।**

ଶୁଦ୍ଧ ଓ କୂଟ ତାନ-ଭେଦରେ କ୍ରମଶଃ ତାନ ଦ୍ୱିବିଧ । ମାତ୍ରାମାନଙ୍କ ଦ୍ୱାରା ଯେ ଏକ ଏକ ରାଗ ପ୍ରକାଶ କରେ, ତାହାକୁ ଶୁଦ୍ଧ ତାନ କହନ୍ତି । ସାଧାରଣଭାବରେ ଥାଇ ଦୁଇଗୋଟି ରାଗର ଏକତ୍ର ପ୍ରକାଶକୁ କୂଟ ତାନ କହନ୍ତି । ତାନଭେଦର ଯୋଗ କୁହାଯାଉଅଛି । ପଲ୍ଲବରେ ତାନଯୁକ୍ତ ହେଲେ ଯୋଗ କୁହାଯାଏ । ଏକ ସ୍ୱର ପ୍ରଭୃତି ତାନମାନଙ୍କର ଯୋଗମାନ କହୁଅଛି । ବର୍ତ୍ତମାନ ତାହା ଧୀର ଚିତ୍ତରେ ଯେଉଁମାନେ ଶାସ୍ତ୍ର ଜାଣିବାକୁ ଇଚ୍ଛା କରନ୍ତି, ସେମାନେ ତାହା ନିର୍ଣ୍ଣୟ କରନ୍ତୁ ।

### ଏକସ୍ୱରତାନବିବେକଃ

**ଯସ୍ୟ କସ୍ୟ ଚ ରାଗସ୍ୟ ବିସ୍ତାରୋଽୟଂକ୍ଷଣାଦ୍ ଭବେତ୍ ।**
**ସ ଇତି ପ୍ରଥମ ସ୍ଥାନେ ମରିସେନ ସମାଯୁତଃ ।। ୬୬ ।।**
**ଏକସ୍ୱରପ୍ରୟୋଗୋଽୟଂ ପ୍ରଥମଃ କଥିତୋ ମୟା ।**
**ଏକସ୍ୱରପ୍ରୟୋଗେ ତୁ ଗମକୋଽଗମକୋ ଦ୍ୱିଧା ।। ୬୭ ।।**
**ତତ୍‌ପୂର୍ବଗମକଂ ଚୋକ୍ତ୍ୱାଽଗମକଂ ତ୍ୱଧୁନୋଚ୍ୟତେ ।**
**ଷଡ୍‌ଜେ ଘର୍ଷଣସଂଯୋଗାତ୍ ସରିସେତି ଉଦାହୃତଃ ।। ୬୮ ।।**

ଯେକୌଣସି ରାଗର ଯେଉଁ କ୍ଷଣରେ ଏହି ବିସ୍ତାର ହୁଏ, ସ ପ୍ରଥମ ସ୍ଥାନରେ ରହିବ । ମ ଓ ରି.ସ. ରେ ଯୁକ୍ତ ହେବ । ଏହା ଏକ ସ୍ୱର-ପ୍ରୟୋଗ । ଏହା ପ୍ରଥମରେ କୁହାଯାଇଅଛି । ଗମକ, ଅଗମକ ରୂପେ ଏହା ଦ୍ୱିବିଧ । ପୂର୍ବେ ଗମକ କଥା କୁହାଯାଇ ଅଛି, ବର୍ତ୍ତମାନ ଅଗମକ କଥା କହୁଅଛୁ । ଷଡ୍‌ଜରେ ଘର୍ଷଣ ଯୋଗରୁ ସ.ରି.ସ ଏହା ଉଦାହୃତ ହୋଇଅଛି ।

### ଦ୍ୱିସ୍ୱରତାନ-ବିବେକଃ

ଦ୍ୱିସ୍ୱରଂ ତାନମାଦାୟ ଯୋଜୟେତ୍ ପଲ୍ଲବେ ନ ଚ ।
ସୋଽୟଂ ଭବେଦ୍ ସ.ମ.ରି. ସରି. ସ. ମେତି ଦ୍ୱିତୀୟକଃ ।। ୬୯ ।।
ଘର୍ଷଣେନ ସମାଯୁକ୍ତଃ ସ. ସ. ରି. ରି. ଇତିକ୍ରମାତ୍ ।
ଅନୁହତ୍ୟା ରିକାରଃ ସ୍ୟାତ୍ ଘର୍ଷଣେନ ଚ ସେନ ଚ ।। ୭୦ ।।
ରି. ସ. ପଲ୍ଲବସଂଯୁକ୍ତୋ ଦ୍ୱିତୀୟ କଥିତୋ ମୟା ।
ଏବଂ ତାନଦ୍ୱୟଂ ସାଧଂ ଭୂରିକର୍ମପ୍ରଭେଦତଃ ।। ୭୧ ।।

ଦ୍ୱିସ୍ୱରର ତାନକୁ ଗ୍ରହଣ କରି ପଲ୍ଲବରେ ଯୋଗ କରିବ, ସେ ହେବ ସ-ମରୀ ସରୀ ସମ ଏହା ଦ୍ୱିସ୍ୱର ବିଷୟ । ଘର୍ଷଣ

ଯୋଗରେ ସ-ସ-ରିରୀ ଏହି କ୍ରମରୁ ପଶ୍ଚାତ୍ ଗତିରେ ରୀ-କାର ହେବ। ସ ସଙ୍ଗରେ ଘର୍ଷଣ ଯୋଗୁଁ ରି ସ ସର ପଲ୍ଲବଯୋଗରେ ଦ୍ୱିତୀୟ ମୋଦ୍ୱାରା କଥିତ ହେଲା। ବହୁକମ୍ପ ପ୍ରୟୋଗ-ଭେଦରୁ ତାନଦ୍ୱୟ ସାଧ୍ୟ ହୁଏ।

ତ୍ରିସ୍ୱରତାନବିବେକଃ

ସ-ଗ-ରି-ତ୍ରିସ୍ୱରସ୍ତାନୋ ମରିସେନ ମୟୋଦିତଃ।
ତ୍ରିସ୍ୱରସ୍ଥ ପ୍ରୟୋଗ ଯୋ ଗମକେନ ଯୁତୋ ଯଦା ।। ୭୨ ।।
ସ ରି ଗ ଗ ରି ସେ ତ୍ୱେବଂ ଘର୍ଷଣେନ ଯୁତଃ କ୍ରମଃ।
ସ ରି ରି ଗ ଗ ସ୍ୱରୂପେଣ ସ ସ ରି ଗ ଗ ରି ସ ।। ୭୩ ।।
ଏବଂ ଗମକଭେଦେନ ଷଡ୍‌ଭେଦସ୍ତ୍ରିସ୍ୱରକ୍ରମଃ।
ନାନାରୂପପ୍ରଭେଦାସ୍ତେ ସାଧନୀୟା ବିଚକ୍ଷଣୈଃ ।। ୭୪ ।।

ସ-ଗ-ରୀ ଏହି ତ୍ରିସ୍ୱର ତାନ, ମରିସ ଯୋଗରେ ହୁଏ ବୋଲି ମୁଁ କହିଅଛି। ତ୍ରିସ୍ୱର ତାନ, ମରିସ ଯୋଗରେ ହୁଏ ବୋଲି ମୁଁ କହିଅଛି। ତ୍ରିସ୍ୱର ପ୍ରୟୋଗ, ଯାହା ଗମକରେ ଯୁକ୍ତ ହେଲେ ସରି ଗଗ ରିସ ହୁଏ। ଏହା ଏହିପରି ଘର୍ଷଣଯୁକ୍ତ ହେଲେ କ୍ରମଶଃ ସରୀ ରୀ ଗ ଗ ସ୍ୱରୂପରେ ସସରୀ ଗଗରୀସ-ଏହିପରି ଗମକଭେଦରେ ତ୍ରିସ୍ୱର ଷଡ୍‌ଭେଦ କ୍ରମରେ ହୁଏ। ନାନାରୂପରେ ଥିବା ପ୍ରଭେଦ ପଣ୍ଡିତଙ୍କଦ୍ୱାରା ସାଧନ କରାଯିବ।

ଚତୁଃସ୍ୱରତାନବିବେକଃ

ଚତୁଃସ୍ୱରପ୍ରଭେଦାସ୍ତେ ଚତୁର୍ବିଂଶତିସଂମ୍ଭବାଃ
ପୂର୍ବୋକ୍ତୈଶ୍ଚ କମ୍ପଭେଦୈରନନ୍ତାଃ ପ୍ରଭବନ୍ତି ତେ ।। ୭୫ ।।
ପଲ୍ଲବେନ ମରୀସେନ ରିସେନାପି କ୍ୱଚିତ୍ କ୍ୱଚିତ୍।
ଏବଂ ପଲ୍ଲବଭେଦେନ ତ୍ୱନନ୍ତାସ୍ତେ ଭବନ୍ତି ହି ।। ୭୬ ।।

ଚତୁଃସ୍ୱରତାନର ଚତୁର୍ବିଂଶତି ଭେଦ ହୁଏ। ପୂର୍ବୋକ୍ତ କମ୍ପଭେଦରେ ଅସଂଖ୍ୟ ଭେଦ ଛନ୍ତି। ପଲ୍ଲବରେ ମରୀସ ସହିତରେ ମଧରୀସରେ କ୍ୱଚିତ୍ କ୍ୱଚିତ୍ ହୁଏ। ଏହିପରି ପଲ୍ଲବ ଭେଦରେ ତାନ ଅନେକ ହୁଅନ୍ତି।

### ପଞ୍ଚସ୍ୱରତାନବିବେକଃ

**ଅଥ ପଞ୍ଚସ୍ୱରସ୍ତାନଃ ପଲ୍ଲବେନ ଯୁତୋ ଭବେତ୍।**
**ଆରୋହଣଂ ତୁ ତାନଃ ସ୍ୟାତ୍ ପଲ୍ଲବସ୍ତ୍ୱବରୋହଣମ୍।। ୭୭।।**
**ସରିଗମପତାନଃ ସ୍ୟାତ୍ ପ୍ରଥମରିସପଲ୍ଲବଃ।**
**ପଲ୍ଲବାଦ୍ୟସ୍ୱରେ ପ୍ରୋକ୍ତଂ ଘର୍ଷଣଂ ଦ୍ରୁତିକୋମଳମ୍।**
**ତଦାଯୋଗାଃ ସମାଖ୍ୟାତା ବିଂଶତ୍ୟା ସହିତଂ ଶତମ୍।। ୭୮ ।।**

ପଞ୍ଚସ୍ୱର ତାନ ପଲ୍ଲବ ଯୁକ୍ତରେ ହୁଏ। ଆରୋହଣରେ ତାନ, ଅବରୋହରେ ପଲ୍ଲବ, ସରୀଗମପ ତାନ ହୁଏ। ପ୍ରଥମରେ ରୀସ ପଲ୍ଲବ ହୁଏ। ପଲ୍ଲବ ଅଦ୍ୟସ୍ୱରରେ କୁହାଗଲା। ଘର୍ଷଣଟି ଅତି କୋମଳ, ତେଣୁ ଯୋଗ କୁହାଗଲା। ତାହା ଶହେ କୋଡ଼ିଏ ସଂଖ୍ୟା ବିଶିଷ୍ଟ।

### ଷାଡ଼ବତାନବିବେକଃ

**ସ ରି ଗ ମ ପ ଧ ଧ ପ ମ ଗ ରି ସ ଏବଂ**
**ବିଂଶତ୍ୟାସହ ସପ୍ତଶତଂ ଭେଦାଃ**
**ଅସ୍ୟାପିତଥୈବ ଭେଦାଃ, ରିଗମପଧ ସେତି ବିନା ପଲ୍ଲବେନ।**

ସରୀଗମ ପଧଧ ପମ ଗରୀସ- ଏହିପରି ସାତଶ କୋଡ଼ିଏ ଭେଦ ହୁଏ। ଏହିଭଳି ସେହିପ୍ରକାର ଭେଦମାନ, ପଲ୍ଲବ ବିନା ରିଗମପଧଧ କ୍ରମଶଃ ହୁଏ।

### ସଂପୂର୍ଣ୍ଣତାନବିବେକଃ

ସରିଗମ ପଧନି ନିଧ ପମଗରିସ।
ଏବଂ ସପ୍ତସ୍ୱରାଣାଂ ତୁ ଭେଦାଃ ପଞ୍ଚସହସ୍ରକାଃ।
ଚତ୍ୱାରିଂଶଦ୍ୟୁତାସ୍ତେଽପି ସାଧନୀୟା ବିଚକ୍ଷଣୈଃ॥ ୭୯ ॥

ସରିଗମପଧନି, ନିଧପମଗରିସ, ସପ୍ତ ସ୍ୱରର ଏହିପରି ପଞ୍ଚସହସ୍ର ଚାଳିଶ ଭେଦ ତାହା ବିଚକ୍ଷଣଙ୍କଦ୍ୱାରା ସାଧନ କରାଯିବ।

### କୂଟତାନଃ

ଅଥ କୂଟତାନା ନିରୂପ୍ୟନ୍ତେ। ସଂପୂର୍ଣ୍ଣା ଅସଂପୂର୍ଣ୍ଣା ବା ଶୁଦ୍ଧାଦି ଭେଦେନ ଚତୁର୍ବିଧା ଅବମୂର୍ଚ୍ଛନା ବ୍ୟୁତ୍କ୍ରମେଣୋଚ୍ଚାରିତସ୍ୱରା ସ୍ତେଦ୍ କୂଟତାନା ଇତ୍ୟୁଚ୍ୟନ୍ତେ। ସଂପୂର୍ଣ୍ଣା ନାମ ସପ୍ତସ୍ୱରଯୁକ୍ତା। ଅସଂପୂର୍ଣ୍ଣାସ୍ତୈକୈକାନ୍ତ୍ୟାନ୍ତ୍ୟସ୍ୱରତ୍ୟାଗେ ସତି, ଷଟ୍‌ସ୍ୱର, ପଞ୍ଚସ୍ୱର, ଚତୁସ୍ୱର ତ୍ରିସ୍ୱରୈକ ସ୍ୱରାଃ। ବ୍ୟୁତ୍କ୍ରମୋଚ୍ଚାରିତ ସ୍ୱରା ଇତ୍ୟତ୍ର ସ୍ୱରାଣାମାନୁପୂର୍ବ୍ୟାଽଽରୋହ ଏବ କ୍ରମଃ। ତେଷ୍ୱେକାଦି ସ୍ୱରବ୍ୟତ୍ୟାସୋ ବ୍ୟୁତ୍କ୍ରମଃ। ଅବରୋହେ ସତ୍ୟାମପି ବିପରୀତ୍ୟାନୁପୂର୍ବ୍ୟା କ୍ରମତ୍ୱାଭାବେନ। କୂଟତ୍ୱଂ ନାମ ବ୍ୟୁତ୍କ୍ରମୋଚ୍ଚାରିତସ୍ୱରତ୍ୱମ୍।

ଅସଂମ୍ପୂର୍ଣ୍ଣାଶ୍ଚ ସଂପୂର୍ଣ୍ଣା ବ୍ୟୁତ୍କ୍ରମୋଚ୍ଚାରିତସ୍ୱରାଃ।
ମୂର୍ଚ୍ଛନାଃ କୂଟତାନାଃ ସ୍ୟୁସ୍ତଦ୍ ସଂଖ୍ୟାମଭିଦଧ୍ମହେ॥ ୮୦ ॥
ପୂର୍ଣ୍ଣା ପଞ୍ଚସହସ୍ରାଣି ଚତ୍ୱାରିଂଶଦ୍ୟୁତାନି ତୁ।
ଏକୈକସ୍ୟାଂ ମୂର୍ଚ୍ଛନାୟାଂ କୂଟତାନାଃ ସହକ୍ରମୈଃ॥ ୮୧ ॥
ସ୍ୟୁଃଷାଡ଼ବାନାଂ ବିଂଶତ୍ୟା ସହ ସପ୍ତଶତାନି ତୁ।
ଔଡ଼ବାନାଂ ତୁ ବିଂଶତ୍ୟା ସହିତଂ ଶତମିଷ୍ୟତେ॥ ୮୨ ॥

**ଚତୁଃସ୍ୱରାଣାଂ କୂଟାନାଂ ଚତୁର୍ବିଂଶତିରୀରିତାଃ ।**
**ତ୍ରିସ୍ୱରାଃ ଷଡ୍ ଦ୍ୱିସ୍ୱରୈର୍ଦ୍ୱାବେକସ୍ତ୍ୱେକସ୍ୱରୋ ମତଃ ।। ୮୩ ।।**
**ନିୟମୋଽୟଂ ଯଥାଯୋଗ୍ୟଂ କଳ୍ପନୀୟୋ ବିଚକ୍ଷଣୈଃ ।**
**ଉପଯୁକ୍ତେ ତୁ ପ୍ରସ୍ତାରେ ମୂର୍ଚ୍ଛନାୟାଃ ସବିସ୍ତରମ୍ ।। ୮୪ ।।**
**ଆର୍ଚିକୋ ଗାଥିକଶ୍ଚୈବ ସାମିକଶ୍ଚ ସ୍ୱରାନ୍ତରଃ ।**
**ଏକସ୍ୱର ପ୍ରୟୋଗୋ ହି ଆର୍ଚିକସ୍ତୁ ବିଧୀୟତେ ।। ୮୫ ।।**
**ଗାଥିକୋ ଦ୍ୱିସ୍ୱରୋ ଜ୍ଞେୟସ୍ତ୍ରିସ୍ୱରଶ୍ଚୈବ ସାମିକଃ ।**
**ଚତୁଃସ୍ୱରପ୍ରୟୋଗୋ ହି ସ୍ୱରାନ୍ତରକଃ ଉଚ୍ୟତେ ।। ୮୬ ।।**
**ମେଳଃ ସପ୍ତସ୍ୱର ପୂର୍ଣ୍ଣଷଟ୍‌ସ୍ୱରଃ ଷାଡ଼ବୋ ମତଃ ।**
**ପଞ୍ଚସ୍ୱରୈରୌଡୁବଃ ସ୍ୟାଦେବଂ ମେଳ ତ୍ରିଧା ମତଃ ।। ୮୭ ।।**
**ମେଳାନୁସାରତୋ ଲକ୍ଷ୍ୟେ ରାଗୋ ତ୍ରୈବିଧ୍ୟମୀରିତଃ ।**
**ପଞ୍ଚୋନେଭ୍ୟଃ ସ୍ୱରେଭ୍ୟସ୍ତୁ ରାଗୋ ନ ସ୍ୟାଦ୍ କଦାଚନ ।। ୮୮ ।।**

ବର୍ତ୍ତମାନ କୂଟତାନମାନ ନିରୂପଣ କରାହେଉଚି । ସଂପୂର୍ଣ୍ଣ ଓ ଅସଂପୂର୍ଣ୍ଣ ବା ଶୁଦ୍ଧାଦିଭେଦରେ ଚତୁର୍ବିଧ ମୂର୍ଚ୍ଛନାରେ ମଧ୍ୟ ବିପରୀତ କ୍ରମରେ ଉଚ୍ଚାରିତ ସ୍ୱରମାନଙ୍କୁ କୂଟତାନ କୁହାଯାଏ । ସମ୍ପୂର୍ଣ୍ଣହିଁ ସପ୍ତସ୍ୱର ବିଶିଷ୍ଟ । ଅସଂପୂର୍ଣ୍ଣ କ୍ରମଶଃ ଏକ ଏକ ଶେଷ ସ୍ୱରକୁ ତ୍ୟାଗ କଲେ ଷଟ୍‌ସ୍ୱର, ପଞ୍ଚସ୍ୱର, ଚତୁଃସ୍ୱର, ତ୍ରିସ୍ୱର, ଦ୍ୱିସ୍ୱର, ଏକସ୍ୱର । ବିପରୀତରେ ଉଚ୍ଚାରିତ ସ୍ୱର କହିଲେ ସ୍ୱରମାନଙ୍କର ପୂର୍ବ ଅନୁସାରେ ଆରୋହ ରୂପକ୍ରମ । ସେମାନଙ୍କ ମଧ୍ୟରେ ଏକ ଆଦିକ୍ରମେ ସ୍ୱରର ବିପରୀତ ରୂପକୁ ବ୍ୟୁତ୍‌କ୍ରମ କହନ୍ତି । ଅବରୋହରେ ବିପରୀତ ଭାବର ଉଚ୍ଚାରଣରେ ପୂର୍ବପର କ୍ରମର ଅଭାବ ହୁଏ ।

ବିପରୀତ ଭାବରେ ଉଚ୍ଚାରିତ ସ୍ୱରକୁ କୂଟ କହନ୍ତି । ମୂର୍ଚ୍ଛନା, ସବୁ ସମ୍ପୂର୍ଣ୍ଣ ଓ ଅସମ୍ପୂର୍ଣ୍ଣ ଭାବେ ବିପରୀତ କ୍ରମରେ ଉଚ୍ଚାରିତ

ହେଲେ କୂଟତାନ ହୁଅନ୍ତି। ସେମାନଙ୍କର ସଂଖ୍ୟା କୁହାଯାଉଅଛି। ସଂପୂର୍ଣ୍ଣ କୂଟତାନ ପାଞ୍ଚହଜାର ଚାଳିଶ। ଏକ ଏକ ମୂର୍ଚ୍ଛନାରେ କ୍ରମମାନଙ୍କ ସହିତ କୂଟତାନର ମାନ ହୁଏ। ଷାଡ଼ବମାନଙ୍କର ସଂଖ୍ୟା ସାତଶତ କୋଡ଼ିଏ। ଔଡ଼ବମାନଙ୍କର ଶଏ କୋଡ଼ିଏ। ଚାରିସ୍ୱରର କୂଟମାନଙ୍କର ସଂଖ୍ୟା ଚବିଶଗୋଟି ମାତ୍ର। ତିନି ସ୍ୱରର ଛଅଟି, ଦୁଇ ସ୍ୱରର ଦୁଇଟି, ଏକ ସ୍ୱରର ଗୋଟିଏ। ଯଥାରୀତିରେ ଏହି ନିୟମ ପଣ୍ଡିତମାନେ କଳ୍ପନା କରିବେ। ଉପଯୁକ୍ତ ପ୍ରସ୍ତାରରେ ମୂର୍ଚ୍ଛନାର ସଂଖ୍ୟା ବହୁତ ହୁଏ। ଅର୍ଚ୍ଚିକ, ଗାଥିକ, ସାମିକ, ସ୍ୱରାନ୍ତର, ଔଡ଼ବ ଷାଡ଼ବ, ସମ୍ପୂର୍ଣ୍ଣରୂପେ ସାତ ପ୍ରକାର। ଏକସ୍ୱର ପ୍ରୟୋଗରେ ଆର୍ଚ୍ଚିକ, ଦୁଇସ୍ୱରରେ ଗାଥିକ, ତିନି ସ୍ୱରରେ ସାମିକ, ଚାରିସ୍ୱରରେ ସ୍ୱରାନ୍ତର, ପାଞ୍ଚ ସ୍ୱରରେ ଔଡ଼ବ, ଛଅ ସ୍ୱରରେ ଷାଡ଼ବ, ସପ୍ତସ୍ୱର ପ୍ରୟୋଗରେ ସମ୍ପୂର୍ଣ୍ଣ ହୁଏ। ଏ ଅନୁସାରେ କେବଳ ତିନି ପ୍ରକାର ମେଳ ହୁଏ ତାହା ଔଡ଼ବ, ଷାଡ଼ବ ସମ୍ପୂର୍ଣ୍ଣ, ମେଳ ଅନୁସାରେ ରାଗ ତିନି ପ୍ରକାର ରୂପେ ଲକ୍ଷିତ ହୁଅନ୍ତି। ପାଞ୍ଚୋଟି ସ୍ୱରରୁ ଊଣା ହେଲେ କଦାପି ରାଗ ହୁଏ ନାହିଁ।

ଦେଶଭେଦେ ଚତୁଃସ୍ୱର ପ୍ରୟୋଗଃ ଚତୁଃସ୍ୱରାତ୍ ପ୍ରକୃତି ନ ମାର୍ଗାଃ ଶବର-ପୁଳିନ୍ଦ କାମ୍ବୋଜ ବଙ୍ଗାଃ କିରାତବାହ୍ଲୀକାନ୍ଧ୍ର ଦ୍ରାବିଡ଼ ବାନାଦିଷୁ ପ୍ରଯୁଜ୍ୟତେ, ଅନିୟମାତ୍କୃତିମାତ୍ର ଗ୍ରାହ୍ୟମ୍। ଯଦା ଚତୁଃସ୍ୱର ପ୍ରୟୋଗୋଽପି ସ୍ୱରାନ୍ତରମାହ ଅବକୃଷ୍ଟ ଧ୍ରୁବାସ୍ୱେବ ବେଦିତବ୍ୟଃ ସ୍ୟାତ୍ ତଥାହ ଭରତଃ।

ଷଟ୍ ସ୍ୱରସ୍ୟ ପ୍ରୟୋଗୋଽପି ତଥା ପଞ୍ଚସ୍ୱରସ୍ୟ ଚ।
ଚତୁଃସ୍ୱରପ୍ରୟୋଗୋଽପି ହ୍ୟବକୃଷ୍ଟଧ୍ରୁବାସ୍ୱପି॥ ୮୯॥

**ଦ୍ୱୌ ତ୍ରୟୋ ବାପି ଚତ୍ୱାରଃ ସ୍ୱ୍ୟସ୍ତାନାରଂଜକ ସ୍ୱରାଃ ।**
**ପଞ୍ଚାଦ୍ୟୈରଥ ରାଗଃ ସ୍ୟାଦିତି ଲକ୍ଷ୍ୟବିଦାଂ ମତମ୍ ॥ ୯୦ ॥**
**(ମତଙ୍ଗ)**

ଏକ, ଦୁଇ, ତିନି, ଚାରି ସ୍ୱରରେ ଗୀତ ମାର୍ଗରେ ଗଣା ହୁଏ ନାହିଁ। ଶବର, ପୁଳିନ୍ଦ, କାମ୍ୱୋଜ, ବଙ୍ଗ, କିରାତ, ବାହ୍ଲୀକ, ଆନ୍ଧ୍ର ଦ୍ରାବିଡ଼ ଓ ବନ-ପ୍ରଦେଶର ଲୋକମାନଙ୍କଦ୍ୱାରା ଏହା ପ୍ରୟୋଗ କରାଯାଇଥାଏ। ନିୟମ କିଛି ନ ଥିବାରୁ କେବଳ ଶୁଣିବା ମାତ୍ର ହୁଏ। ଯେବେ ଚାରିସ୍ୱର ପ୍ରୟୋଗକୁ ସ୍ୱରାନ୍ତର କହନ୍ତି, ନିନ୍ଦନୀୟ ଧ୍ରୁବା ଭିତରେ ତାହା ଜାଣିବ; ଭରତ ଏଥି ସମ୍ପର୍କରେ କହିଲେ।

ଛଅଟି ସ୍ୱରର ପ୍ରୟୋଗ ଅଛି। ସେହିପରି ପଞ୍ଚସ୍ୱରର ମଧ୍ୟ ହୁଏ। ଚାରି ସ୍ୱର ପ୍ରୟୋଗ ମଧ୍ୟ ଅଛି, ତାହା ନିନ୍ଦନୀୟ ଧ୍ରୁବମାନଙ୍କ ମଧ୍ୟରେ ମଧ୍ୟ ଗଣ୍ୟ, ମଧ୍ୟ ଶବ୍ଦଦ୍ୱାରା ସମ୍ପୂର୍ଣ୍ଣ ମଧ୍ୟ ଗ୍ରହଣୀୟ ହେଲା। ଧ୍ରୁବମାନଙ୍କର ଏହିଭଳି ଚାରିପ୍ରକାର ପ୍ରୟୋଗ ଜାଣିବ।

ଦୁଇ, ତିନି, ଚାରି ସ୍ୱରର ତାନ ରଞ୍ଜକ ହୁଏ। ମାତ୍ର ପାଞ୍ଚ, ଛଅ ଓ ସାତ ସ୍ୱରମାନଙ୍କରେ ରାଗ ହୁଏ। ସଙ୍ଗୀତ-ଲକ୍ଷ୍ୟ ଜାଣିବା ପଣ୍ଡିତଙ୍କ ମତ।

## ରାଗଶବ୍ଦବ୍ୟୁତ୍ପତ୍ତିଃ

**ଇତ୍ୟେବଂ ରାଗଶବ୍ଦସ୍ୟ ବ୍ୟୁତ୍ପତ୍ତିରଭିଧୀୟତେ।**
**ରଂଜନାଜ୍ଜାୟତେ ରାଗୋ ବ୍ୟୁତ୍ପତ୍ତିଃ ସମୁଦାହୃତା ॥ ୯୧ ॥**

ବର୍ତ୍ତମାନ ରାଗ-ଶବ୍ଦର ବ୍ୟୁତ୍ପତ୍ତି କୁହାଯାଉଅଛି। ରଞ୍ଜନରୁ ରାଗ ଜନ୍ମେ- ଏହି ବ୍ୟୁତ୍ପତ୍ତି କଥିତ।

## ରାଗଲକ୍ଷଣମ୍

ଯୋଽୟଂ ଧ୍ୱନିବିଶେଷସ୍ତୁ ସ୍ୱରବର୍ଣ୍ଣବିଭୂଷିତଃ ।
ରଂଜକୋ ଜନଚିତ୍ତାନାଂ ସ ରାଗ କଥ୍ୟତେ ବୁଧୈଃ ॥ ୯୨ ॥
ନାଦ-ଶ୍ରୁତି-ସ୍ୱର-ଗ୍ରାମ-ମୂର୍ଚ୍ଛନାତାନମଣ୍ଡିତଃ ।
ଜନଚିତ୍ତଂ ରଂଜୟତି ସ ରାଗଃ କଥିତୋ ବୁଧୈଃ ॥ ୯୩ ॥

ସ୍ୱରବର୍ଣ୍ଣରେ ମଣ୍ଡିତ ଲୋକମାନଙ୍କର ଚିତ୍ତରଞ୍ଜନକାରୀ ଧ୍ୱନିବିଶେଷକୁ ପଣ୍ଡିତମାନେ ରାଗ କହନ୍ତି । ଯେ ନାଦ ଶ୍ରୁତି ସ୍ୱର ଗ୍ରାମ ମୂର୍ଚ୍ଛନା ତାନାଦିଦ୍ୱାରା ଶୋଭା ପାଉଥିବ, ଲୋକଙ୍କ ମନକୁ ରଞ୍ଜାଉଥିବ ତାହାକୁ ପଣ୍ଡିତମାନେ ରାଗ କହନ୍ତି ।

## ରାଗସ୍ଥାପନମ୍

ଜୀବସ୍ୱରବ୍ୟାପ୍ତିଯୁତୈସ୍ତଥାଽଲ୍ପାଲ୍ପକୈଃ ପ୍ରସନ୍ନୈର୍ବହୁଚାତୁରୀକୈଃ ।
ସ୍ଥାୟୈରମୀଭିଃ କରଣୈସ୍ତୁ ରାଗାଭିବ୍ୟଞ୍ଜକସ୍ଥାପନିକୈଃ ପ୍ରଦିଷ୍ଟା ॥ ୯୪ ॥

ବାଦୀ ସ୍ୱରଦ୍ୱାରା ପ୍ରଧାନ ଭାବରେ ଯୁକ୍ତ ଓ ଅଳ୍ପ ଅଳ୍ପ ସ୍ପଷ୍ଟଚାତୁରୀଯୁକ୍ତ ସ୍ଥାୟୀଦ୍ୱାରା ଓ ଅନ୍ୟାନ୍ୟ ଶ୍ରୁତି ଗ୍ରାମାଦିଦ୍ୱାରା ରାଗ ପ୍ରକାଶମାନ ହେଲେ ରାଗର ସ୍ଥାପନ ହୁଏ ।

## ରାଗଭେଦାଃ

ରାଗସ୍ତୁ ନବଧା ପ୍ରୋକ୍ତା ଗ୍ରାମଜଶ୍ଚୋପରାଗଜଃ ।
ଭାଷାଖ୍ୟଶ୍ଚ ବିଭାଷାଖ୍ୟୋଽନ୍ତର ଭାଷାଖ୍ୟ ଏବ ଚ ।
ରାଗୋ ରାଗାଂଗଭାଷାଙ୍ଗୌ କ୍ରିୟାଂଗୋପାଂଗକୌ ନବ ॥ ୯୫ ॥

ରାଗ ନଅ ପ୍ରକାର କଥିତ; ଯଥା-(୧) ଗ୍ରାମଜ (୨) ଉପରାଗଜ (୩) ଭାଷା, (୪) ବିଭାଷା ଓ (୫) ଅନ୍ତରଭାଷା ନାମକ ତିନିଗୋଟି (୬) ରାଗାଙ୍ଗ, (୭) ଭାଷାଙ୍ଗ (୮) କ୍ରିୟାଙ୍ଗ (୯) ଉପାଙ୍ଗ ।

## ଗ୍ରାମରାଗାଦିଭେଦ-ଲକ୍ଷଣମ୍

**ଜାତି-ସଂଭୂତତ୍ୱଂ ଗ୍ରାମରାଗାଦୀନାମିତି । ଅଥୋପରାଗତ୍ୱଂ ନାମ ଗ୍ରାମ-ରାଗ-ସମୀପତ୍ୱମ୍ । ରାଗତ୍ୱଂ ନାମୋପରାଗାନ୍ତରଂ ଜାତିଜନିତତ୍ୱମ୍ । ଅଥ ଭାଷା-ରାଗତ୍ୱଂ ନାମ ରାଗୋପରାଗାନଂତରଂ ଗ୍ରାମରାଗାଳାପପ୍ରକାରତ୍ୱମ୍ । ଅଥ ବିଭାଷରରାଗତ୍ୱଂ ନାମ ଭାଷା-ରାଗାଳାପପ୍ରକାରତ୍ୱମ୍ । (ଭରତ)**

**ଗ୍ରାମୋକ୍ତାନାଂ ଚ ରାଗାଣାଂ ଛାୟାମାତ୍ରଂ ଭଜନ୍ତି ହି ।**
**ଗୀତଜ୍ଞୈଃ କଥିତାଃ ସର୍ବେ ରାଗାଙ୍ଗତ୍ୱେନ ହେତୁନା ॥ ୯୬ ॥**
**ଭାଷାଛାୟାଶ୍ରିତା ଯେ ଚ ଜାୟନ୍ତେ ତାଦୃଶାଃ କିଳ ।**
**ଭାଷାଙ୍ଗାତ୍ୱେନ କଥ୍ୟନ୍ତେ ଗାୟକୈଃ ସୌତିକାଦିଭିଃ ॥ ୯୭ ॥**
**ଶୋକୋତ୍ସାହାଦିକରୁଣା ପ୍ରବଳା ଯେ ତତଃ ପରମ୍ ।**
**ଜାୟନ୍ତେ ଚ ତତୋ ନାମ କ୍ରିୟାଙ୍ଗାତ୍ୱେନ ହେତୁନା ।**
**ରାଗଛାୟାନୁକାରିତ୍ୱଦୁପାଂଗମିତିକଥ୍ୟତେ ॥ ୯୮ ॥**

**(ମତଙ୍ଗ)**

ଗ୍ରାମ-ରାଗମାନେ ଜାତିରୁ ଜାତ ହୁଅନ୍ତି, ଗ୍ରାମ-ରାଗର ନିକଟବର୍ତ୍ତୀ ରାଗକୁ ଉପରାଗ କହନ୍ତି, ଉପରାଗ ପରେ ଜାତିରୁ ଜନ୍ମିବାକୁ ଅନ୍ତର ରାଗ କହନ୍ତି । ରାଗ ଓ ଉପରାର୍ଗ ପରେ ଗ୍ରାମରାଗ ଆଳାପ ପ୍ରକାରକୁ ଭାଷା-ରାଗ କହନ୍ତି । ଭାଷା-ରାଗର ଆଳାପ ପ୍ରକାରକୁ ବିଭାଷା କହନ୍ତି । ଗ୍ରାମୋକ୍ତ ରାଗମାନଙ୍କ ଛାୟାମାତ୍ର ଆଶ୍ରୟ କରି ଯେ ଜାତ ହୁଅନ୍ତି, ତାହାକୁ ଭାଷାଙ୍ଗ କହନ୍ତି । ଏହା ସୌତିକାଦି ଗାୟକମାନେ କହନ୍ତି । ଶୋକ-ଉତ୍ସାହାଦି ଓ କରୁଣା ପ୍ରବଳ ଥିଲେ କ୍ରିୟାଙ୍ଗ ହୁଏ । ରାଗ ଛାୟାକୁ ଅନୁକରଣ କଲେ ଉପାଙ୍ଗ ହୁଏ ।

## ରାଗାଙ୍ଗମ୍

ମେଳକର୍ତ୍ତା ମୌଳିକଶ୍ଚାବକ୍ରରୋହାବରୋହକଃ।
ରାଗାଂଗମିତି ପ୍ରଖ୍ୟାତଂ ସ୍ୱର-ଶାସ୍ତ୍ର-ବିଚକ୍ଷଣୈଃ॥ ୯୯ ॥

ବକ୍ର ନ ହୋଇ ଆରୋହ-ଅବରୋହ ମୌଳିକ କର୍ତ୍ତାରୂପ ମେଳକୁ ରାଗାଙ୍ଗ ବୋଲି ସଙ୍ଗୀତ ପଣ୍ଡିତମାନେ କହନ୍ତି।

## ଭାଷାଙ୍ଗମ୍

ମୂଳରାଗ ସ୍ୱରାଦ୍‌ଭିନ୍ନଃ ଏକୋ ବାଥ ସ୍ୱରଦ୍ୱୟମ୍।
ଗୃହ୍ୟତେ ଯତ୍ର ରାଗେ ତୁ ତଦ୍‌ଭାଷାଂଗଂ ପ୍ରଚକ୍ଷତେ॥ ୧୦୦ ॥
(କ) ଭାଷାଂଗେଽଭିନବଃ ସାକ୍ଷାଦ୍‌ସ୍ୱରୋ ଭାବପ୍ରକାଶକଃ।
ନ ଦର୍ଶୟତି ଛାୟା ହି ରାଗସ୍ୟାନ୍ୟସ୍ୟ କୁତ୍ରଚିତ୍॥ ୧୦୧ ॥
(ଖ) ପ୍ରାୟଃ କାଳକ୍ରମେଣୈବ ଭାଷାଂଗରାଗତାଂ ଗତାଃ।
ଉପାଙ୍ଗରାଗାଃ କତିଚିଦିହ ତେଷାଂ ବିଲୋକନମ୍॥ ୧୦୨ ॥
ପ୍ରକୃତଂ ସ୍ୱରମୁଜ୍‌ଝିତ୍ୱା ଆରୋହାଦି ନବେ ସ୍ୱରେ।
ତେ ହି ରାଗାଃ ପ୍ରକୁର୍ବନ୍ତି ମୂଳରାଗସ୍ୟ ବର୍ଜ୍ଜନମ୍॥ ୧୦୩॥
ମୂଳବର୍ଣ୍ଣାନ୍ତରଂ ତତ୍ର ରାଗମାଶ୍ରିତ୍ୟ ବର୍ତ୍ତତେ।
(ଗ) କେଷାଞ୍ଚିଦନ୍ୟରାଗାଣାଂ ସଂଚାର-ସ୍ଥାନ ଏବ ହି॥ ୧୦୪ ॥
ସୂକ୍ଷ୍ମସ୍ୱରପ୍ରୟୋଗଶ୍ଚ ଦୃଶ୍ୟତେଽତ୍ର ବିଲକ୍ଷଣଃ।
ନିୟତାଦ୍ ବିକୃତାଦ୍ ଯସ୍ତୁ ପୃଥକ୍ ସୂକ୍ଷ୍ମ ସ ଉଚ୍ୟତେ॥ ୧୦୫ ॥
ସଂଦୃଶ୍ୟତେ ସ୍ୱରାଦେଶ୍ଚ ସଂଚାରେ ରସଭାବୟୋଃ।
(ଘ) ଭାଷାଙ୍ଗରାଗୋଽଭିନବଃ ସ୍ୱରୋ ଯଃ ସ ନିବେଶ୍ୟତେ॥ ୧୦୬॥
ପ୍ରାକୃତସ୍ୱରତଶ୍ଚାସୌ ସାମାନ୍ୟେନ ବିଲୋକ୍ୟତେ।
ଅତୋନିର୍ଣ୍ଣୀୟତେ ଚୈତଦ୍‌କିଦୃକ୍ ରାଗେଽସ୍ୟ ମେଳକଃ॥ ୧୦୭ ॥

ମୂଳ ରାଗ ସ୍ୱରରୁ ଭିନ୍ନ ଗୋଟିଏ ବା ଦୁଇଟି ସ୍ୱର ଯେଉଁ ରାଗରେ ଗ୍ରହଣ କରାଯାଏ, ତାହାକୁ ଭାଷାଙ୍ଗ ବୋଲାଏ।

(କ) ଭାଷାଙ୍ଗରେ ସାକ୍ଷାତ ନୂତନ ସ୍ୱର ଭାବ ପ୍ରକାଶ କରେ, ରାଗର ବା ଅନ୍ୟର କୌଣସି ସ୍ଥାନରେ ଛାୟାକୁ ଦେଖାଏ ନାହିଁ।

(ଖ) ପ୍ରାୟଶଃ କାଳକ୍ରମରେ ଭାଷାଙ୍ଗ ରାଗାଙ୍ଗକୁ ପ୍ରାପ୍ତ ହେଲା। ଉପରାଗ ସେମାନଙ୍କର ଏଠାରେ କେତେଗୋଟି ଦେଖାଯାଏ। ପ୍ରକୃତ ସ୍ୱରକୁ ଛାଡ଼ି ଆରୋହାଦି ନଥିବି ସ୍ୱରରେ ସେମାନେ ରାଗ କରନ୍ତି, ସେଥିରେ ମୂଳରାଗ ଛଡ଼ା ଯାଇଥାଏ। ତହିଁ ଅନ୍ୟ ମୂଳ ବର୍ଣ୍ଣର ରାଗକୁ ଆଶ୍ରୟ କରିଥାଏ।

(ଗ) କୌଣସି କୌଣସି ଅନ୍ୟ ରାଗମାନଙ୍କର ସଂଚାର ସ୍ଥାନରେ ହିଁ ସୂକ୍ଷ୍ମସ୍ୱରର ପ୍ରୟୋଗ ଦେଖାଯାଏ। ଏହାହିଁ ହେଉଛି ବିଶେଷତ୍ୱ। ନିଶ୍ଚିତଭାବେ ଯେ ବିକୃତଠାରୁ ଭିନ୍ନ ସେ ସୂକ୍ଷ୍ମ ବୋଲାଏ ସ୍ୱରାଦିର ରସଭାବ ସଞ୍ଚାରରେ ଏହା ଦେଖାଯାଏ।

(ଘ) ଭାଷାଙ୍ଗ ରାଗରେ ଯେ ନୂତନ ସ୍ୱର ପ୍ରୟୋଗ ହୁଏ, ସାମାନ୍ୟଭାବରେ ପ୍ରକୃତ ସ୍ୱରରେ ଏହା ଦେଖାଯାଏ। ଏହାର ରାଗମେଳକ କିପରି, ଏଣୁ ନିର୍ଣ୍ଣୟ ହେଲା।

ଦେଶାଙ୍ଗମ୍

କଦାଚିଦପି ଭାଷାଂଗଦେଶାଂଗେ ପର୍ଯ୍ୟବସ୍ୟତେ।
ଦେଶାତରାଗତୋ ଯସ୍ତୁ ରାଗଃ ସ୍ୱଦେଶସଂଶ୍ରୟୀ ॥ ୧୦୮ ॥

ଦେଶାଙ୍ଗରେ କେତେବେଳେ କେତେବେଳେ ମଧ୍ୟ ଭାଷାଙ୍ଗ ସ୍ଥାପିତ କରାଯାଏ। ଅନ୍ୟ ଦେଶରୁ ଆସି ଯେଉଁ ରାଗ ଦେଶକୁ ଆଶ୍ରୟ କରିଥାଏ, ତାହା ଦେଶାଙ୍ଗ।

## କ୍ରିୟାଙ୍ଗମ୍

କ୍ରିୟାଙ୍ଗ ରାଗଃ ସଂକୀର୍ଣ୍ଣ ଜାତିଷ୍ୱେବ ହି ଗଣ୍ୟତେ।
ବିହାୟୈତାନ୍ ପରେ କେଚିଦ୍‌ଜନ୍ୟରାଗା ବିଭାନ୍ତି ଚ॥ ୧୦୯॥
ତେ ଚ ଯାସ୍ୟନ୍ତି ମନ୍ଦ୍ରେଣ ମଧ୍ୟସ୍ଥାୟୀ ସ୍ୱରାନ୍ କତି।
ଷଡ୍‌ଜସ୍ୱରଂ ତୁ ତାରସ୍ଥଂ ନ ସ୍ପୃଶେୟୁଃ କଦାଚନ।
ଇତି ନିର୍ଣୀୟତେଽସ୍ମାଭିଃ ଶାସ୍ତ୍ରେଽସ୍ମିନ୍ ସକଳଂ ମୁଦା॥ ୧୧୦॥

ସଂକୀର୍ଣ୍ଣ ଜାତିମାନଙ୍କ ମଧ୍ୟରେ (ମିଶ୍ରିତ ଜାତି) କ୍ରିୟାଙ୍ଗ ରାଗ ଗଣାଯାଏ। ଏମାନଙ୍କୁ ଛାଡ଼ି କେତେକ ଜନ୍ୟ ରାଗ ପ୍ରକାଶ ପାଆନ୍ତି। ମନ୍ଦ୍ରସ୍ୱରରେ ମଧ୍ୟସ୍ଥାୟୀ ସ୍ୱରକୁ କେତେକ ଗତି କରନ୍ତି। ସେସବୁ କେତେବେଳେ ହେଲେ ତାରରେ ରହିବା ଷଡ୍‌ଜ ସ୍ୱରକୁ ସ୍ପର୍ଶ କରନ୍ତି ନାହିଁ। ଏହି ଶାସ୍ତ୍ରରେ ଆମ୍ଭେମାନେ ସବୁ ସୁଖରେ ନିର୍ଣ୍ଣୟ କଲୁ।

## ନିଷାଦାନ୍ତଃ

ମଧ୍ୟସ୍ଥାୟୀ ନିଷାଦାନ୍ତଂ ଯସ୍ତୁ ରାଗଃ ପ୍ରବର୍ତ୍ତତେ।
ନିଷାଦାନ୍ତ ଇତି ଖ୍ୟାତଃ ସ୍ୱରଶାସ୍ତ୍ରବିଶାରଦୈଃ॥ ୧୧୧ ॥

ମଧ୍ୟସ୍ଥାୟୀ ହୋଇ ନିଷାଦ ଶେଷରେ ଯେ ରାଗ ହୁଏ ତାହାକୁ ନିଷାଦାନ୍ତ କହନ୍ତି। ସ୍ୱରଶାସ୍ତ୍ର ପଣ୍ଡିତ ମାନଙ୍କର ଏହା ମତ।

## ଧୈବତାନ୍ତଃ

ମଧ୍ୟସ୍ଥଧୈବତଂ ଯାବଦ୍‌ଗତିର୍ଯସ୍ୟ ଭବେଦ୍ ଧ୍ରୁବା ।
ଧୈବତାନ୍ତମିତି ପ୍ରାହୁସ୍ତଂ ରାଗଂ ରାଗବେଦିନଃ ॥ ୧୧୨ ॥

ମଧ୍ୟସ୍ଥାୟୀ ହୋଇ ଧୈବତକୁ ନେଇ ଯେ ନିଶ୍ଚିତରୂପେ ଗତି କରେ, ତାକୁ ଧୈବତକୁ ନେଇ ଯେ ନିଶ୍ଚିରୂପେ ଗତି କରେ, ତାକୁ ଧୈବତାନ୍ତ ବୋଲି ରାଗ ଜାଣିଥିବା ପଣ୍ଡିତମାନେ କହନ୍ତି ।

## ପଞ୍ଚମାନ୍ତଃ

ମଧ୍ୟସ୍ଥାୟୀ ପଞ୍ଚମଶ୍ଚ ଯସ୍ୟୋଦାତ୍ତସ୍ତଦା ପୁରଃ ।
ନ ତସ୍ମାଦଧିକଂ ଯାତି ପଞ୍ଚମାନ୍ତ୍ୟଃ ସ ଉଚ୍ୟତେ ॥ ୧୧୩ ॥

ମଧ୍ୟସ୍ଥାୟୀ ହୋଇ ଯାହାର ପଞ୍ଚମସ୍ୱର ଉଦାତ୍ତ ହେବ ଓ ତହିଁରୁ ଅଧିକ ଗତି କରିବ ନାହିଁ, ତାକୁ ପଞ୍ଚମାନ୍ତ କହିବ ।

## ଜନ୍ୟସମ୍ପୂର୍ଣ୍ଣରାଗଃ

ଆରୋହେ ଚାବରୋହେ ଚ ସଂପୂର୍ଣ୍ଣସ୍ୱରସଂସ୍ଥିତିଃ ।
ତଥାପି ତେ ସ୍ୱରାଃ ସର୍ବେ ବକ୍ରଭାଷାଂଗସଂଗମାଃ ॥ ୧୧୪ ॥
କାଂଶ୍ଚିତ୍ ପ୍ରୟୋଗରାଗାନ୍ ବା ବିଶିଷ୍ଟାନ୍ ନିର୍ଣ୍ଣୟନ୍ତି ତେ ।
ବକ୍ରଃ ସ୍ୟାଦଥବା ବକ୍ରଃ ଭାଷାଙ୍ଗୋ ଜାୟତେ ଯଦା ॥ ୧୧୫ ॥

ଆରୋହ ଓ ଅବରୋହରେ ସଂପୂର୍ଣ୍ଣ ସ୍ୱର ରହିଥିଲେ ହେଁ ସେହି ସବୁ ସ୍ୱରମାନେ ବକ୍ରଭାଷାଙ୍ଗରେ ଯୁକ୍ତ ହୁଅନ୍ତି । କେତେ ପ୍ରୟୋଗ ରାଗକୁ ବା ବିଶିଷ୍ଟ ରାଗକୁ ନିର୍ଣ୍ଣୟ କରନ୍ତି । (କ) ଉପାଙ୍ଗ ହେଲେ ବକ୍ର ହେବ । (ଖ) ବକ୍ର ହେବ ଅଥବା ବକ୍ରଭାଷାଙ୍ଗ ଜାତ ହେବ ।

## ଘନରାଗଃ

ଯସ୍ୟ ସାଧାରଣଗତିଃ ପ୍ରାୟୋ ମଧ୍ୟଲୟାବଧିଃ ।
ପ୍ରଯୁଜ୍ୟତେଽତ୍ର ଯସ୍ତାନଃ ସ ଏବ ଘନସଂଜ୍ଞକଃ ।। ୧୧୬ ।।
ତଥାହି ଏକସ୍ୟ ସ୍ୱରସ୍ୟ ପୁନଃ ପ୍ରୟୋଗୋ ଦୃଶ୍ୟତେ ।
କତିପୟେ ରାଗବିଶେଷାଶ୍ଚ ଘନପଞ୍ଚକମିତି ବର୍ଣ୍ଣ୍ୟନ୍ତେ ଯଥା
ନଟଃ, ଗୌଳଃ-ଆରଭି, ଶ୍ରୀରାଗଃ ବରାଳି ଚ ।

ଯାହା ପ୍ରାୟ ମଧ୍ୟଲୟ ପର୍ଯ୍ୟନ୍ତ ସାଧାରଣ ଗତି ହୋଇ ଯେଉଁ ତାନ ପ୍ରୟୋଗ କରାଯାଏ, ତାକୁ ଘନ କହନ୍ତି ।

ତଥାଚ ଗୋଟିଏ ସ୍ୱରକୁ ପୁଣି ପୁଣି ପ୍ରୟୋଗ ଦେଖାଯାଏ । କେତେକ ରାଗବିଶେଷକୁ ଘନପଞ୍ଚକରୂପେ ବର୍ଣ୍ଣନା କରନ୍ତି । ଯଥା-ନଟ-ଗୌଳ-ଆରଭି, ଶ୍ରୀରାଗ ଓ ବରାଳି ।

## ନୟ (ରକ୍ତିଶ୍ଚ)

ଅତ୍ରାଳାପନତାନାଦୌ ବିଶେଷତ୍ୱଞ୍ଚ ଦୃଶ୍ୟତେ ।
ଯଥା-ତୋଡ଼ି, ଭୈରବୀ, ଶଙ୍କରାଭରଣଃ ।

ଆଳାପ ତାନର ଆଦିରେ ବିଶେଷଭାବରେ ଅଛ ଦେଖାଯାଏ । ଯଥା- ତୋଡ଼ି, ଭୈରବୀ, ଶଙ୍କରାଭରଣ ।

## ଦେଶ୍ୟଃ

ରାଗୋଽୟଂ କେବଳଂ ଧତ୍ତେ ଆଳାପନବିଶିଷ୍ଟତାମ୍ ।। ୧୧୭ ।।
ଯଥା-କାନଡ଼୍, ଝିଂଝୋଟୀ, କାଫି, ବେହାଗଃ
ଆଳାପଯୋଗ୍ୟ ରାଗୋଽୟଂ ପ୍ରଧାନମହିମେତି ଚ ।
କେଚିଦାହୁର୍ଘନଂ ରାଗଂ ସଙ୍ଗୀତକୁଶଳା ନରାଃ ।। ୧୧୮ ।।

**ନୟୋଽୟଂ କୋମଳୋ ଯାଦୃକ୍ ତଥାହ୍ଲାଦପ୍ରଦାୟକଃ ।**
**ପୂର୍ବୋକ୍ତମୁଭୟଂ ହ୍ୟେତଦ୍ ଦେଶ୍ୟରାଗେଽଧିଗମ୍ୟତେ ।। ୧୧୯ ।।**

ଏହି ରାଗ କେବଳ ଆଳାପର ବିଶେଷତ୍ୱକୁ ଧାରଣ କରେ; ଯଥା-କାନଡ଼୍, ଝିଂଝୋଟୀ, କାଫି ଓ ବେହାଗ । ଏହା ଆଳାପଯୋଗ୍ୟ ରାଗ । ଏହାର ବଡ଼ ଗୌରବ ଅଛି । କେହି କେହି ସଙ୍ଗୀତକୁଶଳ ଲୋକେ ଏହାକୁ ଘନରାଗ ବୋଲି କହନ୍ତି । ଏ ରାଗ ନୟ ଯେପରି କୋମଳ ସେପରି ଆନନ୍ଦଦାୟକ ଅଟେ । ଦେଶୀ ରାଗରେ ଏହି ପୂର୍ବୋକ୍ତ ଦୁଇଗୋଟି ଲାଭ ହୁଏ ।

### ଗାୟନ-ବିଧିଃ

**ପୁରା ସଭାଦୌ ରାଗଜ୍ଞୈଃ ପ୍ରଥମଂ ଘନସଂଜ୍ଞକେ ।**
**ତସ୍ମାନ୍ନୟେ ଉତଃ ପଶ୍ଚାଦ୍‌ଦେଶ୍ୟାଦୌ ଚ ଯଥାକ୍ରମମ୍ ।। ୧୨୦ ।।**
**ଆଳାପାଦି ବିଧିଂ କୃତ୍ୱା ଗାନାଦିରବସୀୟତେ ।**

ଜାଣିବା ବ୍ୟକ୍ତି ପୂର୍ବକାଳରେ ସଭାର ପ୍ରଥମରେ ଘନରାଗ ପ୍ରୟୋଗ କରି ତାହାପରେ ନୟରାଗ, ସବା ପଛେ ଯଥାକ୍ରମେ ଦେଶୀ ଆଦିରେ ଆଳାପାଦି ବିଧି କରି ଗାନାଦି ଶେଷ କରୁଥିଲେ ।

### ମାର୍ଗଗୀତମ୍

**ଅନାଦିସମ୍ପ୍ରଦାୟଂ ଯଦ୍‌ଗନ୍ଧର୍ବୈଃ ସଂପ୍ରଯୁଜ୍ୟତେ ।। ୧୨୧ ।।**
**ନିୟତଂ ଶ୍ରେୟସୋ ହେତୁସ୍ତଦ୍‌ଗାନ୍ଧର୍ବଂ ଜଗୁର୍ବୁଧାଃ ।**
**ଅତିଶୁଦ୍ଧରୂପମପି ସାଂପ୍ରତଂ ନୈବ ଗୋଚରମ୍ ।। ୧୨୨ ।।**

ଅନାଦିକାଳର ବିଷୟ ହୋଇ ଯାହା ଗନ୍ଧର୍ବଙ୍କଦ୍ୱାରା ପ୍ରୟୋଗ ହୁଏ, ତାହା ନିଶ୍ଚିତଭାବେ ଶ୍ରେୟର କାରଣ । ସେହି ଗାନ୍ଧର୍ବ

ଗାନକୁ ପଣ୍ଡିତମାନେ ଗାଉଥିଲେ । ତାହାର ଅତି ଶୁଦ୍ଧରୂପ, ଆଜିକାଲି ଦେଖାଯାଉନାହିଁ ।

## ଦେଶୀ

ଅଧୁନା ଲକ୍ଷ୍ୟମାର୍ଗେ ଯତ୍‌ସ୍ୱରୂପଂ ପରିଦୃଶ୍ୟତେ ।
ତତ୍‌ସର୍ବଂ ଦେଶୀସଂଜ୍ଞଂ ସ୍ୟାଦିତ୍ୟାହୁର୍ଲକ୍ଷ୍ୟବେଦିନଃ ।। ୧୨୩ ।।
ଯତ୍ତୁ ବାଗ୍ଗେୟକାରେଣ ରଚିତଂ ଲକ୍ଷଣାନ୍ୱିତମ୍ ।
ଦେଶୀରାଗାଦିଷୁ ପ୍ରୋକ୍ତଂ ତଦ୍‌ଗାନଂ ଜନ-ରଞ୍ଜନମ୍ ।। ୧୨୪ ।।

ଆଜିକାଲି ଲକ୍ଷମାର୍ଗରେ ଯେଉଁ ରାଗର ରୂପ ଦେଖାଯାଏ ସେସବୁ ଦେଶୀସଂଜ୍ଞକ । ଏହା ସଂଗୀତ-ଲକ୍ଷ୍ୟଜ୍ଞମାନେ କହିଅଛନ୍ତି । କିନ୍ତୁ ଯାହା ଗାୟକଙ୍କ ଦ୍ୱାରା ଲକ୍ଷଣଯୁକ୍ତ ହୋଇ ରଚିତ, ତାହା ଦେଶୀ ରାଗାଦିରେ କଥିତ । ସେହି ଗାନ ଲୋକ ରଞ୍ଜନ କରେ ।

## ବିବିଧଦେଶୀଲକ୍ଷଣମ୍

ଦେଶୀ ରାଜତୟା ପ୍ରୋକ୍ତଂ ରାଗାଂଗାଦି ଚତୁଷ୍ଟୟମ୍ ।
ଦେଶୀତ୍ୱଂ ନାମ ତତ୍ ପ୍ରୋକ୍ତଂ କାମାଚାରପ୍ରବର୍ତ୍ତନମ୍ ।। ୧୨୫ ।।
ଚତୁସ୍ତ୍ରି ଦ୍ୱିଶ୍ରୁତିରିତିନିୟମୋ ଯଃ ପୁରୋଦିତଃ ।
ସ୍ୱଦେଶୀ ରାଗଭାଷାଦିଷ୍ୱନ୍ୟଥାପି କ୍ୱଚିଦ୍ କୃତଃ ।। ୧୨୬ ।।
ତତ୍ର ଗାନ୍ଧର୍ବମୁକ୍ତଂ ପ୍ରାଗଧୁନା ଗାନମୁଚ୍ୟତେ ।
ନିବଦ୍ଧମନିବଦ୍ଧଂ ତଂ ଦ୍ୱିଧା ନିଗଦ୍ୟତେ ବୁଧୈଃ ।। ୧୨୭ ।।
ବଦ୍ଧଂ ଧାତୁଭିରଙ୍ଗୈଶ୍ଚ ନିବଦ୍ଧମଭିଧୀୟତେ ।
ଆଲପ୍ତିର୍ବନ୍ଧହୀନତ୍ୱାଦନିବଦ୍ଧମିତୀରିତା ।। ୧୨୮ ।।

ରାଗାଙ୍ଗ ଆଦି ଚାରିଗୋଟି ଦେଶୀ ରାଗରୂପରେ କଥିତ। ଯାହା ଇଚ୍ଛାନୁସାରେ କରାଯାଏ, ତାହାର ନାମ ଦେଶୀ। ଚାରି-ତିନି ଦୁଇ ଶ୍ରୁତିର ନିୟମରେ ଯାହା ପୂର୍ବେ କୁହାଯାଇଅଛି, ତାହା ଭାଷାଦିମାନଙ୍କରେ ଦେଶୀ ରାଗ, ଅନ୍ୟପ୍ରକାର କ୍ୱଚିତ୍ କରାଯାଇଥାଏ। ସେକାଳରେ ଯାହାକୁ ଗାନ୍ଧର୍ବ କୁହାଯାଉଥିଲା ଆଜିକାଲି ତାହାକୁ ଗାନ କୁହାଯାଏ। ପଣ୍ଡିତମାନେ ତାହାକୁ ନିବଦ୍ଧ ଓ ଅନିବଦ୍ଧରୂପେ ଦ୍ୱିବିଧ କହନ୍ତି। ଧାତୁମାନଙ୍କ ଓ ଅଙ୍ଗମାନଙ୍କ ଦ୍ୱାରା ବଦ୍ଧକୁ ନିବଦ୍ଧ କହନ୍ତି। ଆଁଳାପରେ ବନ୍ଧାହୋଇ ନଥିଲେ ଅନିବଦ୍ଧରୂପେ କୁହାଯାଏ।

## ଭାଷାଗୀତି-ଲକ୍ଷଣମ୍

ଭାଷାଗୀତିଃ ସମାଖ୍ୟାତା ଏଷା ଗୀତିବିଚକ୍ଷଣୈଃ।
ଯଥା ବୈ ରଂଜ୍ୟତେ ଲୋକସ୍ତଥା ବୈ ସଂପ୍ରଯୁଜ୍ୟତେ ।। ୧୨୯ ।।

ଯେପରି ଲୋକଙ୍କ ମନୋରଞ୍ଜନ ହେବ, ସେପରି ପ୍ରୟୋଗକୁ ଭାଷାଗୀତି ଗୀତ ଜାଣିବା ପଣ୍ଡିତମାନେ କହନ୍ତି।

## ଚତୁର୍ବିଧଗୀତସଂଜ୍ଞା

ବର୍ଣ୍ଣାଦ୍ୟଳଂକୃତା ଗାନକ୍ରିୟା ପଦଲୟାନ୍ୱିତା।
ଗୀତିରିତ୍ୟୁଚ୍ୟତେ ସା ଚ ବୁଧୈରୁକ୍ତା ଚତୁର୍ବିଧା ।। ୧୩୦ ।।
ମାଗଧୀ ପ୍ରଥମା ଜ୍ଞେୟା ଦ୍ୱିତୀୟେ ଚାର୍ଦ୍ଧମାଗଧୀ।
ସଂଭାବିତା ଚ ପୃଥୁଳେତ୍ୟେତାସାଂ ଲକ୍ଷ୍ମ ଚକ୍ଷ୍ମହେ ।। ୧୩୧ ।।
(ସଂ.ଚ.)

ବର୍ଣ୍ଣାଦିଦ୍ୱାରା ଅଳଂକୃତ ଓ ପଦରେ ଲକ୍ଷଯୁକ୍ତ ହେଲେ ଗାନକ୍ରିୟା ଗୀତି ବୋଲି ତାହା କଥିତ। ତାହାକୁ ପଣ୍ଡିତମାନେ ଚାରିପ୍ରକାର ବୋଲି କହନ୍ତି। ପ୍ରଥମରେ ମାଗଧୀ, ଦ୍ୱିତୀୟରେ ଅର୍ଦ୍ଧମାଗଧୀ, ତୃତୀୟରେ ସମ୍ଭାବିତା, ଚତୁର୍ଥରେ ପୃଥୁଳା। ଏମାନଙ୍କର ଲକ୍ଷଣ କୁହାଯାଉଅଛି।

## ମାଗଧୀ-ଲକ୍ଷଣମ୍

ଗୀତ୍ୱା କଳାୟାମାଦ୍ୟାୟାଂ ବିଳମ୍ବିତଲୟଂ ପଦମ୍।
ଦ୍ୱିତୀୟାୟାଂ ମଧ୍ୟଲୟଂ ତଦ୍ ପଦାନ୍ତରସଂଯୁତମ୍।। ୧୩୨ ।।
ସ ତୃତୀୟପଦେ ତେ ଚ ତୃତୀୟସ୍ୟାଂ ଦ୍ରୁତେ ଲୟେ।
ଇତି ତ୍ରିରାବୃତ୍ତପଦାଂ ମାଗଧୀ ଜଗଦୁର୍ବୁଧାଃ।। ୧୩୩।।

(ସଂ:ର:)

ଆଦ୍ୟକଳାରେ ବିଳମ୍ବିତ-ଲୟରେ ପଦକୁ ଗାନ କରି ତାହାକୁ ଅନ୍ୟ ପଦରେ ଯୋଗ କରି ଦ୍ୱିତୀୟରେ ମଧ୍ୟଲୟରେ, ତୃତୀୟରେ ଦ୍ରୁତଲୟରେ ହେବ। ଏହି ତ୍ରିବିଧ ଆବୃତ୍ତି ପଦକୁ ମାଗଧୀ ବୋଲି ପଣ୍ଡିତମାନେ କହନ୍ତି।

ଉଦାହରଣ:-ଆଦ୍ୟ-ମାଗା ମାଧା
ଦେ ବଂ
ଦ୍ୱିତୀୟ-ଧନି ଧନି ସନ ଧା
ଦେ ବଂ ରୁ ଦ୍ରୁ
ତୃତୀୟ-ରିଗ ରିଗ ମଗ ରିସା
ଦେବଂ ରୁଦ୍ରଂ ବଂ ଦେ

**ଅତ୍ର ଲିଖିତୋଦାହରଣାଦନ୍ୟତ୍ରାପ୍ୟେବମେବାହନୀୟମ୍। ଅସ୍ୟା ମଗଧଦେଶୋଦ୍ଭବତ୍ୱାନ୍ମଗଧୀତି ନିରୁକ୍ତିର୍ମତଙ୍ଗୋକ୍ତା। ସଂ.ର.**

ଏଠାରେ ଲିଖିତ ଉଦାହରଣରୁ ଅନ୍ୟତ୍ର ମଧ୍ୟ ଏହିପରି ତର୍କଣା କରିବ। ଏହା ମଗଧଦେଶରୁ ଜାତ ହେବାହେତୁ ଏହା ମାଗଧୀ- ଏହା ମତଙ୍ଗ କହିଅଛନ୍ତି।

## ଅର୍ଦ୍ଧମାଗଧୀ

**ପୂର୍ବୟୋଃ ପଦୟୋରର୍ଦ୍ଧେ ଚରମେ ଦ୍ୱିର୍ଯଦୋଦିତେ।**
**ତଦାଽର୍ଦ୍ଧମାଗଧୀ ପ୍ରାହୁଃ ଦ୍ୱିରାବୃତ୍ତପଦାଂ ପରେ ।। ୧୩୪ ।।**

ପୂର୍ବପଦଦ୍ୱୟର ଅର୍ଦ୍ଧରେ ଓ ଶେଷରେ ଦୁଇଥର କୁହାଗଲେ ଅର୍ଦ୍ଧମାଗଧୀ ବୋଲି କହନ୍ତି।

ଯଥା:-ମା ରି ଗା ସା
ଦେ ବଂ
ସା ସା ଧା ନି
ବଂ ରୁ ଦ୍ରଂ
ପା ଧା ପା ମା
ଦେ ବଂ ଦେ

ଯଥା:-ମା ମା ମା ମା
ଦେ ବଂ
ଧା ସା ଧ ନି
ଦେ ବଂ ର ଦ୍ରଂ
ପା ନିଧ ମା ମା
ର ଦ୍ରଂ ବଂ ଦେ

## ସଂଭାବିତା-ଲକ୍ଷଣମ୍

**ସଂକ୍ଷିପିତପଦା ଭୂରିଗୁରୁଃ ସଂଭାବିତା ମତା ।**

**ପଦଗୁଡ଼ିକ ସଂକ୍ଷିପ୍ତ ହୋଇ ବହୁତ ଗୁରୁ ହେଲେ ସଂଭାବିତା ହୁଏ ।**

**ଯଥାଃ- ଧା ମା ରି ଗା । ରି ଗା ସା ସା**
**ଭ କ୍ତ୍ୟା । ଦେ ବଂ**
**ନି ଧା ସା ନି । ଧା ନି ମା ମା**
**ରୁ ଦ୍ରଂ । ବଂ ଦେ**

**ଭୂରି ଲଘ୍ୱକ୍ଷର ପଦା ପୃଥୁଳା ସଂମତା ସତାମ୍ ।। ୧୩୫ ।।**

ବହୁତ ଲଘୁ ଅକ୍ଷରରେ ପଦ ହେଲେ ପୃଥୁଳା ହୁଏ ।
ଯଥା-ମା ଗା ରି ଗା । ସା ଧାନି ଧା ଧା
ସୁ ର ନ ତ । ଦ ରଂ ପଦ
ଧା ସା ଧା ନି । ପା ନିଧପ ମା ମା
ଯୁ ଗ ଳଂ । ପ୍ର ଣ ମ ତ

**ଚତୁର୍ବିଧା ପ୍ରବୃତ୍ତିଶ୍ଚ ପ୍ରୋକ୍ତା ନାଟ୍ୟପ୍ରଯୋକ୍ତୃଭିଃ ।**
**ଆବନ୍ତୀ ଦାକ୍ଷିଣାତ୍ୟା ଚ ପାଞ୍ଚାଳୀ ଚୋଡ୍ରମାଗଧୀ ।। ୧୩୬ ।।**
**(ଭରତ ୧୩ଶ ଅଧ୍ୟାୟ-୨୫ ଶ୍ଳୋକ)**

ନାଟ୍ୟ-ପ୍ରୟୋଗକାରୀଙ୍କଦ୍ୱାରା ଚାରିଗୋଟି ନାଟ୍ୟ ପ୍ରବୃତ୍ତି ଅନୁସାରେ ବିଭକ୍ତ ହୋଇଅଛି; ଯଥା-ଆବନ୍ତୀ, ଦାକ୍ଷିଣାତ୍ୟା, ପାଞ୍ଚାଳୀ ଓ ଉଡ୍ର ବା ଔଡ୍ରମାଗଧୀ ।

ଓଡ଼ିଶାର ସଙ୍ଗୀତ ଓ ନାଟ୍ୟ ଔଡ୍ରମାଗଧୀର ଅନ୍ତର୍ଗତ, ତହୁଁ ଏହା ଅତି ପ୍ରାଚୀନ କାଳରୁ ପ୍ରସିଦ୍ଧି ଲଭିଥିବାରୁ ମାଗଧୀ

ସହିତ ଔଡ୍ରୀ ଗୃହୀତ ହୋଇଅଛି- ଅନ୍ୟ କୌଣସି ଦେଶର ନାମ ମାଗଧୀ ସହିତ ନ ଥିବାରୁ।

ଅଙ୍ଗବଙ୍ଗକଳିଙ୍ଗାଶ୍ଚ ବତ୍ସାଶ୍ଚୌଡ୍ର ମାଗଧାଃ।
ପୌଣ୍ଡ୍ର ନେପାଳିକାଶ୍ଚୈବ ଅନ୍ତର୍ଗିରିବହିର୍ଗିରା।। ୧୩୭ ।।
ତତ୍ର ବଙ୍ଗସମାଜ୍ଞେୟା ମଲ୍ଲ ଚାମଲ୍ଲବର୍ଗକାଃ।
ବ୍ରହ୍ମୋତ୍ତରପ୍ରଭୃତୟୋ ଭାର୍ଗବାଭାର୍ଗାବାସ୍ତଥା ।। ୧୩୮ ।।
ପ୍ରାଗ୍‌ଜ୍ୟୋତିଷାଃ ପୁଲିନ୍ଦାଶ୍ଚ ବୈଦେହାସ୍ତାମ୍ରଲିପ୍ତକାଃ।
ପ୍ରାଗାଃ ପ୍ରାବୃତୟାଶ୍ଚୈବ ଯୁଞ୍ଜନ୍ତି ଚୌଡ୍ରମାଗଧୀମ୍।। ୧୩୯ ।।
ଅନ୍ୟେଽପି ଦେଶା ଏଭ୍ୟୋ ଯେ ପୁରାଣେ ସଂପ୍ରକୀର୍ତ୍ତିତାଃ।
ତେଷୁ ପ୍ରଯୁଜ୍ୟତେ ହ୍ୟେଷା ପ୍ରବୃତ୍ତିଶ୍ଚୌଡ୍ରମାଗଧୀ।। ୧୪୦ ।।
(ଭରତ-୧୩ଅଧ୍ୟାୟ-୩୨-୩୫ଶ୍ଳୋକ)

ଅଙ୍ଗ, ବଙ୍ଗ, କଳିଙ୍ଗ, ବତ୍ସ, ଉଡ୍ର, ମାଗଧ, ପୌଣ୍ଡ୍ର, ନେପାଳ, ଅନ୍ତର୍ଗିରି, ବହିର୍ଗିର, ମଲଚା, ମଲବର୍ଗକ, ବ୍ରହ୍ମୋତ୍ତର ଦେଶ ପ୍ରଭୃତି ଭାର୍ଗବ ଓ ଅଭାର୍ଗବ ବଙ୍ଗତୁଲ୍ୟ, ପ୍ରାଗଜ୍ୟୋତିଷ, ପୁଲିନ୍ଦ, ବୈଦେହ (ବିଦେହ), ତାମ୍ରଲିପ୍ତ, ପ୍ରାଗ (ପ୍ରୟାଗ), ପ୍ରାବୃତିମାନେ ଔଡ୍ରମାଗଧୀ ପ୍ରୟୋଗ କରନ୍ତି- ଏମାନଙ୍କଠାରୁ ଅନ୍ୟ ଭିନ୍ନ ଦେଶମାନେ ଯେ ପୁରାଣମାନଙ୍କରେ କଥିତ ସେମାନଙ୍କ ଦେଶରେ ମଧ ଏହି ଔଡ୍ରମାଗଧୀ ପ୍ରବୃତ୍ତି ବିଦ୍ୟମାନ।

ପୂର୍ବୋକ୍ତଗୀତାନାଂ ତାନଲକ୍ଷଣମ୍

ଯଦ୍‌ବା ଯଥାକ୍ଷରେ ଯୁକ୍ତେ ଗୁର୍ବୌ ପ୍ରଥମୟୋର୍ଯଦା।
ଏକୈକଂ ଚିତ୍ରମାର୍ଗାଦି ପ୍ରଯୁଜ୍ୟ ଚ ଗୁଣାତ୍ମକମ୍।। ୧୪୧ ।।

**ମାତ୍ରାଭିରଷ୍ଟଭିର୍ଯୁକ୍ତଂ ଦକ୍ଷିଣେ ଧ୍ରୁବକାଦିଭିଃ ।**
**ପ୍ରଯୁଜ୍ୟତେ ତଦା ଗୀତିର୍ମାଗଧୀତ୍ୟଭିଧୀୟତେ ।। ୧୪୨ ।।**
**ଦ୍ୱିତୀୟଂ ଲଘୁ ଯୁଗ୍ମସ୍ୟ ଛଗଣାର୍ଦ୍ଧଯୁତଂ ଯଦା ।।**
ଆଦ୍ୟାଭ୍ୟାମନ୍ତିମାଭ୍ୟାଂ ଚ ମାତ୍ରାଭ୍ୟାଂ ସଂପ୍ରଯୁଜ୍ୟତେ ।। ୧୪୩ ।।
ତତଃ ପ୍ଲୁତଂ ସାର୍ଦ୍ଧଗୁଣଯୁକ୍ତଂ କୃତ୍ୱା ପ୍ରଯୁଜ୍ୟତେ ।
**ଧ୍ରୁବକାଦିଭିରଷ୍ଟାଭିର୍ଦ୍ୱିରୁକ୍ତାନ୍ତ୍ୟଦ୍ୱୟେ ନ ଚ ।। ୧୪୪ ।।**
ତଦାର୍ଦ୍ଧମାଗାଧୀ ତେ ଦ୍ୱେ ତଦ୍‌ବରାଳାନ୍ତରେଷ୍ୱପି ।
ସମ୍ଭାବିତା ଭୂରିଗୁରୁର୍ଦ୍ୱିକଳେ ବାର୍ତ୍ତିକେ ପଥି ।
ଚତୁଷ୍କଳେ ଭୂରିଲଘୁର୍ଦ୍ଦକ୍ଷିଣେ ପୃଥୁଳା ମତା ।। ୧୪୫ ।।

(ସଂ:ର:)

ଦୁଇଗୋଟି ଅକ୍ଷର ଗୁରୁ ହୋଇ ଗୋଟିଏ ଗୋଟିଏ ଗୁଣଯୁକ୍ତ ହେଲେ ଚିତ୍ରମାର୍ଗରେ ପ୍ରଯୁଜ୍ୟ ହେବାପାଇଁ ଆଠମାତ୍ରା ଯୁକ୍ତ ହେବ ଓ ଦକ୍ଷିଣରେ ଧ୍ରୁବକାଦିରେ ପ୍ରଯୁକ୍ତ ହେଲେ ଗୀତିମାଗଧୀ ହୁଏ । ଦୁଇଗୋଟି ଅକ୍ଷର ତାଳ ଅବୟବରୂପରେ ଗୁରୁ ହୋଇ ପରବର୍ତ୍ତୀ ଛ'ମାତ୍ରା ଗଣବିଶେଷରେ ତିନିମାତ୍ରାକୁ ଚାରି ଲଘୁମାତ୍ରାରେ କରାଯାଏ । ଆଦିମାତ୍ରା ଧ୍ରୁବାକାସର୍ପିଣୀ ଦୁଇଟି ପତାକାରେ ଥିବା ଦୁଇଦ୍ୱାରା ପ୍ରୟୋଗରେ ପ୍ଲୁତ ହୁଏ, ତାହା ତ୍ରିମାତ୍ରିକ ନଅଟି ମାତ୍ରା ଯୋଗରେ ତ୍ରିମାତ୍ରିକ ଅନୁସାରେ ପ୍ଲୁତ ହୋଇ ଦ୍ୱାଦଶମାତ୍ରା ହୁଏ । ଏହାକୁ ଅର୍ଦ୍ଧମାଗଧୀ କହନ୍ତି । ବହୁତ ଗୁରୁ ଦୁଇମାତ୍ରାରେ ସଂଭାବିତା ହୁଏ । ଚାରିମାତ୍ରାବିଶିଷ୍ଟର ବହୁତ ଲଘୁ-ପ୍ରୟୋଗରେ ପୃଥୁଳା ହୁଏ ।

### ଗୀତଭେଦାଃ

**ଗୀତୟଃ ପଞ୍ଚ ଶୁଦ୍ଧାଦ୍ୟା ଭିନ୍ନା ଗୌଡ଼ୀ ଚ ବେସରା ।**
**ସାଧାରଣୀତି ଶୁଦ୍ଧା ସ୍ୟାଦ୍‌ବକ୍ରୈଶ୍ଚ ଲଳିତୈଃ ସ୍ୱରୈଃ ।। ୧୪୬ ।।**

ଭିନ୍ନା ସୂକ୍ଷ୍ମୈଃ ସ୍ୱରୈର୍ବକ୍ରୈର୍ମଧୁରୈର୍ଗମକୈର୍ଯୁତା ।
ଗାଢ଼ୈସ୍ତ୍ରିସ୍ଥାନ ଗମକୈରୁହାଟୀ ଲଳିତୈଃ ସ୍ୱରୈଃ ।। ୧୪୭ ।।
ଅଖଣ୍ଡିତସ୍ଥିତିଃ ସ୍ଥାନତ୍ରୟେ ଗୌଢ଼ୀ ମତା ସତାମ୍ ।
ଉହାଟି କମ୍ପିତୈର୍ମନ୍ଦ୍ରୈର୍ଦ୍ରୁତୈର୍ଦ୍ରୁତତରୈଃ ସ୍ୱରୈଃ ।। ୧୪୮ ।।
ହକାରୋକାରଯୋଗେନ ହୃନ୍ୟସ୍ତେ ଚିବୁକେ ଭବେତ୍ ।
ବେଗବଦ୍‌ଭିଃ ସ୍ୱରୈର୍ବର୍ଣ୍ଣଚତୁଷ୍କେପ୍ୟତି ରକ୍ତିତଃ ।। ୧୪୯ ।।
ବେଗସ୍ୱରା ରାଗଗୀତିର୍ବେସରା ଚୋଚ୍ୟତେ ବୁଧୈଃ ।

(ସଂ.ର.)

ଚତୁର୍ଗୀତିଗତଂ ଲକ୍ଷ୍ମଶ୍ରିତା ସାଧାରଣୀ ମତା ।
ଶୁଦ୍ଧାଦିଗୀତିଯୋଗେନ ରାଗା ଶୁଦ୍ଧାଦୟୋ ମତା ।। ୧୫୦ ।।

ଗୀତସବୁ ପାଞ୍ଚପ୍ରକାର; ଯଥା-ଶୁଦ୍ଧା, ଭିନ୍ନା, ଗୌଡ଼ୀ, ବେସରା ଓ ସାଧାରଣୀ । ବକ୍ର ନ ହୋଇ ଲଳିତ ସ୍ୱରମାନଙ୍କର ପ୍ରୟୋଗରେ ଶୁଦ୍ଧା; ବକ୍ର, ମଧୁର, ଗମକ, ସୂକ୍ଷ୍ମସ୍ୱର ଯୋଗରେ ଭିନ୍ନା । ଗାଢ଼ ତିନିସ୍ଥାନର ଗମକ ଉହାଟି ଲଳିତ ସ୍ୱରମାନଙ୍କରେ ପୂର୍ଣ୍ଣସ୍ଥିତି ସ୍ଥାନତ୍ରୟରେ ଗୌଡ଼ୀ ହୁଏ । ଏହା ପଣ୍ଡିତମାନଙ୍କର ମତ । (ଉହାଟି, ଅହାଟୀ ଓ ଓହାଟିର ଅର୍ଥ ମୃଦୁ କୋମଳ କରିବା ନିମନ୍ତେ କମ୍ପିତାଖ୍ୟ ଗମକଯୁକ୍ତ ମନ୍ଦ୍ରସ୍ୱରରେ ହୁଏ । ତ୍ରିସ୍ଥାନ ଅର୍ଥ ମନ୍ଦ୍ର, ମଧ ଓ ତାର । ପୁନଶ୍ଚ ଉ (ଓ) ହାଟୀ, କମ୍ପିତ, ମନ୍ଦ୍ର, ଦ୍ରୁତ ଓ ଦ୍ରୁତତର ସ୍ୱରରେ ହକାର ଯୋଗରେ ଚିବୁକକୁ ହୃଦରେ ନ୍ୟସ୍ତ କରି ଗାଇଲେ ଏହା ହୁଏ ।

ଚାରିବର୍ଣ୍ଣରେ ବେଗଯୁକ୍ତ ସ୍ୱରମାନଙ୍କଦ୍ୱାରା ମଧ ଅତିରଞ୍ଜନରୁ ବେସ୍ୱର ରାଗଗୀତିକୁ ବେସରା ବୋଲି ପଣ୍ଡିତମାନେ କହନ୍ତି ।

ଏହିପରି କଥିତ ଚାରିଗୀତିକୁ ଆଶ୍ରୟ କରିଥିବା ଲକ୍ଷଣମାନ ଯୁକ୍ତ ହେଲେ ସାଧାରଣୀ ହୁଏ। ଶୁଦ୍ଧାଦି ଗୀତିଯୋଗରେ ରାଗମାନେ ଶୁଦ୍ଧାଦି ବୋଲାନ୍ତି।

## ଷାଡ଼ବୌଡ଼ବରାଗେ ବାଦୀନିର୍ଣ୍ଣୟଃ

ଷାଡ଼ବୌଡ଼ବରାଗେଷୁ ବର୍ଜ୍ୟନ୍ତେ ଯେ ସ୍ୱରାଃ ପୁନଃ।
ତଦାଶ୍ରୟଶ୍ରୁତୀନାଂ କିଂ ତ୍ୟାଗଃ କିଂ ଚୋତ୍ତରାନ୍ୱୟଃ॥ ୧୫୧॥
ଅତ୍ରେଦମୁତ୍ତରଂ ବ୍ରୂମୋବର୍ଜନୀୟ ସ୍ୱରାଶ୍ରୟାଃ।
ଶ୍ରୁତୟୋ ନୈବ ବର୍ଜ୍ୟନ୍ତେ ନ ଚ ଯାନ୍ତ୍ୟୁତ୍ତରସ୍ୱରାନ୍॥ ୧୫୨॥
କିନ୍ତୁ ବର୍ଜ୍ୟସ୍ୱରେଷ୍ୱେବାଧଷ୍ଠିଷନ୍ତି ହି ତାଃ ପୁନଃ।
ସମ୍ଭବନ୍ତ୍ୟୁପଯୋଗି ନ୍ୟଃଶ୍ରୁତୀନାଂ ଗଣନାକ୍ରମେ॥ ୧୫୩॥
ପ୍ରତିମେଳଂ ଚ ଯତ୍ ସପ୍ତ ନିୟତସ୍ୱର-ସିଦ୍ଧୟେ।
ଦ୍ୱାବିଂଶତିଶ୍ରୁତୀନାମପ୍ୟବଶ୍ୟଂ ଭାଗ ଇଷ୍ୟତେ॥ ୧୫୪॥
ସୂକ୍ଷ୍ମସ୍ୱରପ୍ରୟୋଗାଣାଂ ବିଧାନଂ ଶ୍ରୂୟତେ କ୍ୱଚିତ୍।
ଗ୍ରନ୍ଥୋକ୍ତନିୟମା ଭାବାଉଚର୍ଚା ବାଦମୂଳକା॥ ୧୫୫॥

ଯେ ସ୍ୱରମାନେ ପୁଣି ଷାଡ଼ବ, ଔଡ଼ବ ରାଗମାନଙ୍କରେ ତ୍ୟକ୍ତ ହୁଅନ୍ତି, ତାହାକୁ ଆଶ୍ରୟ କରିଥିବା ଶ୍ରୁତିମାନଙ୍କର ତ୍ୟାଗ କ'ଣ ବା ପରେ ଯୋଗ କ'ଣ, ଏଥିର ଉତ୍ତର କହୁଛୁ। ବର୍ଜନୀୟ ସ୍ୱରାଶ୍ରୟ ଶ୍ରୁତିମାନେ ବର୍ଜିତ ହୁଅନ୍ତି ନାହିଁ ବା ଉତ୍ତର ସ୍ୱରକୁ ଯାଆନ୍ତି ନାହିଁ। କିନ୍ତୁ ବର୍ଜ୍ୟ ସ୍ୱରମାନଙ୍କ ମଧ୍ୟରେ ତରେ ଥାଆନ୍ତି, ପୁଣି ସେସବୁ ଶ୍ରୁତିମାନଙ୍କର ଗଣନା-କ୍ରମରେ ସପ୍ତସ୍ଥିରସ୍ୱର ସିଦ୍ଧିଲାଗି ପ୍ରତି ମେଳରେ ଉପଯୋଗୀ ହୁଅନ୍ତି। ଅବଶ୍ୟ ଶ୍ରୁତିମାନଙ୍କର

ବାଇଶିଗୋଟିର ଭାଗ କରାଯାଏ। ସୂକ୍ଷ୍ମସ୍ୱର ପ୍ରୟୋଗମାନଙ୍କର କ୍ୱଚିତ୍ କାର୍ଯ୍ୟ ଶୁଣାଯାଏ। ଗ୍ରନ୍ଥାରେ ନିୟମ କୁହାଯାଇ ନଥିବାରୁ ତାହାର ଚର୍ଚ୍ଚା ବାଦଜନକ ଅଟେ।

### ଆଳାପଲକ୍ଷଣମ୍

ଗ୍ରହାଂଶ ମନ୍ଦ୍ରତାରାଣାଂ ନ୍ୟାସାପନ୍ୟାସୟୋସ୍ତଥା।
ଅଳ୍ପତ୍ୱସ୍ୟ ବହୁତ୍ୱସ୍ୟ ଷାଡ଼ବୌଡ଼ବୟୋରପି।
ଅଭିବ୍ୟକ୍ତିର୍ଯତ୍ର ଦୃଷ୍ଟା ସ ରାଗାଳାପ ଉଚ୍ୟତେ।।। ୧୫୬।।

(ସଂ.ର.)

ଯତ୍ର ଯସ୍ମିନ୍ ସ୍ୱରସଂନିବେଶବିଶେଷେଣ ଗ୍ରହାଂଶାଦିନା ମୁକ୍ତଲକ୍ଷଣାନାଂ ସ୍ୱରାଣାମଳ୍ପତ୍ୱାଦୀନାଂ ତଦ୍ଧର୍ମାଣାଂ ଚ ଅଭ୍ରୈତେଷାମେବେତ୍ୟବଧାରଣଂ କର୍ତ୍ତବ୍ୟମ୍। ତେନାସ୍ୟ ଧାତ୍ୱଙ୍ଗବନ୍ଧେଭ୍ୟଃ ପ୍ରବଂଧେଭ୍ୟୋ ବୈଲକ୍ଷଣ୍ୟଂ ବିବକ୍ଷିତଂ ଭବତି ତେଷାଂ ଗ୍ରହାଂଶାଦୀନାମେବାଭିବ୍ୟକ୍ତିଃ ସ୍ୱରୂପ ପ୍ରକାଶନମାବିର୍ଭାବ ଇତ୍ୟର୍ଥଃ। ନ ତୁ ସ୍ୱରୂପପ୍ରକଟୀକରଣମାତ୍ରମ୍ ଅନେନବକ୍ଷ୍ୟମାଣଲକ୍ଷଣାୟାଽଽଳପ୍ତେରସ୍ୟଭେଦୋ ଦର୍ଶିତଃ। ସାଽଭିବ୍ୟକ୍ତିର୍ଦୃଷ୍ଟା ଜ୍ଞାତା ଭବତି। ତଜ୍ଞୈରିତିଶେଷଃ। ସ ସ୍ୱରସଂନିବେଶ ବିଶେଷୋ ରାଗାଳାପ ଇତ୍ୟୁଚ୍ୟତେ।

ଗ୍ରହ, ଅଂଶ, ବନ୍ଦ୍ର, ତାରାମାନଙ୍କର ନ୍ୟାସ, ଅପନ୍ୟାସ, ପୁଣି ଷାଡ଼ବ ଔଡ଼ବର ଅଳ୍ପତ୍ୱ ଓ ବହୁତ୍ୱର ପ୍ରକାଶ ଯେଉଁଠାରେ ଦୃଷ୍ଟ ହୁଏ ତାହାକୁ ରାଗାଳାପ କହନ୍ତି। ଯେଉଁଠାରେ ଯେଉଁ ସ୍ୱର ସନ୍ନିବେଶରେ ବିଶେଷଭାବରେ ଗ୍ରହ, ଅଂଶ ଆଦିଙ୍କର ଉକ୍ତ

ଲକ୍ଷଣ ସ୍ୱରମାନଙ୍କର ଅଂଶତ୍ୱାଦିର ଓ ସେମାନଙ୍କ ଧର୍ମମାନଙ୍କରେ ପ୍ରୟୋଗ ହୁଏ। ଏଠାରେ ସେମାନଙ୍କର ନିର୍ଣ୍ଣୟ କରିବା ଉଚିତ୍। ତେଣୁ ଅଳାପାର ଧାତୁ ଅଙ୍ଗରେ ବନ୍ଧାହୋଇଥିବା ପ୍ରବନ୍ଧମାନଙ୍କଠାରୁ ଭିନ୍ନତା କୁହାଯାଉଅଛି। ସେମାନଙ୍କର ଗ୍ରହ, ଅଂଶ ଆଦିମାନଙ୍କର ପ୍ରକାଶ ଓ ସ୍ୱରୂପ ପ୍ରକାଶ ଦେଖାଦିଏ। କେବଳ ସ୍ୱରୂପ ଅଳାପଠାରୁ ନୁହେଁ, ଏହାଦ୍ୱାରା କୁହାଯିବା ଲକ୍ଷଣଯୁକ୍ତ ଆଳାପଠାରୁ ଏହାର ଭେଦ ଦେଖାଇ ଦିଆଯାଇଅଛି। ସେହି ପ୍ରକାଶ ତାହା ଜାଣିଥିବା ଲୋକଙ୍କଦ୍ୱାରା ଦୃଷ୍ଟ ଓ ଜ୍ଞାତ ହୁଏ। ସେହି ସ୍ୱରସନ୍ନିବେଶବିଶେଷକୁ ରାଗାଳାପ କହନ୍ତି।

### ରୂପକାଳାପଲକ୍ଷଣମ୍

ରୂପକଂ ତଦ୍‌ବଦେବ ସ୍ୟାଦ୍ ପୃଥଗ୍‌ଭୂତବିଦାରିକମ୍ ରୂପକଂ ତଦ୍‌ବଦେବାଃଃଳାପବଦେବସ୍ୟାଦ୍। ବିଶେଷସ୍ତୁ ପୃଥଗ୍‌ଭୂତା ବିଚ୍ଛିଦ୍ୟ ବିଚ୍ଛିଦ୍ୟ ପ୍ରଯୁକ୍ତ ବିଦାର୍ଯ୍ୟୋ ଗୀତଖଣ୍ଡାନି ଯସ୍ମିନିତି ତଥୋକ୍ତଂ ଅୟମର୍ଥଃ। ଅପନ୍ୟାସେଷୁବିରମ୍ୟ ବିରମ୍ୟ ପ୍ରବୃତ୍ତଂ ରୂପକମ୍।

ରୂପକ ସେହିଭଳି ହୁଏ। ଖଣ୍ଡ ଖଣ୍ଡ ହେବା ହେତୁ ଏହା ତାହାଠାରୁ ପୃଥକ୍। ରୂପକ ସେହିପରି ଆଳାପଭଳି ହୁଏ। ବିଶେଷତ୍ୱ କିନ୍ତୁ ଭିନ୍ନ ଭିନ୍ନ ହୋଇ ଖଣ୍ଡ ଖଣ୍ଡ ପ୍ରଯୁକ୍ତ ଭଙ୍ଗା ଗୀତଖଣ୍ଡମାନ ଯେଉଁଠାରେ ଏହି ଅର୍ଥ ଉକ୍ତ ହୋଇଅଛି। ଅପନ୍ୟାସମାନଙ୍କରେ ରହି ରହି ଏକ ପ୍ରକାରରେ କରିବା ଆଳାପ। ତାହାହିଁ ଅପନ୍ୟାସମାନଙ୍କରେ ରହି ରହି କରିବା ରୂପକ ଅଟେ।

## ଆଳପ୍ତିକା

ରାଗସ୍ୟ ତସ୍ୟାଳପନଂ କିଳାହୁ
ରାଲପ୍ତିକାଂ ଗୀତକଳାପ୍ରବୀଣାଃ।
ଆଳପ୍ତିରେଷାଦ୍ୱିବିଧା ଚ ରାଗ
ପୂର୍ବା ଚ ସାରୂପକପୂର୍ବକା ଚ।। ୧୫୭।।
ଆଦ୍ୟାନ୍ ପ୍ରବନ୍ଧାନନପେକ୍ଷ୍ୟ ରାଗା
ଲପ୍ତିର୍ଭବେତ୍ ସ୍ଥାନଚତୁଷ୍ଟୟୋଧ୍ୱା।
ଯତ୍ର ସ୍ୱରେ ରାଗନିବେଶନଂ ସ୍ୟାତ୍
ସ୍ଥାୟୀସ୍ୱରଂ ତଂ ନିଗଦନ୍ତି ସନ୍ତଃ।। ୧୫୮ ।।
ସ୍ଥାୟୀସ୍ୱରାଦ୍ୟସ୍ତୁ ଭବେତ୍ତୁରୀୟୋ
ଦ୍ୱ୍ୟର୍ଦ୍ଧ ତମାରୋହଣତୋ ଭଣନ୍ତି।
ଦ୍ୱ୍ୟର୍ଦ୍ଧସ୍ୟ ଯଃ ସ୍ୟାଦବରୋହଣେନ
ସ୍ଥାୟିସ୍ୱରାଚ୍ଚାପି ଭବେତ୍ତୃତୀୟଃ।। ୧୫୯ ।।
ଉଚ୍ଚାରଣଂ ତସ୍ୟ ପୁନଃ ପୁନର୍ଯତ୍
ବଂଶିକାୟାଂ ମୁଖଚାଳମାହୁଃ।
ଆରଭ୍ୟ ତୁ ସ୍ଥାୟିନମାତୃତୀୟା
ଦଧଃ ସ୍ୱରାଣାମପିଯୋଜନେନ।। ୧୬୦ ।।
ଯଦ୍‌ଗାନମିଚ୍ଛେତଦୁଦାହରନ୍ତି
ସ୍ୱସ୍ଥାନମାଦ୍ୟଂ ସୁଧିୟଃ ପରଂ ତେ।
ଦ୍ୱ୍ୟର୍ଦ୍ଧସ୍ୱରେ ପୂର୍ବବଦେବ ଯତ୍‌ସ୍ୟାତ୍
ସ୍ୱସ୍ଥାନମେତଦ୍ଧି ଭବେଦ୍ୱିତୀୟମ୍।। ୧୬୧ ।।
ସ୍ଥାୟିସ୍ୱରାଦଷ୍ଟମତାମୁପେତଃ

ସ୍ୱରସ୍ତୟୋଽସୌ ଦ୍ୱିଗୁଣାଭିମାନଃ ।
ଦ୍ୱ୍ୟର୍ଦ୍ଧସ୍ୱରସ୍ୟ ଦ୍ୱିଗୁଣସ୍ୱରସ୍ଥା
ପ୍ୟର୍ଦ୍ଧସ୍ଥିତାଖ୍ୟାଃ ଖଳୁ ମଧଭାଜଃ ।। ୧୬୨ ।।
ଅର୍ଧସ୍ୱରରେଷ୍ୱ ପ୍ରବିଧାୟ ତତ୍ର
ଦ୍ରାଗାନୁକୂଲୈର୍ଗମକୈଶ୍ଚ ଗୀତମ୍ ।
ଯଃ ସ୍ଥାୟନି ସ୍ୟାନ୍ନ୍ୟସନଂ ପୂରେବ
ସ୍ୱସ୍ଥାନମେତଦ୍ଧି ଭବେତ୍ତୃତୀୟମ୍ ।। ୧୬୩ ।।
ପୂର୍ବୋକ୍ତବତ୍ୟଷ୍ଟମମାକଳଯ୍ୟ
ଗୀତଂ ତତଃ ସ୍ଥାୟନି କିଂ ଚ ମୁଞ୍ଚେତ୍ ।
ସ୍ୱସ୍ଥାନମେତଦ୍ କଥିତଂ ପରଂ ସ୍ୱ
ସ୍ଥାନୈଶ୍ଚତୁର୍ଭିସ୍ତୁ ସମନ୍ୱିତା ଯା ।। ୧୬୪ ।।
ରାଗସ୍ୟ ସାଳପ୍ତିରଥତ୍ୱମୁଷ୍ୟସ୍ତଂ
ସ୍ଥାପନାଭେଦମିହାମନାମଃ ।
ଜୀବସ୍ୱରବ୍ୟାପ୍ତି ଯୁତୈସ୍ତଥାଳ୍ପାଳ୍ପକୈଃ
ପ୍ରସନ୍ନୈର୍ବହୁଚାତୁରୀକୈଃ ।
ସ୍ଥାୟୈରମୀଭିଃ କରଣୈସ୍ତୁ
ରାଗାଭିବ୍ୟଞ୍ଜନ ସ୍ଥାପନିକୋପଦିଷ୍ଟା ।। ୧୬୫ ।।
(ସଂ.ସୁଧାକର)

ସେହି ରାଗର ଅଳାପକୁ ଗୀତଜ୍ଞ ପଣ୍ଡିତମାନେ ଆଲପ୍ତିକା ବୋଲି କହନ୍ତି । ଏହି ଆଲପ୍ତି ଦ୍ୱିବିଧ; ରାଗପୂର୍ବକ, ରୂପକପୂର୍ବକ । ଆଦ୍ୟ ପ୍ରବନ୍ଧମାନଙ୍କୁ ଅପେକ୍ଷା ନ କରିବାହିଁ ରାଗାଳାପ ହୁଏ । ସ୍ଥାନଚତୁଷ୍ଟୟ ମାର୍ଗ ଅଟେ । ଯେଉଁ ସ୍ୱରରେ ରାଗ ନିବେଶ

ହୁଏ ତାହାକୁ ସ୍ଥାୟୀ ସ୍ୱର ପଣ୍ଡିତମାନେ କହନ୍ତି। ସ୍ଥାୟୀ ସ୍ୱରରୁ ୪ଗୋଟି ହୁଏ। ତହିଁରୁ ଦ୍ୱିଅର୍ଦ୍ଧ ଆରୋହଣରେ ହୁଏ ବୋଲି କହନ୍ତି। ଆଉ ଦ୍ୱିଅର୍ଦ୍ଧ ଅବରୋହରେ ସ୍ଥାୟୀ ସ୍ୱରରୁ ତୃତୀୟ ହୁଏ। ତାହାର ପୁନଃ ପୁନଃ ଯେ ଉଚ୍ଚାରଣ ବଂଶୀରୁ ହୁଏ ତାହାକୁ ମୁଖଚାଳନ କହନ୍ତି। ସ୍ଥାୟୀକୁ ଆରମ୍ଭ କରି ତୃତୀୟର ଅର୍ଦ୍ଧ ସ୍ୱରମାନଙ୍କର ଯୋଜନାରେ ଯେଉଁ ଗାନ ଉଜ୍ଜ୍ୱଳରୂପେ ପ୍ରକାଶ ପାଏ, ତାହାକୁ ଉତ୍କୃଷ୍ଟ ଆଦ୍ୟ ସ୍ୱସ୍ଥାନ ବୋଲି ପଣ୍ଡିତମାନେ କହନ୍ତି। ଦ୍ୱିଅର୍ଦ୍ଧସ୍ୱରରେ ପୂର୍ବପରି ଯେ ହୁଏ, ତାହା ଦ୍ୱିତୀୟ ସ୍ୱସ୍ଥାନ। ସ୍ଥାୟୀ ସ୍ୱରରୁ ଅଷ୍ଟମତ୍ୱକୁ ପ୍ରାପ୍ତ ହେବା ସ୍ୱର ଯେ ସେ ଦ୍ୱିଗୁଣ ନାମକ ଅଟେ। ଦ୍ୱିଅର୍ଦ୍ଧସ୍ୱରର ଦ୍ୱିଗୁଣ ସ୍ୱରରେ ସ୍ଥାପିତ ଯେ, ସେ ଅର୍ଦ୍ଧସ୍ଥିତ ନାମକ ଅଟେ। ସେ ମଧ୍ୟକୁ ଆଶ୍ରୟ କରେ, ଏହା ନିଶ୍ଚିତ। ଅର୍ଦ୍ଧସ୍ୱରମାନଙ୍କରେ ତାହାକୁ ପ୍ରୟୋଗ କରି ରାଗାନୁକୂଳଗମକଦ୍ୱାରା ଗୀତ ହୁଏ। ପୂର୍ବପରି କଥିତ ହେବା ଅଷ୍ଟମକୁ ଧରି ଗାଇବା ଗୀତରୁ କିଛି ସ୍ଥାୟୀରେ କଥିତ ହେବା ଅଷ୍ଟମକୁ ଧରି ଗାଇବା ଗୀତରୁ କିଛି ସ୍ଥାୟୀରେ ଛାଡ଼ିବ, ତାହକୁ ସ୍ୱସ୍ଥାନ କହନ୍ତି। ସେ ରାଗକୁ ନ ଭାଙ୍ଗି ସ୍ଥାପନର ଅଭେଦ ବୋଲି ମଣିବାକୁ ହେବ। ଜୀବସ୍ୱର (ବାଦୀସ୍ୱର) ବ୍ୟାପକରେ ଯୁକ୍ତ ହୋଇଥିବ, ଅଳ୍ପ ଅଳ୍ପ ପ୍ରକାରରେ ପରିଷ୍କାର ରୂପେ ବହୁ ଚାତୁର୍ଯ୍ୟ ସହିତରେ ସ୍ଥାୟୀସବୁ ଏହି ଉପାଦନମାନଙ୍କ ସହିତରେ ରାଗ ପ୍ରକାଶ ସ୍ଥାପନା ବୋଲି କଥିତ।

## ଆଳପ୍ତିଲକ୍ଷଣମ୍

ଗ୍ରହାଂଶତାରମନ୍ଦ୍ରାଦିପୂର୍ଣ୍ଣପୂର୍ଣ୍ଣବିବେକତଃ।
ବୈଚିତ୍ର୍ୟଯୁକ୍ତଗମକୈରାଳାପ୍ତି କଥିତା ବୁଧୈଃ॥ ୧୬୬॥

ନ୍ୟାସାଦିସ୍ଥାନମୁତ୍ସୃଜ୍ୟ ମଧ୍ୟେ ମଧ୍ୟେଽଳ୍ପତାୟୁକାମ୍ ।
ସ୍ୱରାଣାଂ ଯଦ୍‌ବିଚିତ୍ରତ୍ୱକାରିଣ୍ୟଂଶାଦିସଂଗତିଃ ।। ୧୬୭ ।।
ଅନଭ୍ୟାସୈଃ କ୍ୱଚିତ୍ କ୍ୱାପି ଲଂଘନୈରେବ କେବଲୈଃ ।
କୃତାଳପ୍ତିମାର୍ଗଃ ସ୍ୟାତ୍ତାନୋ ତାନେ ପ୍ରୟୋଗତଃ ।। ୧୬୮ ।।

ଅନ୍ୟତ୍ର

ମଧ୍ୟଷଡ୍‌ଜଂ ସମାରଭ୍ୟ ମନ୍ଦ୍ରଷଡ୍‌ଜାବଧିକ୍ରମାତ୍ ।
ସମ୍ୟଗାଳାପନଂ କୃତ୍ୱା ମଧ୍ୟଷଡ୍‌ଜେ ସମାପୟେତ୍ ।। ୧୬୯ ।।
ମନ୍ଦ୍ରମଧ୍ୟଷଡ୍‌ଜମଧ୍ୟେ ରାଗବର୍ଦ୍ଧନମାରଭେତ୍ ।
ଗତ୍ୱା ତାନଂ ତାରକାନ୍ତଂ ମଧ୍ୟଷଡ୍‌ଜେ ସମାପୟେତ୍ ।। ୧୭୦ ।।

ଗ୍ରହ, ଅଂଶ, ତାର, ମନ୍ଦ୍ର ଆଦି ପୂର୍ଣ୍ଣ ପୂର୍ଣ୍ଣ ଅପୂର୍ଣ୍ଣ ବିଚାରରେ ବିଚିତ୍ରତାଯୁକ୍ତ ଗମକରେ ଆଳପ୍ତି (ଆଳାପ) ହୁଏ ବୋଲି ପଣ୍ଡିତ ମାନେ କହନ୍ତି । ନ୍ୟାସାଦି ସ୍ଥାନ ତ୍ୟାଗ କରି ମଧ୍ୟେ ମଧ୍ୟେ ଅଳ୍ପ ଅଳ୍ପ ପ୍ରୟୋଗ ହେବା ସ୍ୱରମାନଙ୍କର ବିଚିତ୍ରତା ସମ୍ପାଦନ କରିବା ଅଂଶାଦି ସହିତ ମେଳ କରାଇବାକୁ ହେବ । ଅନଭ୍ୟାସରେ କ୍ୱଚିତ୍ କେଉଁଠି କେଉଁଠି ଆଳପ୍ତି ମାର୍ଗ ହୁଏ ।

ଅନ୍ୟତ୍ର

ମଧ୍ୟଷଡ୍‌ଜକୁ ଆରମ୍ଭ କରି ମନ୍ଦ୍ରଷଡ୍‌ଜପର୍ଯ୍ୟନ୍ତ କ୍ରମଶଃ ସମ୍ୟକ୍‌ଭାବେ ଆଳାପ କରି ମଧ୍ୟ ଷଡ୍‌ଜରେ ସମାପନ କରିବ । ମନ୍ଦ୍ର ମଧ୍ୟଷଡ୍‌ଜ ମଧ୍ୟରେ ରାଗକୁ ବଢ଼ାଇବାକୁ ଆରମ୍ଭ କରିବ । ଗାନର ଗତିରେ ତାରାର ଶେଷପର୍ଯ୍ୟନ୍ତ ତାନକୁ କରି ମଧ୍ୟଷଡ୍‌ଜରେ ସମାପ୍ତ କରିବ ।

## ଗାୟନାଦୌ ସ୍ୱରସନ୍ନିବେଶଃ

ଅକାରୋ ବାସୁଦେବଃ ସ୍ୟାତ୍ ତସ୍ମାଦାଦୌ ବିଚିନ୍ତୟେତ୍ ।
ଏକାରଃ ଶକ୍ତିରେବ ସ୍ୟାଦ୍‌ଗାୟନାଦୌ ପ୍ରତୀର୍ତ୍ତିତଃ ॥ ୧୭୧ ॥
ଇକାରଃ ସର୍ବବର୍ଣ୍ଣାନାଂ ମାତା ଲକ୍ଷ୍ମୀ ପ୍ରକୀର୍ତ୍ତିତା ।
ଇତି ସ୍ୱୟଂ ସ୍ମରେଦ୍ରାଗାନ୍ ଶୁଭଂ ଭବତି ନାନ୍ୟଥା ॥ ୧୭୨ ॥

ଅ-ଅକାର ବାସୁଦେବ ଅଟନ୍ତି, ତେଣୁ ପ୍ରଥମେ ତାହାଙ୍କୁ ଚିନ୍ତା କରିବ।

ଏ-ଏକାର ଦେବୀ ଶକ୍ତି, ଦୁର୍ଗା ଅଟନ୍ତି। ଗାନର ଆଦିରେ କହିବାକୁ ହୁଏ।

ଇ-ଇକାର ସବୁ ବର୍ଣ୍ଣମାନଙ୍କର ମାତା। ସେ ଲକ୍ଷ୍ମୀ ନାମରେ କଥିତ, ଗାୟକ ସ୍ୱୟଂ ରାଗମାନଙ୍କୁ ସ୍ମରଣ କରିବ-ଏଥିରେ ଶୁଭ ହେବ, ଅନ୍ୟଥା ହେବ ନାହିଁ।

## ଗାୟକଲକ୍ଷଣମ୍

ବିଶେଷଜ୍ଞସ୍ତୁର୍ଯ୍ୟ ତ୍ରିତୟନିପୁଣସ୍ତାଭିନୟବିତ୍
ରସାଲଂକାରଜ୍ଞ ସକଳଗୁଣଦୋଷୈକନିକଷଃ ।
ପରାଭିପ୍ରାୟଜ୍ଞୋ ଯଶସି ବହୁମାନୋ ଧୃତଶୁଚିଃ
କ୍ଷମାଦାତା ଧୀରୋ ଜଗତି କଥିତୋ ଗାୟକ ଇତି ॥ ୧୭୩ ॥

ଯେ ସଂଗୀତର ବିଶେଷତ୍ୱ ଜାଣନ୍ତି, ତୂର୍ଯ୍ୟର ଗୀତବାଦ୍ୟ ନୃତ୍ୟରୂପ ତିନିଗୋଟିରେ ନିପୁଣ ଓ ନୀତିଜ୍ଞ, ରସ ଓ ଅଳଙ୍କାର

ବିଜ୍ଞସବୁ ଦୋଷ ଗୁଣ-କଳନାକାରୀ, ପରର ମନ-କଥା ଜାଣିପାରନ୍ତି, ଯଶକର ବହୁତ ମାନଅର୍ଜ୍ଜନକାରୀ ଓ ଶୁଚିବନ୍ତ, କ୍ଷମାଶୀଳ, ଦାତା, ଧୀର ବ୍ୟକ୍ତି ଗାୟକ ରୂପେ ଜଗତରେ କଥିତ।

ସଙ୍ଗୀତସ୍ନେହୀ

ଶିକ୍ଷାକାରୋଽନୁକାରଶ୍ଚ ରସିକୋ ରଞ୍ଜକସ୍ତଥା।
ଭାବୁକଶ୍ଚେତି ଗୀତଜ୍ଞାଃ ପଞ୍ଚଧା ଗାୟନଂ ଜଗୁଃ॥ ୧୭୪ ॥
ଅନ୍ୟୂନଶିକ୍ଷଣେ ଦକ୍ଷଃ ଶିକ୍ଷାକାରୋ ମତଃ ସତାମ୍।
ଅନୁକାର ଇତି ପ୍ରୋକ୍ତଃ ପରଭଙ୍ଗ୍ୟନୁକାରକଃ॥ ୧୭୫ ॥
ରସାବିଷ୍ଟସ୍ତୁ ରସିକୋ ରଞ୍ଜକଃ ଶ୍ରୋତୃରଞ୍ଜକଃ।(ସଂ.ର.)
ଆଚାର୍ଯ୍ୟ ସମମିଚ୍ଛନ୍ତି ପଦଚ୍ଛେଦଂ ତୁ ପଣ୍ଡିତାଃ।
ସ୍ତ୍ରିୟୋ ମଧୁରମିଚ୍ଛନ୍ତି ବିକୃଷ୍ଟମିତରେ ଜନାଃ॥ ୧୭୬॥

ଶିକ୍ଷାକାରୀ, ଅନୁକରଣକାରୀ, ରସିକ, ରଞ୍ଜକ ଓ ଭାବୁକ ଏହି ପାଞ୍ଚପ୍ରକାର ଲୋକଙ୍କୁ ସଙ୍ଗୀତଜ୍ଞ ପଣ୍ଡିତମାନେ ଗାୟକ କହନ୍ତି। ପୂର୍ଣ୍ଣ ଶିକ୍ଷାରେ ଦକ୍ଷ ଯେ, ସେ ପଣ୍ଡିତଙ୍କ ମତରେ ଶିକ୍ଷାକାରୀ। ଅନ୍ୟ ଲୋକର ରୀତିକୁ ଯେ ଅନୁକରଣ କରେ, ସେ ଅନୁକାରୀ। ସେ ରସଯୁକ୍ତ, ସେ ରସିକ। ଯେ ଶ୍ରୋତାଙ୍କ ରଞ୍ଜନକାରୀ, ସେ ରଞ୍ଜକ। ଗୀତର ଅତିଶୟ ଧ୍ୟାନରୁ ଭାବୁକ ହୁଅନ୍ତି। ଆଚାର୍ଯ୍ୟମାନେ ସମତାକୁ ଇଛନ୍ତି, ପଣ୍ଡିତମାନେ ପଦମାନଙ୍କର ସ୍ପଷ୍ଟଭାବରେ ପୃଥକତ୍ୱ ଇଛନ୍ତି। ସ୍ତ୍ରୀମାନେ ଗୀତର ମାଧୁର୍ଯ୍ୟ ଇଚ୍ଛା କରନ୍ତି। ଅନ୍ୟମାନେ ଗୋଳମାଳ ଚାହାନ୍ତି।

### ବିଦ୍ୟାବିଘ୍ନକାରୀ

ଦ୍ୟୂତଂ ପୁସ୍ତକଂ ବାଦ୍ୟଂ ଚ ନାଟକେଷୁ ଚ ସକ୍ତିକା ।
ସ୍ତ୍ରିୟସ୍ତନ୍ଦ୍ରା ଚ ନିଦ୍ରା ଚ ବିଦ୍ୟା-ବିଘ୍ନକରାଣି ଷଟ୍ ।। ୧୭୭ ।।
(ନାରଦ ଶିକ୍ଷା)

ଯେ ଦ୍ୟୁତ (ପଶା), ଯେ କେବଳ ପୁସ୍ତକ, ଯେ ନାଟକରେ ଓ ସ୍ତ୍ରୀଠାରେ ଆସକ୍ତ, ଯେ ତନ୍ଦ୍ରାସକ୍ତ, ଯେ ନିଦ୍ରାସକ୍ତ ସେହି ଛଅପ୍ରକାର ବ୍ୟକ୍ତି ସଙ୍ଗୀତବିଦ୍ୟା-ବିଘ୍ନକାରୀ ଅଟନ୍ତି ।

### ଗମକାଭ୍ୟାସପ୍ରକାରଃ

ମାଘ-ପୌଷନିଶାୟାଂ ତୁ ଶେଷପ୍ରହରମାତ୍ରକେ ।
ସାଧକ ସଲିଳେ ସ୍ଥିତ୍ୱା ଗମକାନ୍ ସାଧୟେଦିମାନ୍ ।। ୧୭୮ ।।
(ଗୀତପ୍ରକାଶେ ଚତୁର୍ଥୋଲ୍ଲାସଃ-ଉତ୍କଳ)

ମାଘ ଓ ପୌଷର ନିଶାରେ ବିଶେଷତଃ ଶେଷ ପ୍ରହରରେ ଶିକ୍ଷାକାରୀ ପାଣିଭିତରେ ରହି ଗମକସବୁକୁ ସାଧନ କରିବ ।

### ସୁଗାୟକଃ

ହୃଦ୍ୟ ଶବ୍ଦଃ ସୁଶାରୀରୋ ଗ୍ରହମୋକ୍ଷ-ବିଚକ୍ଷଣଃ ।
ରାଗ-ରାଗାଙ୍ଗ-ଭାଷାଙ୍ଗ-କ୍ରିୟାଙ୍ଗୋପାଙ୍ଗକୋବିଦଃ ।। ୧୭୯ ।।
ପ୍ରବନ୍ଧଗାନନିଷ୍ଣାତୋ ବିବିଧାଳପ୍ତିତତ୍ତ୍ୱବିଦ୍ ।
ସର୍ବସ୍ଥାନୋଚ୍ଛଗମକେଷ୍ୱନାୟାସଲସଦ୍‌ଗତିଃ ।। ୧୮୦ ।।
ଆୟତ୍ତକଣ୍ଠସ୍ତାଳଜ୍ଞ ସାବଧାନୋ ଜିତଶ୍ରମଃ ।
ଶୁଦ୍ଧଛାୟାଲଗାଭିଜ୍ଞ ସର୍ବକାକୁବିଶେଷବିତ୍ ।। ୧୮୧ ।।

ଅପାରସ୍ଥାୟୀସଂଚାରଃ ସର୍ବଦୋଷବିବର୍ଜିତଃ।
କ୍ରିୟାପରୋ ବ୍ୟକ୍ତଲୟଃ ସୁଘଟୋ ଧାରଣାନ୍ୱିତଃ।। ୧୮୨ ।।
ସ୍ଫୁର୍ଜନ୍ନିର୍ଜବନୋହାରି ରହଃକୃଭଜନୋଦ୍ଧୁରଃ।
ସୁସଂପ୍ରଦାୟୋ ଗୀତଜ୍ଞୈର୍ଗୀୟତେ ଗାୟକାଗ୍ରଣୀ।। ୧୮୩।।

(ସଂ.ର.)

ଯାହାର କଣ୍ଠସ୍ୱର ରମଣୀୟ, ସୁନ୍ଦର ଶରୀରବାନ୍, ଗ୍ରହଣ ଓ ତ୍ୟାଗରେ ପଣ୍ଡିତ, ପ୍ରବନ୍ଧ ଗାନରେ ନିପୁଣ, ବିବିଧ ଆଳାପର ତତ୍ତ୍ୱଜ୍ଞ, ସର୍ବସ୍ଥାନର ଭାବ ଗମକମାନଙ୍କରେ ସହଜରେ ଯାହାଙ୍କର ଗାନର ଗତି ଶୋଭାପାଏ, ଯେ ନିଜ କଣ୍ଠକୁ ଆୟତ୍ତ କରିଛନ୍ତି, ତାଳ ଜାଣିବା ଲୋକ, ସତର୍କ ବିଶେଷଜ୍ଞ (ସୂକ୍ଷ୍ମ ବିଷୟ ଜାଣିବା ଲୋକ) ଅକ୍ଳାନ୍ତ, ଶୁଦ୍ଧ ଓ ଛାୟାଲଗରେ ପଣ୍ଡିତ, ସମସ୍ତ ଅଭିପ୍ରାୟର ବିଶେଷତ୍ୱ ଜାଣିବା ବ୍ୟକ୍ତି, ଅସଂଖ୍ୟ ସ୍ଥାୟୀକୁ ଚାଳନ କରି ଜାଣନ୍ତି, ସର୍ବଦୋଷଶୂନ୍ୟ, ଅଭ୍ୟାସକାରୀ, ପରିଷ୍କାର, ସତତ ଲୟଯୁକ୍ତ, ସୁନ୍ଦର ସ୍ୱରଯୁକ୍ତ, ଧାରଣାବନ୍ତ, ଦୀପ୍ତିମାନ୍ (ଯାହାଙ୍କର ସ୍ୱର ଉଜ୍ଜ୍ୱଳଭାବରେ ପ୍ରକାଶ ପାଏ) ଧାରାବାହିକ ଭାବରେ ଗାନକାରୀ, ମନୋହରଣକାରୀ, ଶ୍ରୋତୃ ମୁଗ୍ଧକାରୀ, ଭଜନରେ ପାରଙ୍ଗମ, ଭଲ ସଂପ୍ରଦାୟଭୁକ୍ତ (ଉତ୍ତମ ଗୋଷ୍ଠୀଗତ ଗୁରୁପରମ୍ପରାଗତ) ବ୍ୟକ୍ତି ଗୀତଜ୍ଞଙ୍କଦ୍ୱାରା ଗାୟକ ଶ୍ରେଷ୍ଠରୂପେ କଥିତ।

ଦୁର୍ଗାୟକଃ

ସଂଦଷ୍ଟୋଦ୍‌ଘୃଷ୍ଟ ସୂତ୍‌କାରୀଭୀତଶଙ୍କିତକମ୍ପିତାଃ।
କରାଳୀ ବିକଳଃ କାକୀ ବିତାଳ କରଭୋଦ୍‌ବକାଃ।। ୧୮

ଝୋମ୍ବକସ୍ତୁବକୀ ବକ୍ରୀ ପ୍ରସାରୀ ବିନିମୀଳକଃ ।
ବୀରସାପସ୍ୱରାବ୍ୟକ୍ତସ୍ଥାନଭ୍ରଷ୍ଟା ବ୍ୟବସ୍ଥିତାଃ ।। ୧୮୫ ।।
ମିଶ୍ରକୋଽନବଧାନଶ୍ଚ ତଥାଽନ୍ୟଃ ସାନୁନାସିକଃ ।
ପଞ୍ଚବିଂଶତିରିତ୍ୟେତେ ଗାୟକାଃ ନିନ୍ଦିତା ମତାଃ ।। ୧୮୬ ।।

(ସଂ.ର)

ଦାନ୍ତଚିପି ଗାଇବା ଲୋକ, ଉଚ୍ଚସ୍ୱରରେ ନୀରସ କରି ଗାଇବା ବ୍ୟକ୍ତି, ପୁନଃ ପୁନଃ ସୂତ୍କାରକାରୀ, ଭୟାଳୁ, ତରତରିଆ, ଶଙ୍କାକାରୀ ଶରୀର ଓ ଶବ୍ଦକମ୍ପନକାରୀ, ଭୀଷଣ ମୁଖ ମେଲାକରିବା ବ୍ୟକ୍ତି, କମିବେଶି ଶ୍ରୁତି କରି ସ୍ୱର ଗାଇବା ଲୋକ, ଭୀଷଣ ଶବ୍ଦକାରୀ, ବେତାଳିଆ, କାନ୍ଧ ଓ ମୁଣ୍ଡଧରି ଗାଇବା ଲୋ[illegible], ଛେଳି ଶିରାଯୁକ୍ତ ପରି ମୁହଁ କରି ଗାଇବା ଅଧମ ଗାୟକ, କପାଳ; ମୁଖ ଓ ଗଳାକୁ ଶିରାଯୁକ୍ତ କରି ଗାଇବା ବ୍ୟକ୍ତି (ଉଚ୍ଚସ୍ୱର ନିମନ୍ତେ ଟାଣି ଓଟାରି ହୋଇ ଗାଇବା ଲୋକ) ଗାଇବାବେଳେ ଲାଉତୁମ୍ବାପରି ଗଳା ଫୁଲାଇ ଗାଇବା ଲୋକ, ଗଳାବଙ୍କାଇ ଗାଇବା ଲୋକ, ଗୀତ ଗାଇବାବେଳେ ଶରୀରକୁ ନାନାପ୍ରକାରରେ ବିସ୍ତାରକାରୀ, ଗାଇବା ବେଳେ ଆଖି ବୁଜିଲା ଲୋକ, ରସହୀନ, ବର୍ଜିତ ସ୍ୱର ଗାନକାରୀ, ଗଦ୍‌ଗଦ୍ ସ୍ୱରରେ ଅସ୍ପଷ୍ଟ କରି ଗାଇବା ଲୋକ, ସ୍ଥାନତ୍ରୟ ଅର୍ଥାତ୍ ତିନିସପ୍ତକକୁ ସ୍ୱର ପ୍ରୟୋଗ କରି ନ ପାରିବା ବ୍ୟକ୍ତି, ସ୍ଥାନମାନଙ୍କରେ ଶୃଙ୍ଖଳା ନରଖିବା ଲୋକ, ଶୁଦ୍ଧ ଛାୟାଲଗକୁ ମିଶାଇ ଗାଇବା ଲୋକ, ଅନ୍ୟ ରାଗମାନଙ୍କର ମିଶ୍ରଣ ଓ ରାଗମାନଙ୍କର ବହୁ ମିଶ୍ରଣକାରୀ, ସ୍ଥାୟୀ ଆଦିରେ

ଲକ୍ଷ ନ ରଖିବା ବ୍ୟକ୍ତି, ନାକୀ ସ୍ୱରରେ ଗାଇବା ଲୋକ-
ଏହି ପଚିଶ ପ୍ରକାରର ଗାୟକମାନେ ନିନ୍ଦିତ ଅଟନ୍ତି।

ଗୀତଗୁଣାନାହ

ବ୍ୟକ୍ତଂ ପୂର୍ଣ୍ଣଂ ପ୍ରସନ୍ନଂ ଚ ସୁକୁମାରମଳଂକୃତମ୍।
ସମଂ ସୁରକ୍ତଂ ଶ୍ଳକ୍ଷ୍ଣଂ ଚ ବିକୃଷ୍ଟଂ ମଧୁରଂ ତଥା॥ ୧୮୭॥
ଦଶୈତେ ସ୍ୟୁର୍ଗୁଣା ଗୀତେ ତତ୍ର ବ୍ୟକ୍ତଂ ସ୍ଫୁଟୈଃ ସ୍ୱରୈଃ।
ପ୍ରକୃତି ପ୍ରତ୍ୟୟୈଶ୍ଚୋକ୍ତଂ ଛନ୍ଦୋରାଗପଦୈଃ ସ୍ୱରୈଃ।॥ ୧୮୮॥
(ସା.ର)

ସ୍ୱଚ୍ଛ ପ୍ରକାଶ ପାଉଥିବ, ପୂର୍ଣ୍ଣାଙ୍ଗ ଗମକ, ପରିଷ୍କାରଭାବରେ ଅର୍ଥ ପ୍ରକାଶ ପାଉଥିବ, ସୁନ୍ଦରଭାବରେ କଣ୍ଠରୁ ଜାତ ହେବ ସ୍ଥାନତ୍ରୟ (ଉଦାରା, ମୁଦାରା, ତାରା,)ରୁ ବାହାରୁଥିବ, ସମାନ ବର୍ଣ୍ଣ ଓ ଲୟଯୁକ୍ତ ହେବ, ବୀଣା, ବଂଶୀ ଓ କଣ୍ଠ ଧ୍ୱନିମାନଙ୍କରେ ମେଳ ହେବ, ନୀଚ, ଉଚ୍ଚ, ଦ୍ରୁତ ଓ ମଧ୍ୟାଦିରେ ଶୋଭା ପାଉଥିବ, ଉଚ୍ଚରେ ଉଚ୍ଚାରିତ ହେଉଥିବ, ବହୁ ଲାବଣ୍ୟପୂର୍ଣ୍ଣ ଓ ଜନମନ ହରଣ କରୁଥିବ।

# ॥ ରାଗପ୍ରକରଣ ॥

## ରାଗ-ଆରବୀ

ମେଳାଚ୍ଚ ସଂଭବୋ ଧୀର ଶଂକରାଭରଣାଚ୍ଚ ବୈ।
ଆରଭୀତି ସୁରାଗଶ୍ଚ ଋିନ୍ୟାସଂ ର୍ୟଂଶକଗ୍ରହମ୍॥
ଆରୋହେ ଗନିବର୍ଜଂ ଚାପ୍ୟବରୋହ ସମଗ୍ରକମ୍ ॥ ୧ ॥
(ରାଗଲକ୍ଷଣ)

ସରିମପଧସ। ସନିଧପମଗରିସ॥

ଆରବୀ ରାଗ ଶଙ୍କରାଭରଣମେଳରୁ ଉତ୍ପନ୍ନ ହୁଏ। ଏହା ଔଡ଼ବ ସମ୍ପୂର୍ଣ୍ଣ ଜାତି; ଉତ୍ତରାଙ୍ଗରେ ବାଦୀ-ପା-ସଂବାଦୀ-ଏହାର ଗାନ ଦିବସର ପ୍ରଥମ ପ୍ରହରରେ ହୁଏ।

ଆରୋହ-ସା ରେ ମା ଧା ସା

ଅବରୋହ-ସା ନି ଧା ପା ମା ଗା ରେ ସା

ଧରଣ-ସା, ରେ ମା, ରେ, ସା ରେ ଧା, ସା ରେ,

ଅନ୍ୟ ପ୍ରକାରେ-ଏହା ଔଡ଼ବ ଷାଡ଼ବ ଜାତି-ଧା-ବାଦୀ-କରାଯାଏ

ଅବରୋହରେ-ନି-ବର୍ଜ୍ୟହୁଏ। କେହି କେହି ପଣ୍ଡିତ ତୀବ୍ର କୋମଳ ଦୁଇ ନି-ସ୍ୱର ବ୍ୟବହାର କରିଥାନ୍ତି। କୋମଳ ନିଷାଦକୁ ଧା ନି ଧା ପା ଅଥବା ଧା ନି ପା ଏପରି ଲଗାଇଥାନ୍ତି।

ଆରୋହ-ସା ରେ ମା ପା ଧା ସା

ଅବରୋହ-ସା ଧା ପା ମା ଗା ରେ ସା

## ରାଗ-ଆନନ୍ଦଭୈରବ-ଆନନ୍ଦଭୈରବୀ-
## ଆନନ୍ଦରାଗସ୍ୟ ଚ ଲକ୍ଷଣମ୍

**ମେଳାତ୍ଭାଳବଗୌଳାଖ୍ୟାତ୍ଜାତୋ ରାଗୋ ଗୁଣିପ୍ରିୟଃ ।**
**ଆନନ୍ଦଭୈରବଃ ଖ୍ୟାତଃ ସଂପୂର୍ଣ୍ଣେ ମାଂଶକସ୍ତଥା ।। ୨ ।।**
**ପୂର୍ବାଙ୍ଗେ ଭୈରବୋ ପ୍ରୋକ୍ତୋ ବେଲାବଲ୍ୟୁତ୍ତରାଂଗକେ ।**
**ଗାନଂ ସମୀରିତଂ ଚାସ୍ୟ ପ୍ରାତଃକଲେ ସରକ୍ତିଦମ୍ ।। ୩ ।।**
ଆଦିଶନ୍ତି ପୁନଃ କେଚିଦ୍ ମୃଦୁମନୁଲୋମକେ ।
ତୀବ୍ରଧଂ ଚାବରୋହେଽପି ବୁଧଃ କୁର୍ଯ୍ୟାଦ୍ ଯଥୋଚିତମ୍ ।। ୪ ।।
ରାଗୋଽୟଂ ଗୀୟତେ ଲକ୍ଷ୍ୟେ ଭୈରବାଂଗେନ ନିତ୍ୟଶଃ ।
ଅତୋ ଭୈରବଭେଦୋଽସୌ ସଂମତୋ ଲକ୍ଷ୍ୟବର୍ତ୍ମନି ।। ୫ ।।
ଆନନ୍ଦଭୈରବୀରାଗୋ ଗନି କୋମଳମଣ୍ଡିତଃ ।
ରାଗଲକ୍ଷଣକେ ପ୍ରୋକ୍ତଃ ସ ଚାସ୍ମାଦ୍ଭେଦମର୍ହତି ।। ୬ ।।
ପ୍ରମୁକ୍ତୈର୍ମଧମୋଽପ୍ୟତ୍ର ଭବେଦତିମନୋହରଃ ।
ଋଷଭାଂଦୋଳନଂ ସ୍ପଷ୍ଟଂ ଭୈରବାଂଗଂ ପ୍ରଦର୍ଶୟେଦ୍ ।। ୭ ।।
(ଲ.ସଂ.)

ଭୈରବୀ ସ୍ୱରସମ୍ଭୂତା ନିଷାଦୋଦ୍‌ଗ୍ରାହସଂଯୁତା ।
ଗାନ୍ଧାରେ ନୈମ୍ନ୍ୟଯୁକ୍ତା ଯା ଜ୍ଞେୟାସାନନ୍ଦଭୈରବୀ ।। ୮ ।।
(ସଂ.ପା-୪୮୩ ଶ୍ଳୋକ)

ନଟଭୈରବୀରାଗାଖ୍ୟ ମେଳାଜ୍ଜାତଃ ସୁନାମକଃ ।
ଆନନ୍ଦଭୈରବୀତ୍ୟୁକ୍ତଃ ଧନ୍ୟାସଂଧାଂଶକଗ୍ରହମ୍ ।
ଆରୋହେ ରିଧବର୍ଜଂ ଚାପ୍ୟବରୋହେ ସମଗ୍ରକମ୍ ।। ୯ ।।
ସଗ ମପ ନିସ । ସନି ଧପ ମଗ ରିସ ।     (ରା.ଲ)

ଆନନ୍ଦଭୈରବ ରାଗ ଭୈରବ ବା ଗୌରୀ ଓ ବେଲାବଲୀ ବା ନଟ ବା ଶଙ୍କରାଭରଣ ମେଳ ମିଶ୍ରଣରୁ ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ-ଉଭରାଙ୍ଗ। ବାଦୀ ସା · ସମ୍ବାଦୀ-ମା ହୁଏ। କେହି କେହି ବାଦୀ-ଧ ସମ୍ବାଦୀ-ଗ କରନ୍ତି। ସମୟ ପ୍ରାତଃକାଳ ପୂର୍ବାଂଗରେ ଭୈରବର ରୂପ ଉତ୍ତରାଂଗରେ ନଟ ବା ଶଙ୍କରାଭରଣର ରୂପ ହୁଏ। କେହି କେହି ଆରୋହରେ କୋମଳ-ଧ-ଅବରୋହରେ ଶୁଦ୍ଧ ଧ ବ୍ୟବହାର କରିଥାନ୍ତି।

ଗୌରୀମେଳର-

ଆରୋହ-ନି ସ ଗ ମ ପ ଧ ପ ସା।

ଅବରୋହ-ସ ଦ ପ ନି ଧ ପ ଗ ମ ର ସା।

ଧରଣ-ନି ସ ଗ ମ ପ। ସ ନି ଧ ପ

ଧ ମ ପ ଗ ମ ର ସ

ଏହି ରାଗରେ-ଗ-ନି-ଧ-କୋମଳ ସ୍ୱର ପ୍ରୟୋଗ କରି ଶୁଦ୍ଧ ବା ତୀବ୍ର ଗ-ନି-ଧ-ସ୍ୱର ପରିବର୍ତ୍ତନ କଲେ ଏହି ଆରୋହ ଅବରୋହ ଧରଣରେ ଆନନ୍ଦଭୈରବୀ ରାଗ ହୁଏ। ଏହା ଭୈରବୀମେଳରୁ ଉତ୍ପନ୍ନ ହୁଏ। ବାଦୀ ଓ ସଂବାଦୀ ସ୍ୱର ସମାନ ରହିବ। ଏଥିରେ ଅଳ୍ପ ଶୁଦ୍ଧ-ଧ-ଓ-ରେ- ସ୍ୱର ବ୍ୟବହାର ହେବା ଶୁଣାଯାଏ।

ଆନନ୍ଦଭୈରବ ରାଗର ଆରୋହ ଅବରୋହ ଓ ଧରଣ ଓ ବାଦୀ ସମ୍ବାଦୀ ସମାନ ରଖି ରେ- କୋମଳ ପରିବର୍ତ୍ତେ ଶୁଦ୍ଧ-ରେ-ବ୍ୟବହାର କଲେ ଶଙ୍କରାଭରଣ ବା ନଟମେଳରେ ଆନନ୍ଦ ରାଗ ଉତ୍ପନ୍ନ ହୁଏ।

## ରାଗ-ଆନନ୍ଦଭୈରବୀ

ପ୍ରଥମ ପ୍ରକାର-ଆରୋହ-ନି ସ ଗ ମ ପ ଧ ପ ସ

ଭୈରବୀମେଳର ଅବରୋହ-ସ ଧ ପ ନ ଧ ପ ଗା ମା ରି ସ

ଧରଣ-ନି ସ ଗ ମ ପ ସ ନ ଧ ପ ଧ ମ ପ ଗ ମ ର ସ

ନଟଭୈରବୀ ବା କର୍ଣ୍ଣାଟକମେଳରେ

ଦ୍ୱିତୀୟ ପ୍ରକାର-ଆରୋହ-ସ ଗ ମ ପ ନି ସ

ଆରୋହ-ସ ନି ଧ ପ ମ ଗ ରି ସ

ଧରଣ-ଆରୋହ ଅବ୍ରୋହ ଅନୁସାରେ ରାଗ ଆନନ୍ଦ

ନଟମେଳର-ଆରୋହ-ନି ସ ଗ ମ ପ ଧ ପ ସ।

ଅବରୋହ-ସ ଧ ପ ନ ଧ ପ ଗମ ରି ସ।

ଧରଣ-ନି ସ ଗ ମ ପ, ସ ନି ଧ ପ ଧ ମ ପ
ଗ ମ ରି ସ

ରାଗ ଆହାରୀ-ଏହାର ଅନ୍ୟନାମ ଅହିରି

ହନୁମତ୍ତୋଡ଼ୀମେଳେ ଚ ଅହିରୀନାମିକା ହ୍ୟଭୂତ୍।
ସ ନ୍ୟାସଂ ସାଂଶା ଚୈବ ଷଡ୍ଜ ଗ୍ରହମୁଚ୍ୟତେ।
ସମ୍ପୂର୍ଣ୍ଣ ବକ୍ରମାରୋହେଽପ୍ୟବରୋହେ ସମଗ୍ରକମ୍।। ୧୦ ।।
ସ ରି ସ ଗ ମ ପ ଧ ନି ସା। ସ ନି ଧ ପ ମ
ଗ ରିସ।। (ରା.ଲ)

ଆହାରୀ ରାଗ ତୋଡ଼ୀ ବା ଭୈରବୀ ମେଳରୁ ଉତ୍ପନ୍ନ ହୁଏ। ବାଦୀ-ମା-ଓ ସମ୍ବାଦୀ-ସା-ହୁଏ କିମ୍ବା ବାଦୀ-ସା-ସମ୍ବାଦୀ-ମା-ମଧ କରାଯାଇପାରେ। ଏହା ଉତ୍ତରାଂଗପ୍ରାଧାନ୍ୟ, ଜାତି ସମ୍ପୂର୍ଣ୍ଣ ଗାଇବା ସମୟ ଦିବା ଦ୍ୱିତୀୟ ପ୍ରହର ଶେଷରେ

ଅରୋହ-ସା ରେ ସା ଗା ମା ପା ଧ ନି ସା।
ଅଥବା-ସା ଗା ମା ପା ଧା ନି ସା।
ଧରଣ-ନି ସା ରେ, ମା, ଗା, ମା, ପା, ଦା, ନି, ସା
ସା, ନି ଧା, ପା, ମା, ମା ଗା, ରେ, ସା

ଦ୍ୱିତୀୟ ପ୍ରକାର- ଏହା କାଫୀମେଳରୁ ବା ଧନାଶ୍ରୀମେଳରୁ ଉତ୍ପନ୍ନ ହୁଏ। ଏଥିରେ ଦୁଇ -ଗା- ଓ ଦୁଇ ନି ସ ଦୁଇ-ଧା- ସ୍ୱର ବ୍ୟବହୃତ ହୁଏ। -ମା- ବାଦୀ -ସା- ସଂବାଦୀ ଓ ଜାତି ସମ୍ପୂର୍ଣ୍ଣ ଓ ପୂର୍ବାଙ୍ଗପ୍ରାଧାନ୍ୟ। ଗାଇବା-ସମୟ ଦିବା ତୃତୀୟ ପ୍ରହର। ଆରୋହ ସମୟେ ସମସ୍ତ ସ୍ୱର ଶଙ୍କରାଭରଣ ମେଳ ପରି ଶୁଦ୍ଧ ହୁଏ। ଅବରୋହ ସମୟେ ଗା ଧା -ନି- କୋମଳ ହୁଏ।
ଆରୋହ-ସା ରେ ଗା ମା ପା ଧା ନି ସା
ଅବରୋହ-ସା ନି ଧା ପା, ମା, ପାଧାମା, ରେଗାସା;
ରେଗାମା ରେଗା ସା
ଧରଣ-ଆରୋହ ଅବରୋହ ଅନୁକ୍ରମେ ହେବ।

ଏନ୍‌ସାଇକ୍ଲୋପିଡ଼ିଆ-ହିନ୍ଦୁସ୍ଥାନୀ ମିଉଜିକ୍ ଗ୍ରନ୍ଥରେ ଏହା ଲେଖାଅଛି ଓ ଚଳୁଅଛି।

### ରାଗ-ଆଶାବରୀ

ଗୌରୀମେଳ ସମୁତ୍ପନ୍ନରୋହଣେ ଗନିବର୍ଜିତା।
ମଧମୋଦ୍‌ଗ୍ରାହଧାଂଶାଦ୍ୟାଶାବରୀନ୍ୟାସପଞ୍ଚମା ।। ୧୧ ।।
(ସଂ.ପା.ଶ୍ଳୋ-୪୪୨)

ଗ୍ରନ୍ଥାନାଂ ଭୈରବୀମେଳୋ ଲକ୍ଷ୍ୟେ ତ୍ୱାଶାବରୀରିତଃ ।
ଆଶାବରୀ ଭବେତ୍ତଜ୍ଞା ଦ୍ୱିତୀୟପ୍ରହରୋଚିତା ।। ୧୨ ।।
ଆରୋହେ ଗନିହୀନାସ୍ୟାଦବରୋହେ ସମଗ୍ରକା ।
ଧୈବତଶ୍ଚୈବ ବାଦିତ୍ୱଂ ସୁମତଂ ତତ୍ର ତଦ୍ୱିଦାମ୍ ।। ୧୩ ।।
ମଧ୍ୟମେନ ଗ୍ରହଃ ପ୍ରୋକ୍ତଃ ପଞ୍ଚମେ ନ୍ୟସନଂ ଭବେତ୍ ।
ଉତ୍ତରାଂଗପ୍ରଧାନତ୍ୱାଦ୍‌ଗ୍ରହଃ ପୂର୍ବାଂଗଗୋଚରଃ ।। ୧୪ ।।

(ଲ.ସଂ.)

ରାଗିଣ୍ୟାଃ ସାବରୀୟଂ ମୃଦୁଗମଧନିଭିସ୍ତୀବ୍ରକେଣର୍ଷଭେଣ
ସଂପନ୍ନାରୋହଣେ ଯା ଖଲୁ ଗନିରହିତା ଚାବରୋହେ ତୁ ପୂର୍ଣ୍ଣା ।
ବାଦୀ ସ୍ୟାଦ୍ଧୈବତୋଽସ୍ୟାଂଶ୍ରୁତିରୁଚିରତରୋ ଗଶ୍ଚ ସମ୍ବାଦ୍ୟଭୀଷ୍ଟୋ
ବିସ୍ତୃତନପ୍ରସାରୈର୍ମୃଦୁମଧୁରଗକୈର୍ଗୀୟତେ ସଙ୍ଗବେସା ।। ୧୫ ।।

(କଳ୍ପଦ୍ରୁମାଙ୍କୁରେ)

ମୃଦୁଗମୌଧନୀ ଚୈବ ତୀବ୍ରସ୍ତୁ ଋଷଭୋ ଧଗୌ ।
ବାଦୀସମ୍ବାଦିନୌ ଯସ୍ୟାଂ ସା ଶାବର୍ଯ୍ୟପି ସଂଗବେ ।। ୧୬ ।।

(ଚନ୍ଦ୍ରିକାୟାଂ)

ଆଶାବରୀ ରାଗ କର୍ଣ୍ଣାଟମେଳ ବା ଆଶାବରୀମେଳରୁ ଉତ୍ପନ୍ନ ହୁଏ । ଆରୋହରେ ଗନି ବର୍ଜିତ, ଅବରୋହରେ ସମ୍ପୂର୍ଣ୍ଣ ଜାତି ଔଡ଼ବ, ସଂପୂର୍ଣ୍ଣ-ବାଦୀ-ଧା-ସମ୍ବାଦୀ -ଗା- ହୁଏ । ସମୟ ଦିବା ଦ୍ୱିତୀୟ ପ୍ରହର । ଏହା ଉତ୍ତରାଙ୍ଗ ।

ପ୍ରଥମ ପ୍ରକାର:-

ଆରୋହ-ସ ରି ମ ପ ଧ ସ

ଅବରୋହ-ସ ନ ଧ ପ ମ ଗ ରି ସ

ଧରଣ-ରେ, ମା ପ, ନି ଧ, ପା ଧ, ସା ନି ଧ,

ପ, ଗ, ରେ, ସ,

ଦ୍ୱିତୀୟ ପ୍ରକାର;-

ଏହା ଗୌଣୀ ବା ଭୈରବ ମେଳରୁ ଉତ୍ପନ୍ନ ହୁଏ। ବାଦୀ -ଧ- ସଂବାଦୀ -ର- ହୁଏ।

ଆରୋହ-ସ ର ମ ପ ଧ ସ

ଅବରୋହ-ସ ନ ଧ ପ ମ ଗ ରି ସ

ଧରଣ-ଆରୋହ ଅବରୋହ ଅନୁସାରେ

### ରାଗ-ଯମନକଲ୍ୟାଣ

କଲ୍ୟାଣୌ ଯମନୋ ବିଭାତି ସକଲୈସ୍ତୀବ୍ରସ୍ୱରୈର୍ମଣ୍ଡିତୋ

ଗାନ୍ଧାରଃ କଥିତୋଽତ୍ର ବାଦ୍ୟଥ ଚ ସଂବାଦୀ ନିଷାଦଃ ସ୍ୱରଃ।

ଶେଷାଃ ସ୍ୟୁସ୍ତ୍ୱନୁବାଦିନଃ କ୍ୱଚିଦିହସ୍ୟାଦ୍ଦ୍ୱିଧମଃ କୋମଳୋ

ଗେୟୋ ରାତ୍ରିମୁଖେ ମନୀଷିଭିରସୌ ସଂପୂର୍ଣ୍ଣ ରାଗାଗ୍ରଣୀ ।। ୧୭ ।।

(କଳ୍ପଦ୍ରୁମାଙ୍କୁରେ)

ଯତ୍ର ସର୍ବେ ସ୍ୱରାସ୍ତୀବ୍ରା ବାଦୀ-ସଂବାଦିନୌ ଗନୀ।

ନିଶାମୁଖେ ତୁ ଯମନ କ୍ୱଚିତ୍କୋମଳ ମଧମଃ ।। ୧୮ ।।

(ଚନ୍ଦ୍ରିକାୟାମ୍)

ଯମନରାଗ କଲ୍ୟାଣ ମେଳରୁ ଉତ୍ପନ୍ନ ହୁଏ। ଏହା ସମ୍ପୂର୍ଣ୍ଣ ଜାତି। ଏଥିରେ ମଧ୍ୟମ ସ୍ୱର ତୀବ୍ର ହୁଏ; ବାକୀ ସବୁ ସ୍ୱର ଶୁଦ୍ଧ ଲାଗେ। ବାଦୀ-ଗ, ସମ୍ବାଦୀ-ନି-ଗାଇବା ସମୟ ରାତ୍ରି ପ୍ରଥମ ପ୍ରହର। ଏହି ଅନୁସାରେ ଗାଇଲେ ତାହାକୁ ଯମନରାଗ କହନ୍ତି। ଏଥିରେ କୋମଳ ଅର୍ଥାତ୍ ଶୁଦ୍ଧ ମଧ୍ୟମ ଲଗାଇ ଗାଇଲେ ତାହାକୁ ଜ୍ଞାନିମାନେ ଯମନ-କଲ୍ୟାଣ କହନ୍ତି। ଅର୍ଥାତ୍ ଯମନନକଲ୍ୟାଣ କରି ଗାଇଲେ ଯମନରାଗର ଆରୋହଣ ଠିକ୍ ରଖି ଅବରୋହଣ-ସା, ନି, ଧା ପ ମ, ଗା, ମ, ଗା ରେ, ସା କରାଯାଏ। ଏହା ପୂର୍ବାଙ୍ଗ କେବଳ ଶୁଦ୍ଧ -ମ- ପ୍ରୟୋଗ ନ କଲେ, ଯମନରାଗ ହୁଏ।

ଆରୋହ-ସା, ରେ, ଗା, ମା, ପା, ଧା, ନି, ସା

ଅବରୋହ-ସା ନି, ଧା, ପା, ମା, ଗା, ରେ-ସା

ଧରଣ-ଗା, ରେ, ନି ରେ, ସା, ଗା, ରେ ଗା,

ପା ମା ଗା ମା ଗା -ରେ-ପା-ରେ-ସା

## ରାଗ-କାଫି

ହରପ୍ରିୟାଖ୍ୟ ମେଳୋଽସୌ ଲକ୍ଷ୍ୟେ କାଫୀତି ସଞ୍ଜିତଃ।
କାଫି ରାଗସ୍ତଦୁତ୍ଥଃ ସ୍ୟାଦିତି ଲକ୍ଷ୍ୟବିଦାଂ ମତମ୍॥ ୧୯ ॥
ପଞ୍ଚମୋଽତ୍ର ମତୋ ବାଦୀ ସଂବାଦୀ ଷଡ୍ଜ ନାମକଃ।
କେଚିଦ୍ ଗାନ୍ଧାରମାହୁସ୍ତେ ବାଦିନଂ ଗାନକୋବିଦାଃ॥ ୨୦ ॥

(ଲ.ସଂ.)

**କାଫୀରାଗୋ ଭୁବନବିଦିତଃ କୋମଳାଭ୍ୟାଂ ଗନିଭ୍ୟା-**
**ମନ୍ୟୈସ୍ତୀବ୍ରୈଃ ପରମ ମଧୁରଃ ପଞ୍ଚମୋ ବାଦିରୂପଃ ।**
**ସଂବାଦୀ ସ୍ୟାଦ୍ ସ ଇହ ଚ କ୍ୱଚିଦ୍‌ବାଦିନଂଗଂ ବଦନ୍ତି**
**ସାନ୍ଦ୍ରସ୍ନିଗ୍ଧଂ ସରସମତିଭର୍ଗୀୟତେଽସୌ ନିଶାୟାମ୍ ।। ୨୧ ।।**

(ରା.କ-ଦ୍ରୁମାଙ୍କୁରେ)

**ଅଧିକାରୀ ଖରହରପ୍ରିୟମେଳାଦ୍ ସୁନାମକଃ ।**
**କାଫିରାଗକ ଇତ୍ୟୁକ୍ତଃ ସନ୍ୟାଂସଂ ସାଂଶକଗ୍ରହମ୍**
**ଆରୋହେପ୍ୟଽବରୋହେ ଚ ସଂପୂର୍ଣ୍ଣ ଇତି ବିଶ୍ରୁତଃ ।। ୨୨ ।।**
**ସ ରି ଗ ମ ପ ଧ ନି ସ ସ ନି ଧ ପ ମ ଗ ରି ସ ।**

(ରାଗଲକ୍ଷଣ)

କାଫିରାଗ କାଫି ବା ଧନାଶ୍ରୀ ମେଳରୁ ଉତ୍ପନ୍ନ ହୁଏ । ଗ ନି- କୋମଳସ୍ୱର, ବାଦୀସ୍ୱର ଶୁଦ୍ଧବାଦୀ-ପଞ୍ଚମ ଓ ସଂବାଦୀ ଷଡ୍‌ଜ ହୁଏ । କେହି କେହି -ଗ-ନ କୁ ବାଦୀ ସଂବାଦୀ ମାନିଥାନ୍ତି । ସଂପୂର୍ଣ୍ଣ ଜାତି ରାତ୍ରି ମଧଭାଗରେ ଗାନ କରାଯାଏ । କେହି କେହି ସର୍ବକାଳୀନ କହନ୍ତି । ଏଥିରେ ଆରୋହଣରେ ତୀବ୍ର -ଗା- ଓ ତୀବ୍ର ଅର୍ଥାତ୍ ଶୁଦ୍ଧ ସ୍ୱର ବ୍ୟବହାର କରନ୍ତି । ଉତରାଂଗ କ୍ୱଚିତ୍ କୋମଳ ଧ ବ୍ୟବହାର ହୋଇଥାଏ । ଏ ରାଗର ନିୟମିତ ସ୍ୱର ନାହିଁ ।

ଆରୋହ-ସା ରେ ଗା ମା- ପା ଧା ନି ସା
ଅବରୋହ-ସା ନି ଧା ପା ମା ଗା ରେ ସା
ଅନ୍ୟପ୍ରକାର;-

ଆରୋହ-ସା ରେ ଗା ମ ପା ଗା ମା ପ ଧା ନି ସା
ଅବରୋହ-ସା ନି ଧା ପା ମାଗା ମାପା ମା ଗା ରେ ସା
ଧରଣ-ସାସା ରେ ରେ ଗାଗା ମାମା ପା ।

## ରାଗ-କଲ୍ୟାଣୀ

ମଧ୍ରୁ ତୀବ୍ରତରୋ ଯସ୍ମିନ୍ ଗନୀତୀବ୍ରବିତୀରିତୌ ।
ଗାନ୍ଧାରୋଦ୍‌ଗ୍ରାହକଲ୍ୟଣେନାରୋହେ ତିଷ୍ଟତୋ ମନୀ ।। ୨୩ ।।
(ସଂ: ପାରିଜାତ, ୪୦୦-ଶ୍ଳୋ)

କଲ୍ୟାଣୀମେଳକୋତ୍ପନ୍ନୋ ରାଗୋଽସୌ ମନ୍ୟତେ ବୁଧୈଃ ।
ଶୁଚିକଲ୍ୟାଣ ଇତ୍ୟାହୁ ଆରୋହେମନିବର୍ଜିତଃ ।। ୨୪ ।।
ଗାନ୍ଧରଃ ସୁମତୋ ବାଦୀ କୈଶ୍ଚଦୃଷଭ ଈରିତଃ ।
ମନ୍ଦ୍ରମଧସ୍ୱରୈର୍ଗୀତୋ ନିୟତଂ ସ୍ୟାତ୍ ସୁଖାବହଃ ।। ୨୫ ।।
(ଲ: ସଂ)

କଲ୍ୟାଣୀ-ରାଗ କଲ୍ୟାଣମେଳରୁ ଉତ୍ପନ୍ନ ହୁଏ । ଏଥିରେ ମି-କଡ଼ିସ୍ୱର; ବାକୀ ସବୁ ସ୍ୱର ଶୁଦ୍ଧ ହୁଅନ୍ତି । ବାଦୀ-ଗା; ସଂବାଦୀ -ଧା; କେହି କେହି-ରେ- ବାଦୀ; ପା-ସଂବାଦୀ କରିଥାନ୍ତି । ପୂର୍ବାଙ୍ଗ ରାଗ ଆରୋହରେ ମା-ନି ସ୍ୱରବର୍ଜିତ ହୁଏ; ଔଡ଼ବ ସଂପୂର୍ଣ୍ଣ ଜାତି, ଗାଇବା ସମୟ ରାତ୍ରି ପ୍ରଥମ ପ୍ରହର ।

ଆରୋହ-ସା ରେ ଗା ପା ଧା ସ
ଅବରୋହ-ସା ନି ଧା ପା ମ ଗା ରି ସ
ଧରଣ-ଗା, ରେସା, ରେସା, ନି ଧ ପ ଧ ସା ରେ ଗା,
ପା ଗା, ର ସ ।

## ରାଗ-କେଦାର

ଗନିତୀବ୍ରୌ ତୁ କେଦାର୍ଯାଂ ରିଧୌ ନ ସ୍ତୋଽଥ ଗାଦିମା।
(ସଂ:ପା:-୪୦୯ ଶ୍ଳୋ)

କଲ୍ୟାଣମେଳସଂଜାତଃ କେଦାରୋ ବହୁସଂମତଃ।
ଶଙ୍କରାଭରଣେଽପ୍ୟେନଂ କେଚିଦାହୁର୍ବିଚକ୍ଷଣାଃ ॥ ୨୬ ॥
ମଦ୍ବନ୍ଦ୍ୱମିହସଂଦିଷ୍ଟଂ ଗୌଣତ୍ୱଂ ତୀବ୍ର ମୋ ମତମ୍।
ଅଂଶତ୍ୱଂ ଶୁଦ୍ଧମୋଭୀଷ୍ଟଂ ମୂଲତ୍ୱଂ ଚାପି ତସ୍ୱରେ ॥ ୨୭ ॥
ପ୍ରାରୋହେ ସ୍ୟାଦ୍ରିଗୋନତ୍ୱମବରୋହେଗବତ୍ରିତମ୍।
ଗାନଂ ସୂରକ୍ତିଦଂ ଚାସ୍ୟ ରାତ୍ର୍ୟାଂ ପ୍ରଥମ ଯାମକେ ॥ ୨୮ ॥
(ଲା:ସଂ:)

କେଦାରସ୍ତ୍ୱଭିବର୍ଣ୍ଣିତୋ ରିଗନିଧୈସ୍ତୀବ୍ରୈଃ ସଦାଽଲଂକୃତୋ।
ବାଦୀ କୋମଳମଧମୋ ଭବତି ସଂବାଦୀ ଚ ଷଡ୍‌ଜସ୍ୱରଃ।
ତୀବ୍ରୋଽପି କ୍ୱଚିଦତ୍ର ମଧମ ଇହାରୋହେ ରିଗୌବର୍ଜ୍ଜିତୌ
ଯାମେ ଚ ପ୍ରଥମେ ନିଶାସୁ ମଧୁରଂ ବୀଣାରବୈର୍ଗୀୟତେ ॥ ୨୯ ॥
(କଳ୍ପଦ୍ରୁମାଙ୍କୁରେ)

ମେଳା ଚ ସଂଭବୋ ଧୀର ଶଙ୍କରାଭରଣାଚ୍ଚ ବୈ।
କେଦାରରାଗ ଇତ୍ୟୁକ୍ତଃ ସନ୍ୟାସଂ ସାଂଶକଗ୍ରହମ୍।
ଆରୋହେପ୍ୟବରୋହେ ଚ ଧବର୍ଜ୍ଜଂ ଷାଡ଼ବଂ ତଥା ॥ ୩୦ ॥
ସ ରି ଗ ମ ପ ନି ସା। ସ ନି ପ ମ ଗ ରି ସ, (ରା-ଲ)

କେଦାରରାଗ କଲ୍ୟାଣମେଳରୁ ଉପୂନ୍ନ ହୁଏ। ଦୁଇ ମଧମ ପ୍ରୟୋଗ ହୁଏ। ବାଦୀ ଶୁଦ୍ଧମଧମ ଓ ସଂବାଦୀ ଷଡ଼୍‌ଜ ହୁଏ।

ଅବରୋହ ସମୟେ କ୍ୱଚିତ୍ କୋମଳ ନିଷାଦ ବକ୍ରଭାବ ବ୍ୟବହାର ହୁଏ। ଏହା ଷାଡ଼ବ ସମ୍ପୂର୍ଣ୍ଣ ଆରୋହ ଅବରୋହରେ ନିଷାଦ ଓ ରିଗ-ଦୁର୍ବଳ ହୁଏ। ପୂର୍ବାଙ୍ଗ ରାଗ ରାତ୍ରି ପ୍ରଥମ ପ୍ରହରରେ ଗାନ ହୁଏ।

ପ୍ରଥମପ୍ରକାର ଆରୋହ-ସା ମା ମା ପା ଧା ପା ନି ଧା ସା

ଅବରୋହ-ସା ନି ଧା ପା ମପଧପ ମ ଗ ମ ରେ ସା

ଧରଣ-ସା ମା ମା ପା ଧା ପା ମା ରେ ରସା ସାମା

ଦ୍ୱିତୀୟପ୍ରକାର ଆରୋହ-ସ ମ ଗ ମ ପ ମ ପ ଧ ପ ନ ସ

ଅବରୋହ-ସ ଧ ନ ପ ମ ପ ଧ ପ ମ ଗ ମ ର ସ

ଧରଣ-ନ ସ ମ ମ ଗ ମ ପ ମ ପ ଧ ପ

ମ ମ ଗ ମ ର ପ

ଏଥିରେ ଆରୋହରେ ରେ-ଧ-ସ୍ୱର ବର୍ଜିତ ଓ ଅବରୋହରେ ଦୁର୍ବଳ ହୁଏ।

ତୃତୀୟ ପ୍ରକାର ଆରୋହ-ସ ର ଗ ମ ପ ନ ସ

ଅବରୋହ-ସ ନ ପ ମ ଗ ର ସ।

ଧରଣ-ସ ରି ସ ମ ମ ଗ ମ ପ ଗ ମ ପ ନି ସ

ନ ସ ପ ଗ ମ ପ ଗ ମ ର ସ।

## ରାଗ-କେଦାରଗୌଡ଼ା ବା କେଦାରଗୌଳ

ଅଥ କେଦାର ଗୌଳଃ ସ୍ୟାତ୍ତୀବ୍ର ଗାନ୍ଧାରସଂଯୁତଃ।
ରଂଜନୀମୂର୍ଚ୍ଛନାଯୁକ୍ତଃ ରି-ପ-ଯୋଗେନ ମଣ୍ଡିତଃ ।। ୩୧ ।।

(ଓଂ:ପା: ଶ୍ଳୋ-୪୨୦)

**ତଥୈବ ମପ-ଯୋଗେନ ପଞ୍ଚମାଣେନ ଶୋଭିତଃ ।। ୩୨ ।।**
**ଆରୋହ ଗ-ଧ-ବର୍ଜଃ ସ୍ୟାଦ୍ବିସ୍ୱରାଂଶଃ କ୍ୱଚିନ୍ନତଃ ।।**
**(ସଂ:ପା:ଶ୍ଲୋ-୪୨୧)**

କେଦାରଗୌଡ଼ା ବା କେଦାରଗୌଳ ରାଗ ଶ୍ରୀରାଗ ବା ଖମ୍ବାଜ ବା କାମ୍ବୋଜୀ ମେଳରୁ ଉତ୍ପନ୍ନ ହୁଏ। ଏଥିରେ ନି-କୋମଳ ବାକି ସ୍ୱର ସମସ୍ତେ ଶୁଦ୍ଧ ହୁଅନ୍ତି। ଆରୋହରେ ଗ-ଧ ସ୍ୱର ବର୍ଜିତ ହୁଏ ଏବଂ ଆରୋହରେ କେହି କେହି ଶୁଦ୍ଧ ନି-ସ୍ୱର ପ୍ରୟୋଗ କରି ମନୋହର କରିଥାନ୍ତି। ଜାତି ଔଡ଼ବ ସମ୍ପୂର୍ଣ୍ଣ। ବାଦୀ ସା; ସଂବାଦୀ ପା ହୁଏ। କେତେକ ବାଦୀ ରେ ସଂବାଦୀ ପା କରି ଗାଇଥାନ୍ତି। ସମୟ ଦିବା ତୃତୀୟ ପ୍ରହର ଶେଷ। ପୂର୍ବାଙ୍ଗ ଅବରୋହରେ କୋମଳ ନି-ପ୍ରୟୋଗରେ ଦୋଷାବହ ନ ହୋଇ ରଂଜକ ହୋଇଥାଏ।

ଆରୋହ-ସା ରେ ମା ପା ନି ସା
ଅବରୋହ-ସା ନି ଧ ପ ମ ଗ ରି ସା।
ଧରଣ-ସାରେ ମାପା ନି ଧାପା, ମାପାଧା, ମାଗା,
ରେ, ପା ମାଗା ରେ, ସା

## ରାଗ-କାମୋଦୀ

**କାମ୍ବୋଜୀ ତୀବ୍ରଗାନ୍ଧାରା ଗାନ୍ଧାରାଦିକମୂର୍ଚ୍ଛନା।**
**ଆରୋହେ ମ ନି ହୀନାସ୍ୟାନ୍ମୂର୍ଚ୍ଛନା ଚୋଉରାୟତା ।। ୩୩ ।।**
**(ସଂ:ପା:ଶ୍ଲୋ-୪୧୦)**

କାମୋଦ ଭାତିଯୁକ୍ତଃ କିଲରିଗଧନିଭିସ୍ତୀବ୍ରକୈର୍ମଦ୍ବୟେନ
ବାଦୀ ଚାତ୍ର ପ୍ରସିଦ୍ଧଃ ପ୍ରବିଳସତି ସଦା ପଞ୍ଚମୋରିସ୍ବମାତ୍ୟଃ ।
ସ୍ତୋକୋଽମୁଷ୍ମିନ୍ନିଷାଦଃ ପ୍ରକଟୟତି ରୁ ବକ୍ରଗଣ୍ଡାବରୋହେ
ସାନନ୍ଦଂ ପୂର୍ବଯାମେ ନିଶି ବିବୁଧଜନୈର୍ଗୀୟତେ ମଞ୍ଜୁକଣ୍ଠୈଃ ॥ ୩୪ ॥

(କଳ୍ପଦ୍ରୁମାଙ୍କୁରେ)

ଦ୍ୱିମଧମଣ୍ଡାନ୍ୟତୀବ୍ରୋ ଗ ବକ୍ରୋଽଳ୍ପ ନିଷାଦକଃ ।
ପାଂଶଷ୍ଡଷଭସଂବାଦୀ କାମୋଦୋ ନଶି ଗୀୟତେ ॥ ୩୫ ॥

(ଚନ୍ଦ୍ରିକାୟାମ୍)

କାମୋଦୀ ରାଗ କଲ୍ୟାଣ-ମେଳରୁ ଉତ୍ପନ୍ନ ହୁଏ । ଆରୋହରେ ମ ନି ସ୍ୱର ବର୍ଜିତ ହୁଏ । ଜାତି ଔଡବ ସମ୍ପୂର୍ଣ୍ଣ । ଧା ବାଦୀ; ଗା ସଂବାଦୀ । ଦୁଇ ପ୍ରହରପରେ ସନ୍ଧ୍ୟା ପୂର୍ବରୁ ଗାନ ହୁଏ । ହାସ୍ୟ କରୁଣରସ ରାଗ ପୂର୍ବାଙ୍ଗ ଏଥିରେ ଅବରୋହ ସମୟେ ବକ୍ରଭାବେ ଶୁଦ୍ଧ-ମ-ପ୍ରୟୋଗ; ଅର୍ଥାତ୍ ଗ ମ ରି ସ ହୁଏ ।

ଥମ ପ୍ରକାର ଆରୋହ-ସ, ରେ, ଗ, ପ, ଧ, ସ
ଅବରୋହ-ସ, ନି, ଧ, ପ, ମ ଗ, ମ ରେ, ସା
ଧରଣ-ଗା, ରେସା, ରେସା, ନି ଧ ପ ଧ ସ
ରେଗା, ପ, ଗ ଧ ପ ମ ଗ ମରେ ସ ଧ ସା ।

ଦ୍ୱିତୀୟ ପ୍ରକାର ଆରୋହରେ-ମ-ନି- ସ୍ୱରକୁ ବର୍ଜିତ ନ କରି ବକ୍ରଭାବେ ପ୍ରୟୋଗ କରି ଶୁଦ୍ଧ ତୀବ୍ର ଦୁଇ ଗୋଟି ମ ସ୍ୱର ବ୍ୟବହାର ହେବାରୁ ପ-ବାଦୀ, ରେ-ସଂବାଦୀ, ପୂର୍ବାଙ୍ଗ, ରାତ୍ର ପ୍ରଥମ ପ୍ରହର ସମୟ, ଅବରୋହରେ ବକ୍ରଭାବେ ଅଳ୍ପ କୋମଳ

ନି ଯଥା ସ ନ ଲାଗିଥିବାରୁ ଏହା କାମୋଦୀ ରାଗକୁ ଖଣ୍ଡନ କରିବାହେତୁ ଏହାର ନାମ ଖଣ୍ଡକାମୋଦୀ କୁହାଯାଏ ।

ଆରୋହ-ସା ର, ପା, ମ, ପ ନଧା ସ ।

ଅବରୋହ-ସ ନି ଧପ ମ ପଧପ ଗ ମପ ଗମ ରସ

ଧରଣ-ର ପ ମ ପ ଧପ ଗମପ ଗମରସ ।

## ରାଗ-କାନଡ଼ଗୌଡ଼ (କାନଡ଼ ଗୌଳକ)

**ଅଧିକାରି ଖରହର ପ୍ରିୟାଦ୍ କାନଡ଼ ଗୌଳକଃ ।**
**ସନ୍ୟାସ ସାଂଶକଚୈବ ସ ଷଡ୍ଜ ଗ୍ରହମୁଚ୍ୟତେ ।**
**ଆରୋହେତୁ ଧବର୍ଜ୍ଜ ଚାପ୍ୟବରୋହେରିବର୍ଜ୍ଜିତମ୍ ।। ୩୬ ।।**
**ସ ରି ଗମ ପନସ । ସ ନ ଧ ପ ମ ଗ ସ ।।**

କାନଡ଼-ଗୌଡ଼ା ରାଗରେ ଗା-ନି କୋମଳସ୍ୱର; ବାକୀ ସ୍ୱର ଶୁଦ୍ଧ ହୁଏ । ଆରୋହରେ ଧା-ସ୍ୱର ଓ ଅବରୋହରେ-ରେ-ସ୍ୱର ବର୍ଜ୍ଜିତ ହୁଏ । ଜାତି ଷାଡ଼ବ । ଷାଡ଼ବ, ବାଦୀ ସା, ସଂବାଦୀ ପ ସ୍ୱର ହୁଏ । ଏହା ପୂର୍ବାଙ୍ଗପ୍ରଧାନ ସବୁ ସମୟେ ଗାନ ହୁଏ । ଏହା କାଫି ଓ ଧନାଶ୍ରୀ ମେଳର ରାଗ ।

ଆରୋହ-ସା, ରେ, ଗ୍ର ମା ପା ନି ସା

ଅବରୋହ-ସ ନି ଧ ପ ମ ଗ ସ

ଧରଣ-ସା ସା ରେ ଗା ମା ପା ମା ଗା ସା ରେ ନ ସା

## ରାଗ-କାଲଙ୍ଗଡ଼ା

**ଭୈରବସ୍ୟୈବ ମେଳେ ସ୍ୟାଦ୍‌କଳିଙ୍ଗସ୍ୟ ମତା ଜନୁଃ ।**
**ଆରୋହେ ଚାବରୋହେଽପି କଳିଙ୍ଗଃ ପୂର୍ଣ୍ଣ ଈରିତ ।। ୩୭ ।।**

ଧୈବତଃପଞ୍ଚମୋ ବାଽନ୍ତ୍ର ସ୍ୱରୋ ବାଦୀତି ସଂମତଃ ।
ଗାନଂ ସୁସଂମତଂ ଚାସ୍ୟ ଚତୁର୍ଥପ୍ରହରେ ନିଶି ।। ୩୮ ।।
ରାଗଃପ୍ରୋକ୍ତଃ କଲିଂଗୋ ମୃଦୁରିମଧଯୁତସ୍ତୀବ୍ରଗାଂଧାରନିଃ ସ୍ୟାଦ୍
ବାଦୀ ଧଃ ସଂମତୋଽସ୍ମିନ୍ ସରଳଗତିରଥୌ ଗସ୍ୱରୋ ମନ୍ତ୍ରୀବର୍ଯଃ ।
ପୂର୍ଣ୍ଣାରୋହାବରୋହଃ ପ୍ରକୃତିସୁରୁଚିରଃ ସର୍ବଲୋକପ୍ରସିଦ୍ଧ-
ସ୍ତୂର୍ଯେଯାମେନିଶାୟାଂ ସକଳବୁଧବରୈର୍ଗୀୟତେ ମଂଜୁତାରାନୈଃ ।। ୩୯ ।।
(ରାଃ କଃ ଦ୍ରୁଃ)

କାଳଙ୍ଗଡ଼ା ରାଗ ମାଳବ-ଗୌଡ଼ ବା ଭୈରବ ଗୌରୀ ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ କେହି କେହି ପା-ବାଦୀ-ସା-ସଂବାଦୀ କରନ୍ତି । କେହି କେହି ଧା- ବାଦୀ, ଗା ସଂବାଦୀ କରି ଗାଆନ୍ତି । ଉତ୍ତରାଂଗ ରାତ୍ର ଶେଷ ପ୍ରହର ଅର୍ଥାତ୍ ସୂର୍ଯ୍ୟୋଦୟ ପୂର୍ବରୁ ଗାନ ହୁଏ ।

ଆରୋହ-ସା, ରେ-ଗାମା-ପା, ଦା-ନି-ସା,
ଅବରୋହ-ସା, ନି, ଧା, ପା ମା ଗା ରେ, ସା
ଧରଣ-ଗାମା, ପାଦା, ମାପା, ମାଗା, ନି, ସାରେଗା, ମାଗା

### ରାଗ-କୁମଞ୍ଚ

ହରିକାମ୍ଭୋଜୀମେଳାଚ୍ଚ ସଂଜାତଶ୍ଚ ସୁନାମକଃ ।
ଖମାଚରାଗ ଇତ୍ୟୁକ୍ତଃ ସନ୍ୟାସଂ ସାଂଶକଗ୍ରହମ୍ ।
ସମ୍ପୂର୍ଣ୍ଣ ବକ୍ରମାରୋହେଽପ୍ୟବରୋହେ ତଥୈବ ଚ ।। ୪୦ ।।
ସରି ସ ମ ଗମ ନଧ ନିପ ଧ ନି
ସା । ସ ନି ଧ ପ ମଗ ସରିସ ।

ଖମାଚ-ରାଗର ଉତ୍କଳ ନାମ କୁମଞ୍ଚ ବୋଲି ଲେଖା ଅଛି। ଏହି କୁମଞ୍ଚ-ରାଗରେ ନି ସ୍ୱର କୋମଳ ଲାଗେ, ବାକି ସ୍ୱର ସମସ୍ତ ଶୁଦ୍ଧ ସ୍ୱର ହୁଅନ୍ତି। ଏହା ହରିକାମ୍ଭୋଜି ଓ ଖମ୍ବାଜ ବା ଶ୍ରୀ ରାଗ ମେଳରୁ ଉତ୍ପନ୍ନ ହୁଏ। ଜାତି ବକ୍ର ସମ୍ପୂର୍ଣ୍ଣ। ଏହାର ବାଦୀ ସା ଓ ସଂବାଦୀ-ମା ସ୍ୱର ହୁଏ। ପୂର୍ବାଂଗରେ ଗାନ ହୁଏ। ସମୟ ରାତ୍ର ଦ୍ୱିତୀୟ ପ୍ରହର। ଆରୋହରେ ଶୁଦ୍ଧ ନି-ପ୍ରୟୋଗରେ ରାଗର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ କୁଶଳଗାୟକମାନେ ଗାନ କରିଥାନ୍ତି।

ଆରୋହ-ସା-ରେ ସା-ମା ନିଧା ନି-ପା-ଦା-ନି-ସା।

ଅବରୋହ-ସା-ନି-ଧା- ପା ମା ଗାମା ସରେ ସା।

ଧରଣ-ସା, ରେ, ସା, ମା, ଗାମ, ନି ଦା ପା ମା ଗା ମା

## ରାଗ-କର୍ଣ୍ଣାଟ

ପ୍ରୋକ୍ତଃ କର୍ଣ୍ଣାଟରାଗୋ ମୃଦଗମଧନିକୋ ମନ୍ଦ୍ରମଧସ୍ୱରଷ୍ଣୌ
ବାଦୀତୀବ୍ରର୍ଷଭୋଽତ୍ର ଶ୍ରବଣମଧୁରଃ ସଂବାଦିନା ପଞ୍ଚମେନ।
ଆରୋହେ ଦୁର୍ବଳୋଗଃ ପ୍ରବିଳସତି ଦଦାନ୍ଦୋଳନଂଗେ ପ୍ରଯୁକ୍ତଂ
ଧୋବର୍ଜ୍ୟଣ୍ଣାବରୋହେ ବିଦିତ ଇହ ଭବେତ୍ପୂର୍ବକାଳେ ନିଶିଥାତ୍॥ ୪୧॥

(କଳ୍ପଦ୍ରୁମାଙ୍କୁରେ)

ମୃଦୁଗନିଧମୌରିଷ୍ଟୁ ତୀବ୍ରୋଽଂଶଃ ପ-ସହାୟକଃ।
ଗାଂଧାରାନ୍ଦୋଳନଂ ଯତ୍ର କର୍ଣ୍ଣାଟଃ ସ ନିଶି ସ୍ମୃତଃ॥ ୪୨॥

(ଚନ୍ଦ୍ରିକାୟାମ୍)

କର୍ଣ୍ଣାଟ ରାଗ କର୍ଣ୍ଣାଟ ବା ଆଶାବରୀ ମେଳରୁ ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ ଷାଡ୍‌ବ-ରେ-ବାଦୀ, ପା-ସଂବାଦୀ। ସମୟ ମଧ୍ୟରାତ୍ର-ପୂର୍ବାଙ୍ଗ ଆରୋହେ-ଗା-ଦୁର୍ବଳ, ଅବରୋହେ-ଦା ବର୍ଜ୍ୟ। ଗା-ସ୍ୱର ଆନ୍ଦୋଳନ ହୁଏ। ନି ଏବଂ ପା ସଙ୍ଗତି ସୁନ୍ଦରତା ବଢାଏ।

ଆରୋହ-ନି ସା ରେ ଗା ରେସା ମା ପା ଧା ନି ସା

ଅବରୋହ-ସା ଧା ନି ପା ମା ପା ଗା ମା ରେ ସା

ଧରଣ-ଗା, ରେ ରେ, ସା,ଦା, ଡ଼ି ସା, ରେ ସା।

### ରାଗ-କଳହଂସକେଦାର

**ଛନ୍ଦଃ ସ କଳହଂସସ୍ୟ ପାଦୈରନ୍ତେ ସ୍ୱରାନ୍ୱିତୈଃ।**
**କଳହଂସଃ ସ୍ୱରେ ନ୍ୟାସୋ ଗେୟୋ ଝମ୍ପାଦିତାଳତଃ॥ ୪୩॥**

(ସଂ-ର-ପ୍ରବନ୍ଧାଧାୟ-୨୪୦ ଶ୍ଳୋ)

**ବଣ୍ଡକୋ ମାତ୍ରିକଶ୍ଚେତି କଳହଂସୋ ଦ୍ୱିଧା ମତଃ।**
**ଗଦ୍ୟାତ୍ମା ଚେତ୍ ସ୍ୱରାନ୍ ଗୀତ୍ୱା ତତଃ ପଦନିବେଶନମ୍॥ ୪୪॥**

ଉତ୍କଳୀୟ ଗୀତରେ ରାଗ କଳହଂସ-କେଦାର ଲେଖାଅଛି। ସଂଗୀତ ରତ୍ନାକର ଗ୍ରନ୍ଥ ଅନୁସାରେ କଳହଂସ ଏକ ଛନ୍ଦର ନାମ ଅଟେ। କଳହଂସ ସହିତ କେଦାର ଶବ୍ଦ ଯାହା ଲେଖାଅଛି, ତାହା ମଧ୍ୟରେ କଳହଂସ ଛନ୍ଦର ନାମ , କେଦାର ଗୋଟିଏ ରାଗର ନାମ। ଏହି ଗ୍ରନ୍ଥରେ କେଦାର ରାଗର ଲକ୍ଷଣ ଦିଆଯାଇଛି। କଳହଂସ ଛନ୍ଦକୁ ଝମ୍ପାଦି ତାଳରେ ଗାଇବାକୁ ହୁଏ। ଏଥିରୁ ବୁଝାଯାଉଅଛି ଯେ କଳହଂସ ଛନ୍ଦ ଝମ୍ପାଦି ତାଳରେ ଓ କେଦାର ରାଗରେ ଗାଇବ। ତାହା କଳହଂସ କେଦାର ହେବ। ପୁନଶ୍ଚ

ରାଗ ଲକ୍ଷଣ ଗ୍ରନ୍ଥରେ କଳହଂସ ଏକ ରାଗରୂପେ ନିର୍ଦ୍ଦେଶ କରାଯାଇଅଛି। ତହିଁର ଲକ୍ଷଣ ଦିଆଗଲା।

ଜାତୋଯାଗପ୍ରିୟାମେଳାତ୍ କଳହଂସ ଇତୀରିତଃ।
ସନ୍ୟାସ ସାଂଶକଂ ଚୈବ ସ ଷଡ୍‌ଜଗ୍ରହମୁଚ୍ୟତେ।
ଆରୋହେଽପ୍ୟବରୋହେ ଚ ଗ-ବର୍ଜ୍ୟଂ ଷାଡବଂ ତଥା॥ ୪୫॥

ସ ରି ମ ପ ଧ ନି ସା ସ ନି ଧ ପ ମ ରି ସା।
(ରାଗଲକ୍ଷଣ)

ଯାଗପ୍ରିୟା ମେଳର ଉତ୍କଳ ପ୍ରଚଳିତ ଶୁଦ୍ଧ ବିକୃତ ୧୨ ଗୋଟି ସ୍ୱର ଅନୁସାରେ ସ୍ୱର, ଯଥା-ସ ଗ ଗ ମ ପ ଧ ଧ ସ ହେଉଅଛି। ଏହା ଓଡ଼ିଶା-ପ୍ରଚଳିତ ଗାୟକିରେ ବ୍ୟବହାର ମତେ କଳହସଂ-ରାଗ ଧନଶ୍ରୀ-ମେଳରୁ ଉତ୍ପନ୍ନ ହୁଏ। ଜାତି ଷାଡ଼ବ ସମ୍ପୂର୍ଣ୍ଣ। ପ-ବାଦୀ ଓ ରେ-ସଂବାଦୀ ହୁଏ। ଉତ୍ତରାଂଗ, ସମୟ ସର୍ବକାଳୀନ। ଅବରୋହରେ ବକ୍ରଭାବେ ଅଳ୍ପ କୋମଳ ଧ-ବ୍ୟବହାର ହୁଏ। ଯାଗପ୍ରିୟା ମେଳର ଚଳନ ପ୍ରାୟ ନ ଥିବାରୁ ଉପରୋକ୍ତ ଗାନ କରିବା ଉଚିତ।

ଆରୋହ-ସ ରି ମ ପ ଧ ନ ସ।

ଅବରୋହ-ସ ନ ଧ ପ ମ ର ସ।

ଧରଣ-ସ, ରମଗଳ, ମରସ, ନ ଧନ ସଗ, ମପ, ଧମ, ରିସ

ଉପରୋକ୍ତ, ଆରୋହ ଅବରୋହ ଓ ବାଦୀସଂବାଦୀ ଓ ମେଳକୁ ଠିକ୍ ରଖି କେଦାର ରାଗ ସଂଯୋଗ ହେଲେ ଆରୋହରେ

ଧ-ସ୍ୱରକୁ ବର୍ଜନ କରି ଅବରୋହ ସମୟେ ସମ୍ପୂର୍ଣ୍ଣ ଅର୍ଥାତ୍ ସ ନ ଧ ପ ମ ଗ ର ସ ପ୍ରୟୋଗ ହେଲେ କଳହଂସ-କେଦାର ରାଗ ହୁଏ। ଏ ରୂପ ଚଳନ ଶୁଣାଯାଏ।

ଆରୋହ-ସ ର ମ ପ ନ ସ

ଅବରୋହ-ସନ ଧପ ମଗ ରସ

ଧରଣ-ମ ନ ମ ଗସ, ନ ନ ସ, ମ ମମ।

## ରାଗ-କୌଶିକ

**ଆଶାବରୀ ସୁମେଳୋତ୍ଥା କୌଶିକିକାନଡ଼ାମତା।**
**ପ୍ରାରୋହେ ରି-ପହୀନାଽସୌ ସମ୍ପୂର୍ଣ୍ଣା ଚାବରୋହଣେ॥ ୪୬॥**
**ମଧ୍ୟମଃ ସଂମତୋ ବାଦୀ ସାହଚର୍ଯ୍ୟେ ତୁ ଷଡ୍‌ଜକଃ।**
**ଗାନଂ ସମୀରିତଂ ତସ୍ୟା ନିଶିଥେ ଭୂରିରକ୍ତିଦମ୍॥ ୪୭॥**
**କାନଡ଼ା-ମାଳକୌଶଶ୍ଚ ମିଳିରୋଽତ୍ର ଯଥାଯଥମ୍।**
**କାଫିମେଳଗତାକୌଶୀ ପୂର୍ବମେ ମୟୋଦିତା॥ ୪୮॥**
**ମଧନିସନିଧମୈଃ ସ୍ୟାଦ୍ ମାଳକୋଶାଂଗଦର୍ଶନମ୍।**
**ପଗମଗରିସୈଃ କୁର୍ଯ୍ୟାଦ୍ ବୁଧସ୍ତଦଂଗବାରଣମ୍॥ ୪୯॥**
**ଅପ୍ରସିଦ୍ଧମିଦଂ ରୂପଂ ଗାୟନୋତ୍ତମନିର୍ମିତମ୍**
**ସମୁଦ୍‌ଭୂତଂ ଯଥାନ୍ୟାୟମବଶ୍ୟରକ୍ତିଦଂ ଭବେତ୍॥ ୫୦॥**
(ଲକ୍ଷ୍ୟସଙ୍ଗୀତମ୍)

ଆଶାବରୀ ବା କର୍ଣ୍ଣାଟ ମେଳରୁ କୌଶିକ ମେଳରୁ ଉତ୍ପନ୍ନ ହୁଏ। ଜାତି ଔଡବ ସମ୍ପୂର୍ଣ୍ଣ। ଆରୋହେ-ରେ ପା ବର୍ଜିତ ହୁଏ।

ଅବରୋହରେ ସମ୍ପୂର୍ଣ୍ଣ। ମା-ବାଦୀ, ସା-ସମ୍ବାଦୀ। ଉତ୍ତରାଂଗ ମଧ୍ୟ ରାତ୍ରରେ ଗାନ ହୁଏ।

କେତେକ ସଂଗୀତ-ପଣ୍ଡିତଙ୍କ ମତରେ କାନଡାରେ ମାଲକୋଶର ସଂଯୋଗ ହେଲେ କୌଶିକ ଉତ୍ପନ୍ନ ହୁଏ। ମାଲକୋଶର ମ କାହାର ସୁଖକର ନୁହେଁ-ତହିଁରେ ବାଦୀ ହେବାରୁ ସର୍ବଦା ବୈଚିତ୍ର୍ୟ ଅଟେ। ପଞ୍ଚମର ପ୍ରୟୋଗ ହେଲେ ଧନାଶ୍ରୀ ଅଙ୍ଗକୁ ପାଏ। ମାଲକୋଶର ସଂପର୍କରୁ ସଂଗୀତଜ୍ଞ ତାକୁ ସୁଧାରି ନେବ। କେତେକ ପଣ୍ଡିତ ହରପ୍ରିୟା ନାମକ ବେଳରୁ ମଧମାଂଶକୁ କହିଛନ୍ତି ଲାଧ୍ୟମାର୍ଗରେ ଏପରି ପ୍ରୟୋଗ ହେବା ଦେଖାଯାଏ।

ଆରୋହ-ନି ସାମା, ଗାମା, ଧାମାଗା, ରେସା ମାଧା ନି ସ
ଅବରୋହ-ସା ନି ଧା ମଧା ନି ଧାମା, ପାଗାମ, ରେସା
ଧରଣ-ଏହି ଆରୋହ ଅବରୋହ ଅନୁସାରେ ହେବ ଏହାକୁ ଧା-ପରିବର୍ତ୍ତେ ଶୁଦ୍ଧ-ଧା ସ୍ୱର ଦେଇ କାଫିମେଳ ଅନୁସାରେ ମଧ ଗାନ କରାଯାଇଥାଏ।

### ରାଗ-କାନାଡ଼ା (କାନଡ଼ା)

ତୀବ୍ରଗାନ୍ଧାରସମ୍ପନ୍ନା ମଧମୋଦ୍‌ଗ୍ରାହଧାନ୍ତିମା।
ସାଂଶସ୍ୱରେଣ ସଂଯୁକ୍ତା କାନଡ଼ୀ ସା ବିରାଜତେ ॥୫୧ ॥।
(ସଂ-ପା ୩୮୪ ଶ୍ଳୋ)

ଯେଉଁଥିରେ ଗାନ୍ଧାର ତୀବ୍ର ଲାଗେ-ମଧମ ସ୍ୱର ପରେ ଉଦ୍‌ଗ୍ରାହ ହୁଏ- ପୁଣି ଧୈବତର ନ୍ୟାସ ହୁଏ। ଯାହାର ଅଂଶ ଷଡ଼ଜ-ସ୍ୱର ଶୁଦ୍ଧା ସମ୍ପୂର୍ଣ୍ଣଜାତି।

ଓଡ଼ିଶାମତେ ଯଥା:- କାନଡ଼ା ରାଗରେ ନ କୋମଳ ବାକି, ସମସ୍ତ ସ୍ୱର ଶୁଦ୍ଧ ହୁଏ। ଜାତି ସମ୍ପୂର୍ଣ୍ଣ ହୁଏ। ସା-ବାଦୀ, ପା-ସଂବାଦୀ-ପୂର୍ବାଙ୍ଗରେ ଗାନ ହୁଏ। ସମୟ ଦିବା ତୃତୀୟ ପ୍ରହର ଶେଷ। ଏହି କାନାଡ଼ାର କେହି କେହି ୧୮ ଓ ୨୦ ପ୍ରକାରରେ ଭେଦ ବତାଇଥାନ୍ତି-ଏହା ଖମ୍ବାଜ ବା ଶ୍ରୀରାଗ ମେଳ।

ଆରୋହ-ସା-ରେ-ଗା-ମା-ପା-ଦା-ନି-ସା।

ଅବରୋହ-ସା-ନି-ଧା ପା ମା ଗା ରେ ସା

ଧରଣ-ମା ପା ନ୍ରି ଧା ନି, ସା ନି ଦା ନି ପା କାପା
ଗାମା ରେସା

## ରାଗ-କୋଳାହଳ

ମେଳାଚ ସଂମ୍ଭବୋ ଧୀରଶଙ୍କରାଭରଣାଚ୍ଚ ବୈ।
କୋଳାହଳାଖ୍ୟରାଗସ୍ତ ସନ୍ୟାସଂ ସାଂଶଗଗ୍ରହମ୍।
ରିବର୍ଜଂ ବକ୍ରମାରୋହେଽପ୍ୟବରୋହେ ସମଗ୍ରକମ୍॥୫୨॥

(ରା-ଳ)

ସ ପ ମ ଗ ନ ପ ଧ ନ ସା। ସ ନ ଧ ପ ମ ଗ ର ସ

ଷଡ୍‌ଜନ୍ୟାସ ଗ୍ରହାକୋଳାହଳାଚ୍ଚକକୁଳୋଦ୍‌ଭବା।
ମଧମାଂ ଶା-ପହୀନା ଚ କଳହେ ଗମକୋତ୍କଟା॥୫୩॥

(ଗୀତପ୍ରକାଶ, ଉତ୍କଳ ଗ୍ରନ୍ଥ)

କେଳାହଳା ଟକ୍କଭାଷା ସଂଗ୍ରହାଂଶ ପ-ବର୍ଜିତା।
ମ ଧ ମନ୍ଦ୍ରାମଭୂୟିଠୋ କଳହେ ଗମକାନ୍ୱି

(ସଂ-ର-ରା-ବି-ଧରୟ ଶ୍ଳୋ ପ୪୭)

ଉତ୍କଳ ପ୍ରଚଳିତ ଅନୁସାରେ-

କୋଳାହଳ ରାଗ ଶୁଦ୍ଧ ସ୍ୱର ମେଳ; ଅର୍ଥାତ୍ ଶଙ୍କରାଭରଣ ବା ବେଲାବଳୀ ବା ନଟ ମେଳରୁ ଉତ୍ପନ୍ନ ହୁଏ।ଏଥିରେ ପା-ବର୍ଜ୍ୟ ହୁଏ; ଜାତି ଷାଡ଼ବ। ବାଦୀ-ମା, ସଂବାଦୀ-ସା, ଉତ୍ତରାଙ୍ଗ ଗାଇବା ସମୟ ଦିବା ପ୍ରଥମ ପ୍ରହର। ରେ-ସ୍ୱରः ଦୁର୍ବଳ କିମ୍ବା ବକ୍ର ହୁଏ ଏବଂ ଶୁଦ୍ଧ-ରେ ପରିବର୍ତ୍ତେ କୋମଳ-ରେ ପ୍ରୟୋଗ କରି ପଞ୍ଚମ ବା ମାରୁଆମେଳରେ ଗାନ କରାଯାଏ।

ଆରୋହ-ସା, ରେ, ଗା, ମା, ଧା, ନି-ସା

ଅବରୋହ-ସା-ନି-ଧା, ମା, ଗା, ରେ-ସା

ଧରଣ-ନି-ସା-ମା-ଗା ମା,ରେ, ସା

ଗା ମା-ଧା-ନି, ସା, ସା, ନି ଧା, ମା, ଗା,

ମା ରେ-ସା

ପଞ୍ଚମ ମେଳ ଅନୁସାରେ

ଆରୋହ-ସ ର ଗ ମା ଧା ନି ସା

ଅବରୋହ-ସ ନ ଧ ମ ଗ ର ସ

ଧରଣ- ନ ସ ମ ଗ ମ ରେ ସ, ଗ ମ ଧ ନ ସା

ସ ନ ଧ ମ ଗ ମ ର ସ

ରାଗ-ଖମ୍ବାଜ

ଖଂମାଜୋ ଯତ୍ର ତୀବ୍ରା ଋଷଭଗଧନୟୋ ମୋମୃଦୁର୍ନିର୍ମୃଦଃସ୍ୟା-
ଦାରୋହେଋିର୍ନିଷିଦ୍ଧଃ ପ୍ରଭବତି ପରିପୂର୍ଣ୍ଣୋଽବରୋହେ ପବକ୍ରଃ।
ବାଦୀ ଗାନ୍ଧାର ଏବ ପ୍ରବିଲସତି ତଥା ସଂପ୍ରବାଦୀ ନିଷାଦେ
ରାତ୍ର୍ୟାଂ ଯାମେ ଦ୍ୱିତୀୟେ ପ୍ରମଦୟତି ମନଃ ଶ୍ରେତୃରପ୍ୟେଷ ରାଗଃ॥ ୭୫ ॥

(କଳ୍ପଦ୍ରୁମାଙ୍କୁରେ)

ମୃଦୁମୋ ନିଦ୍ୱୟୋଽଗାଶୋ ନିସଂବାଦୀ ଖମ୍ମାଜକଃ।
ନାରୋହେ ରିଷଭୋ ଯାମେ ଦ୍ୱିତୀୟେ ନିଶି ଗୀୟତେ॥ ୫୬॥
(ଚନ୍ଦ୍ରିକାୟାମ୍)

ଖମ୍ମାଜ ଶ୍ରୀରାଗ ବା ରାଗ ଖମ୍ମାଜ ମେଳରୁ ଉତ୍ପନ୍ନ ହୁଏ। ଏଥିରେ ନି-ସ୍ୱର କୋମଳ ହୁଏ; ବାକି ସ୍ୱର ସମସ୍ତ ଶୁଦ୍ଧ ଲାଗେ। ବାଦୀ-ଗା, ସଂବାଦୀ ନି-ସ୍ୱର ହୁଏ। ଆରୋହରେ ରି-ସ୍ୱର ବର୍ଜ୍ୟ। ଜାତି ଷାଡ଼ବ ସମ୍ପୂର୍ଣ୍ଣ ରାତ୍ରି ଦ୍ୱିତୀୟ ପ୍ରହରରରେ ହୁଏ। ଆରୋହରେ ତୀବ୍ର ବା ଶୁଦ୍ଧ ନି-ସ୍ୱର ଲାଗେ। ଏହି ରାଗରେ ଗା ମା ପା ନି ବୈଚିତ୍ର୍ୟ କରିଥାଏ ଏବଂ ଏହି ରାଗରେ ତାନ ଓ ଅଳଙ୍କାରାଦି ବହୁପ୍ରକାରରେ ହେବା ଦେଖାଯାଏ। ଏହା ପୂର୍ବାଙ୍ଗ।

ଆରୋହ-ସା-ଗା-ମା- ପା-ଧା- ନି- ସା
ଅବରୋହ-ସା-ନି-ଧା-ପା-ମା-ଗା-ରି- ସା
ଧରଣ-ନ୍ରିଦା, ମାପା, ଧା, ମାଗା।

## ରାଗ-ଖରହରପ୍ରିୟା

ଅଧିକାରାଦ୍ ଖରହରପ୍ରିୟାଛ୍ରୀରାଗ ଲକ୍ଷ୍ୟତେ।
ସ ନ୍ୟାସ ସାଂଶଳ ଚୈବ ସଷଡ୍‌ଜଗ୍ରହମୁଚ୍ୟତ୍ୟତେ।
ଆରୋହେ ଗ-ଧ ବାର୍ଜ୍ୟଂ ଚ ପୂର୍ଣ୍ଣବକ୍ରାବରୋହକମ୍॥ ୫୭॥
ସା ରି ମା ପ ନି ସା ନି ପ ଧ ନି ପ ମ ରି ଗା ରି ସା।
(ସଂ. ଚୂ.)

ଖରହରପ୍ରିୟା ରାଗ ଖରହରପ୍ରିୟା ବା କାଫି ବା ଧନାଶ୍ରୀ ମେଳରୁ ଉତ୍ପନ୍ନ ହୁଏ। ଏଥିରେ-
ଚତୁଃଶ୍ରୁତିତ-ରି ବା ଶୁଦ୍ଧ-ରି ସାଧାରଣ-ଗା ବା କୋମଳ-ଗା
ଚତୁଃଶ୍ରୁତି-ଧା ବା ଶୁଦ୍ଧ-ଧା କୈଶିକୀ-ନି ବା କୋମଳ-ନ
ବାକି ସା-ମା-ପା ଶୁଦ୍ଧ ସ୍ୱର ଲାଗେ। ଏହା ଔଡ଼ବ ବକ୍ର ସମ୍ପୂର୍ଣ୍ଣ ରାଗ। ସା-ବାଦୀ, ମା-ସଂବାଦୀ। ଗାଇବା ସମୟରେ ସର୍ବକାଳୀନ-ପୂର୍ବାଙ୍ଗରାଗ।
ଆରୋହ-ସା-ରି-ମା- ପା- ଧା- ସା
ଅବରୋହ-ସା ନି-ପା-ଧା-ନି-ପା-ମା-ରି- ଗା-ରି-ସା
ଧରଣ-ଆରୋହ ଅବରୋହ ଅନୁସାରେ

## ରାଗ-ଗୁର୍ଜରୀ

ରିନ୍ୟାଶ୍ଚ ରିମୟୋଶ୍ଚୈବ ସଂଗତା ନିଗ୍ରହାଂଶିକା।
ଷଡ୍‌ଜାନ୍ତା ଗୁର୍ଜରୀ ପୂର୍ଣ୍ଣା ଭାଷା ମାଳବକୈଶିକେ॥ ୫୮ ॥
(ସଂ. ର.)

ମାୟାମାଳବମେଳାଚ ଗୁର୍ଜରୀ ନାମକୋ ଭବେତ୍।
ସ ନ୍ୟାସ ସାଂଶକଂ ଚୈବ ଷଡ୍‌ଜଗ୍ରହମୁଚ୍ୟତେ।
ଆରୋହେ ଚୈବ ସମ୍ପୂର୍ଣ୍ଣଂ ବକ୍ରପୂର୍ଣ୍ଣାବରୋହକମ୍॥ ୫୯ ॥
ସ ରି ଗ ମ ପ ଧ ନି ସା ସ ନି ଧ ନି ପ ମ କ ରି ସ- ଅଥବା
ସ ଡ଼ ନି ପ କ ଗ ରି ସା। ସ ଧ ସ ନି ଧ ପ କ ଗ ରି ସା।(ରା. ଲ.)

ଗୁର୍ଜରୀ ମାଳବୋତ୍ପନ୍ନାଽବରୋହେ ମନିମର୍ଜିତା ।
ଗଶ୍ଲିଷ୍ଟମଧମୋପେତା ଧୈବତ ଶ୍ଲିଷ୍ଟସସ୍ୱରା ।
ଗାନ୍ଧାରମୂର୍ଚ୍ଛନୋପେତା ଦାକ୍ଷିଣାତ୍ୟା ପ୍ରକୀର୍ତ୍ତିତା ।। ୬୦ ।।

(ସଂ. ପା.ଶ୍ଲୋ ୪୧୫)

ତୋଡିମେଳ ସମୁତ୍ପନ୍ନା ଗୁର୍ଜରୀ କୀର୍ତ୍ୟତେ ବୁଧୈଃ ।
ଆରୋହେ ଚାବରୋ ହେଽପିନିତ୍ୟଂ ସ୍ୟାତ୍ପବିବର୍ଜିତା ।। ୬୧ ।।
ଧୈବତ ସମ୍ମତୋ ବାଦୀ ରିର୍ମୌବାମନ୍ତ୍ରୀ ସଂନିଭଃ ।
ଗାନଂ ସୁନିଶ୍ଚିତଂ ତସ୍ୟା ଦ୍ୱିତୀୟପ୍ରହରେଽହନି ।। ୬୨ ।।
ମଧପରବିଚିତ୍ରାଽସୌ ମନ୍ୟତେ ଗାୟନୈଃ କ୍ୱଚିତ୍ ।
ମତେ ତେଷାଂ ପୁନସ୍ତୋଡିମନ୍ଦ୍ରମଧପ୍ରଚାରିଣୀ ।। ୬୩ ।।
ଗ୍ରନ୍ଥେଷୁ ଗୁର୍ଜରୀ ପ୍ରୋକ୍ତା ସୃଷ୍ଟା ଭୈରବମେଳନେ ।
ରିତ୍ରିକାପେନ ହୀନାସାଽଥବା ପୂର୍ଣ୍ଣପ୍ରଭାତଗା ।। ୬୪ ।।
ଅଦ୍ୟାପି ଗୀୟତେ ଚାସୌ ସମ୍ପୂର୍ଣ୍ଣା କୁତ୍ରଚିଜ୍ଜନୈଃ ।
ତୋଡିମେଳସମୁତ୍ପନ୍ନା ନ ତଲ୍ଲକ୍ଷେତ୍ର ସଂମତମ୍ ।। ୬୫ ।।

(ଲ. ସଂ.)

ଗୁର୍ଜରୀରି ଗ୍ରହାଂଶାନ୍ତାକାତା ପଞ୍ଚମ ଷାଡ଼ବାତ୍ ।
କ୍ୱଚିନ୍ମାଂଶାଚ ସମ୍ପୂର୍ଣ୍ଣା ଗେୟା ଶୃଙ୍ଗାରବୀରୟୋଃ ।। ୬୬ ।।

(ସଂ. ମୁକ୍ତାବଳୀ)

ଏହି ଗୁର୍ଜରୀ ରାଗକୁ ମଧ ଦକ୍ଷିଣ ଗୁର୍ଜରୀ କହନ୍ତି । ଏହି ରାଗ ପ୍ରଚଳନ ଅନୁସାରେ ମତ ବିଶେଷରେ ଏହା ମାଳବ ଗୌଡା ବା ଭୈରବ ବା ଗୌରୀ ମେଳରୁ ହୁଏ । ଆରୋହ ସମ୍ପୂର୍ଣ୍ଣ,

**ଅବରୋହ ବକ୍ର ସମ୍ପୂର୍ଣ୍ଣ-ସା-ବାଦୀ-, ମା-ସଂବା, ଜାତି ସମ୍ପୂର୍ଣ୍ଣ। ବକ୍ର ସମ୍ପୂର୍ଣ୍ଣ ଉତ୍ତରାଙ୍ଗ-ବୀର ଓ ଶୃଙ୍ଗାର ରସର ରାଗ ସମୟ ପ୍ରାତଃକାଳ।**

ପ୍ରଥମ ପ୍ରକାର-

ଆରୋହ-ସ ରି ଗ ମ ପ ଧ ନି ସ

ଅବରୋହ-ସ ନି ଧ ପ ମ ଗ ରି ସ, ଅଥବା ସ ନ ଧ ନ ପ ମ ଗ ଣି ସ।

ଧରଣ-ଆରୋହ ଅବରୋହ ଅନୁସାରେ

ଦ୍ୱିତୀୟ ପ୍ରକାର-ଶ୍ଲୋକ ବରାଡ଼ି ବା ତୋଡ଼ି ମେଳରୁ ଉତ୍ପନ୍ନ ହୁଏ। ଜାତି ଷାଡବ। ଏଥିରେ ପ ବର୍ଜିତ ହୁଏ। ଧା ବାଦୀ ଗା-ସଂବାଦୀ।

ଉତ୍ତରାଙ୍ଗ ଦିବା ଦ୍ୱିତୀୟ ପ୍ରହରରେ ଗାନ ହୁଏ।

ଆରୋହ-ନି ସା ରି ଗା ମା ଧା ନି ସା

ଅବରୋହ-ସ ନି ଧା ମ ଗା ରି ଗା ଗା। ରି ସ

ଧରଣ- ନି ସା, ରି କ ମା ଧା ମ ଗ ନ ଧା ମଗା ରି ଗାରି ସା

ତୃତୀୟ ପ୍ରକାର-ସଂଗୀତ ପାରିଜାତ ଅନୁସାରେ ଏହା ମାଳବ ବା ତୋଡ଼ି ଶୋକ ବରାଡ଼ି ମେଳରୁ ଉତ୍ପନ୍ନ ହୁଏ। ଏଥିରେ ରି ଗ ଧ ସ୍ୱର କୋମଳ ହୁଏ। ମ ତୀବ୍ର ହୁଏ। ନ ସ୍ୱର ଶୁଦ୍ଧ ହୁଏ। ଆରୋହ ସମ୍ପୂର୍ଣ୍ଣ। ଅବରୋହରେ ମ-ନ ସ୍ୱର ବର୍ଜିତ ହୋଇ ଔଡବ ହୁଏ। ଧା ବାଦୀ, ଗା ସଂବାଦୀ ହୁଏ।

ଆରୋହ-ସ ରି ଗ ମ ପ ଧ ରି ସ

ଅବରୋହ-ନ ସ ରି ଗ ମ ପ ଧ ପ ସଧ ପ କା ରି ଗ ରି ସ

## ରାଗ-ଗୌଡ (ଗୌଣ୍ଡ)

ତୀବ୍ରଗାନ୍ଧାରସଂଯୁକ୍ତ ଆରୋହେ ବର୍ଜିତୌ ଗନୀ।
ଷଡ୍‌କୋଦ୍‌ଗ୍ରାହେଣ ସମ୍ପନ୍ନେ ଗୌଣ୍ଡ ଆମ୍ରେଡ଼ିତସ୍ୱରୈଃ ।। ୬୭ ।।
(ସଂ. ପା.-ଶ୍ଳୋକ ୪୫୬)

ଗୌଡ଼ରାଗକୁ ସଂଗୀତ ପାରିଜାତରେ ଗୌଣ୍ଡରାଗ ବୋଲି କୁହାଯାଇଅଛି। ଏହା ଶ୍ରୀରାଗ ବା ଖମ୍ବାଜ ବା କାମ୍ବୋଜି ମେଳରୁ ଉତ୍ପନ୍ନ ହୁଏ। ଆରେହାରେ ଗ-ନି ସ୍ୱର ବର୍ଜିତ ହୁଏ। ଜାତି ଔଡବ ସମ୍ପୂର୍ଣ୍ଣ। ରେ-ବାଦୀ, ପା ସଂବାଦୀ ସ୍ୱର ହୁଏ। ସର୍ବଦା ଗାନ ହୁଏ। ପୂର୍ବାଙ୍ଗପ୍ରଧାନ୍ୟ ରାଗ-ଏହା ଆମ୍ରେଡିତ ବା ପୁନଃପୁନଃ ଉଚ୍ଚାରିତ ହୁଏ।

ଆରୋହ-ସ ରି ମ ପ ଧ ସ

ଅବରୋହ-ସ ନ ଧ ପ ମ ଗ ରି ସ

ଧରଣ-ସ ରି ମପ ନଧା ପା, ରିପ ମଗରିସ

## ରାଗ-ଗୌଳ

ଗୌଳସ୍ତୁ ଗଧବର୍ଜଃ ସ୍ୟାଦ୍ ଗୌରୀମେଳସମୁଦ୍‌ଭବଃ।
(ସଂ. ପା.-ଶ୍ଳୋ ୪୧୯)

ଗୌଳ ରାଗ ଗୌରୀ ମେଳରୁ ଉତ୍ପନ୍ନ ହୁଏ। ଏଥିରେ-ଗା-ଦା- ସ୍ୱର ବର୍ଜିତ ହୁଏ। ଜାତି ଔଡ଼ବ ପୂର୍ବାଙ୍ଗ ରାଗ,

ସା ବାଦୀ, ମା-ସଂବାଦୀ। ଗାଇବା ସମୟ ଦିବା ତୃତୀୟ ପ୍ରହର।
ଆରୋହ-ସ ରି ମ ପ ନ ସ
ଅବରୋହ-ସ ନ ପ ମ ରି ସ
ଧରଣ- ସ ରି ମ ପ ମ ରି ସ

### ରାଗ-ଗୌରୀ

ରି-ସ୍ୱରାଦି ସ୍ୱରାରମ୍ଭା ରି-କୋମଳ ଧ-କୋମଳା।
ଗ-ତୀବ୍ର ସା-ନି-ତୀବ୍ରା ଚ ଗୌରୀ ନ୍ୟଶଂ ସ୍ୱରା ମତା।। ୬୮ ।।
(ସଂ. ପା ଶ୍ଳୋ ୩୬୬)

ଆରୋହେ ଗ-ଧ-ହୀନା ସା-ନି-କମ୍ପନ-ମନୋହରା।
ଆରୋହେ ଯଦି ଗାନ୍ଧାରୋ ମଧମାବଧି ମୂର୍ଚ୍ଛନା।। ୬୯ ।।
(ସଂ. ପା. ଶ୍ଳୋ ୩୬୭)

ମାଳବଗୌଡକେ ମେଳେ ଗୌରୀ ଶାସ୍ତ୍ରେଷୁ ବର୍ଣ୍ଣିତା।
ଆରୋହେ ଧ-ଗ-ହୀନା ସାବରୋହେ ଚ ସମଗ୍ରିକା।। ୭୦ ।।
ଋଷଭଃ ସ୍ୟାତ୍ ସ୍ୱରୋ ବାଦୀ ସଂବାଦୀ ପଞ୍ଚମୋ ଭବେତ୍।
ଗାନଂ ସୁନିଶ୍ଚିତଂ ତସ୍ୟାଶ୍ଚତୁର୍ଥପ୍ରହରୋ ଦିନେ।। ୭୧ ।।
ଆଦିଶନ୍ତି ପୁନଃ କେଚିଦତ୍ର ତୀବ୍ରମଯୋଜନମ୍।
ସାୟଂ ଗେୟେ ସ୍ୱରୂପେଽସ୍ମିନ୍ ଭାତି ମେ ନ ସଂଗତମ୍।। ୭୨ ।।
କଳିଂ ଗାଂ ଗା ମତା ଗୌରୀ ପୂରୀୟାଂ ଗା ତଥୈବ ଚ।
ମତଂ ତ୍ରିଦଂ ପ୍ରସିଦ୍ଧଂ ସ୍ୟାତ୍ ସର୍ବତ୍ର ଲକ୍ଷ୍ୟବର୍ତ୍ମନି।। ୭୩।।
ମନ୍ଦ୍ରସ୍ଥସ୍ୟ ନିଷାଦସ୍ୟ ବୈଚିତ୍ର୍ୟମଦ୍ଭୁତଂ ମତମ୍।
ଶ୍ରୀତାରଃ ପ୍ରାୟଶସ୍ତାଶ୍ଚ କୁର୍ବନ୍ତି ରାଗନିର୍ଣ୍ଣୟମ୍।। ୭୪ ।।
(ଶ୍ରୀ ମଲ୍ଲକ୍ଷ୍ୟସଂଗୀତେ-୨ୟ ପୃ ୧୨୦-୧୨୧)

ମାୟା ମାଳବ ଗୌଳାଖ୍ୟମେଳାଜ୍ଜାତଃ ସୁନାମକଃ ।
ଗୌରୀରାଗ ଇତି ପ୍ରୋକ୍ତଃ ସ ନ୍ୟାସଂ ସାଂଶକଗ୍ରହମ୍ ।
ଆରୋହେ ଗଧବର୍ଜଂ ଚାପ୍ୟବରୋହେ ସମଗ୍ରକମ୍ ।। ୭୫ ।।
ସ ରି ମ ପ ନ ସା । ସ ନ ଧ ପ ମ ଗ ରି ସ ।

(ରା. ଲ.)

ଗୌରୀ ରାଗରେ ରି-ଧା-ସ୍ୱର କୋମଳ ହୁଏ ବାକି ସ୍ୱରସବୁ ଶୁଦ୍ଧ ଲାଗେ ।
ଆରୋହରେ ଗା-ଧା-ସ୍ୱର ବର୍ଜିତ ହୁଏ । ଅବରୋହ ସମ୍ପୂର୍ଣ୍ଣ ଜାତି ।

ଔଡବ ସମ୍ପୂର୍ଣ୍ଣ,ରି-ବାଦୀ ପା-ସଂବାଦୀ, ସନ୍ଧ୍ୟା-ସମୟରେ ଗାନ ହୁଏ । କେହି କେହି ତୀବ୍ର-ମା-ସ୍ୱର କ୍ୱଚିତ୍ ପ୍ରୟୋଗ କରନ୍ତି ଅର୍ଥାତ୍ ଦୁଇ ମା ସ୍ୱର ଲଗାଇଥାନ୍ତି । ଏଥିରେ ନି-ସ୍ୱରର କମ୍ପନ ଅତି ମନୋହର ହୁଏ । ଏହା ପୂର୍ବାଙ୍ଗ ପ୍ରଧାନ । ଏହା ଗୋଟିଏ ମେଳ ଅଟେ ।

ଆରୋହ- ସ ରି ମା ପା ନ ସା
ଅବରୋହ-ସା ନି ଧା ପା ମା ଗା ରି ସା

ଅଥବା-ମା ରି ଗା ରି ସା । ନି ସା ଦା ପା ମ ପା ନି ସା ଧ ନ ସା-ରି ମା ଗା, ରିପା ମା ଗା ରି ସା ନ ସା ।

ଧରଣ-ଆରୋହ ଅବରୋହ ଅନୁସାରେ ।

## ରାଗ-ଗୁଣ୍ଡକିରୀ (ଗୁଣକ୍ରୀ)

ଷଡ୍‌ଜନ୍ୟାସ ଗ୍ରହାଂଶୈଷା ଗୋଣ୍ଡାକ୍ରିମପରିଗତା ।
ରିଧହୀନା ଦିନାଦୌ ଚ ଗାଅବ୍ୟେଷ୍ଟରସେ ବୁଧୈଃ ।। ୭୬ ।।
ଗୀତପ୍ରକାଶ-ଉତ୍କଳ)

ଗୁଣ୍ଡକିରୀ ରାଗରେ ସମସ୍ତ ସ୍ୱର ଶୁଦ୍ଧ ହୁଏ । ଏଥିରେ-ରି-ଧ ସ୍ୱର ବର୍ଜିତ । ଜାତି ଔଡବ । ଔଡବ ବାଦୀ ସା-ସଂବାଦୀ ପା ସ୍ୱର ହୁଏ । ଉତ୍ତରାଙ୍ଗ ଦିବସର ପ୍ରଥମ ପ୍ରହରରେ ଗାନ ହୁଏ । ଏହା ନଟ ବା ଶଙ୍କରାଭରଣ ବା ବେଲାବଳୀ ମେଳରୁ ଜାତ ହୁଏ ।

ଆରୋହ-ସା ଗା ମା ପା ନି ସା
ଅବରୋହ-ସା ନି ପା ମା ଗା ସା
ଧରଣ-ନ ସା-ମା ଗା ପା ମା ଗା ଗା ସା

ରିଧ କୋମଳ ସଂଯୁକ୍ତା ଗ-ନିବର୍ଜା ଗୁଣକ୍ରିୟା ।
ଧୈବତୋଦ୍-ଗ୍ରାହସଂଯୁକ୍ତା କ୍ୱଚିଦ୍ ଗାନ୍ଧାରସଂଯୁତା ।। ୭୭ ।।
(ସଂ. ପା. ଶ୍ଳୋ ୪୦୪)

ଦ୍ୱିତୀୟ ପ୍ରକାର

ଗୁଣକରୀ ତ୍ରିୟଂ ମନ୍ଦ୍ର ମଧ୍ୟମା
ଗନିବିବର୍ଜିତା ଭୈରବାଂଗିନୀ ।
ଋଷଭ-ଧୈବତୌ ମନ୍ତ୍ରିବାଦିନୌ ।
ସଦସି ଗୀୟତେ ପ୍ରାତରୌଡ଼ବା ।। ୭୮ ।।

(ରାଗ କଳ୍ପଦ୍ରୁମାଙ୍କୁରେ)

**ଏ ରାଗରେ ରେ ଧା କୋମଳ ହୁଏ। ଗ ନି ବର୍ଜିତ ଓ ଓଡ଼ବ ଔଡ଼ବ ଜାତି। ବାଦୀ-ଧା, ସଂବାଦୀ-ରି। ଏହା ବିଳମ୍ବିତ ଲୟରେ ଉତ୍କୃଷ୍ଟ ହୁଏ। ଶାନ୍ତ ଗମ୍ଭୀର ପ୍ରକୃତିକୁ ଜାତ କରେ। ସମୟ ସକାଳ ପ୍ରଥମ ପ୍ରହର। କେହି କେହି କୋମଳ ନି ଅଳ୍ପ ଲଗାଇଥାନ୍ତି। ଏହା ଗୌରୀ ବା ମାୟାମାଳଗୌଡ଼ା ବା ଭୈରବମେଳରୁ ଜାତ ହୁଏ।**

ଆରୋହ- ସା ରି ମା ପା ଦା ସା

ଅବରୋହ- ସା ଧ୍ରା ପା ମା ଋି ସା

ଧରଣ-ସା-ସା-ରି, ରି ସ ଧା ସା ରି ସା ମ ପା ମ
ରି ସ ସା ସା ଧା ପା ମା ପା ମ ରି ସ।

ତୃତୀୟ ପ୍ରକାର (ଗୁଣ୍ଡକ୍ରିୟା)

ମାୟାମାଳବ ମେଳାଚ୍ଚ ଜାତା ଗୁଣ୍ଡକ୍ରିୟା ତଥା।
ସ ନ୍ୟାସଂ ସାଂଶକଂ ଚୈବ ସ ଷଡ୍‌ଜଗ୍ରହମୁଚ୍ୟତେ।
ଆରୋହେ ଗଧ ବର୍ଜ୍ୟ ଚାପ୍ୟବରୋହେ ପବର୍ଜିତମ୍॥ ୭୯॥
ସ ରି ମ ପ ନ ସା। ନି ଧ ମ କ ରି ସ(ରାଗଲକ୍ଷଣମ୍)

ଏହା ମାଳବଗୌଡ ବା ଗୌରୀ ଭୈରବ ମେଳରୁ ଜାତ। ଏଥିରେ ରି-ଧା-ସ୍ୱର କୋମଳ ହୁଏ ସା-ବାଦୀ, ମା-ସଂବାଦୀ ସ୍ୱର ହୁଏ। ଜାତି ଔଡ଼ବ ଷାଡ଼ବ ଆରୋହରେ ପା-ବର୍ଜିତ ହୁଏ। ଗାନ-ସମୟ ପ୍ରାତଃକାଳ।

ଆରୋହ-ସ ରି ମା ପା ନି ସ
ଅବରୋହ-ସ ନି ଧ ମ ଗ ରି ସା।
ଧରଣ- ସମ ଗ ରି ସ ନ ସ।

### ରାଗ - (ଘଣ୍ଟାରବ)

**ଘଣ୍ଟାରାଗୋ ଗପୂର୍ବଃ ସ୍ୟାନ୍ୟତଃ କୋମଳ ଧୈବତଃ।**
**(ସଂ. ପା. ଶ୍ଳୋ ୩୮୯୨)**

**ଘଣ୍ଟାରାଗୋ ଧଗ୍ରହାଂଶୋ ମନ୍ଦ୍ର ଗାନ୍ଧାରମେଦୁରଃ।**
ନିତାରୋ ଭିନ୍ନଷଡ୍‌ଜାଙ୍ଗ ମଧମନ୍ୟାସମଣ୍ଡିତଃ ।। ୮୦ ।।
(ଶୈବ ସଂଗୀତ)

ଘଣ୍ଟାରବ ରାଗରେ ଗ-ଧ-ନି-ସ୍ୱର କୋମଳ, ବାକି ସ୍ୱର ଶୁଦ୍ଧ ହୁଏ। ଏହା କର୍ଣ୍ଣାଟ ବା ଆଶାବରୀ ମେଳରୁ ଉତ୍ପନ୍ନ ହୁଏ। କା-ବାଦୀ, ଧ-ସଂବାଦୀ, ଜାତି ସଂପୂର୍ଣ୍ଣ ଉତ୍ତରାଙ୍ଗ, ସମୟ ପ୍ରାତଃକାଳ।

ଆରୋହ-ସ ରି ଗା ପା ଧ ନ ସ
ଅବରୋହ-ସ ନ ଧ ପ ମ ପ, ଧ ପ ଗ୍ର ମ ପ ଗ ରି ସ
ଧରଣ-ନ ସ ଗ ମ ପ ଧ ପ ଗ ମ ପ ଗ ରି ସ

### ରାଗ-ଜୌନପୁରୀତୋଡ଼ୀ (ଜୌନପରୀ)

**ପ୍ରଖ୍ୟାତା ଜୌନପୁରୀ ମୃଦୁଗଧମ ନି-କାରୋରେ ଗେନ ହୀନା।**
**ସମ୍ପୂର୍ଣ୍ଣା ଚାବରୋହେ ନିୟତମଭିହିତୋ ଧୈବତଷ୍ଟାତ୍ର ବାଦୀ**

**ଗାନ୍ଧାରଃ ସ୍ୟାଦମାତ୍ୟଃ ପ୍ରକଟୟତି ସଦାଽଶାବରୀ ତୁଲ୍ୟରୂପମ୍**
**ଗାନଂ ଚାସ୍ୟା ଦ୍ୱିତୀୟ ପ୍ରହରସମୁଚିତଂ ପ୍ରାହୁଣ ଏବୋପଦିଷ୍ଟମ୍ ।। ୮୧ ।।**

**(ରାଗକଳ୍ପଦ୍ରୁମାଙ୍କୁରେ)**

**କୋମଳା ଗମଧନୟୋ ଯସ୍ୟାଂ ସୈବ ଧବାଦିନୀ ।**
**ଗ ସଂବାଦିନ୍ୟଭିମତା ଜୌନପୁରୀ ଚ ସଂଗବେ ।। ୮୨ ।।**

**ରାଗଚନ୍ଦ୍ରିକାୟାମ୍**

**କର୍ଣ୍ଣାଟ ବା ଆଶାବରୀ ମେଳରୁ ଜୌନପୁରୀ** ରାଗ ଜନ୍ମ ହୁଏ । ଜୌନପୁରୀ ତୋଡ଼ୀ ରାଗକୁ ଜୌପୁରୀ କହନ୍ତି । ଏଥିରେ ଗା-ଧା-ନି- କୋମଳ ହୁଏ; ଶୁଦ୍ଧ ନି ପ୍ରୟୋଗ ହୁଏ । ଆରୋହଣରେ - ଗା- ବର୍ଜିତ । ଅବରୋହଣରେ ସମ୍ପୂର୍ଣ୍ଣ ସ୍ୱର ଲାଗେ । ଜାତି ଷାଡ଼ବ ସମ୍ପୂର୍ଣ୍ଣ, ବାଦୀ ଧା ଓ ସମ୍ବାଦୀଗା- ସ୍ୱର ହୁଏ । ଗାଇବା ସମୟ ଦିବା ଦ୍ୱିତୀୟ ପ୍ରହର । ଉତ୍ତରାଙ୍ଗ ପ୍ରଧାନ ରାଗ । କେହି କେହି କୋମଳ ଗଷଭସ୍ୱର ପ୍ରୟୋଗ କରି ଅନ୍ୟ ମେଳରେ ଦ୍ରୁତଲୟ ଓ ତାଳରେ ଗାଇଥାନ୍ତି; ମାତ୍ର ବିଳମ୍ବିତ ଲୟ ତାଳରେ ଗାନ ହେଲେ ଶୁଦ୍ଧ-ରି-ସ୍ୱର ବ୍ୟବହୃତ ହୋଇଥାଏ ।

ଆରୋହ-ସା-ରି-ମା-ପା ଧା ନି ସା
ଆରୋହ-ସା ନି ଦା ପା ମା ଗା ରି ସା
ଧରଣ-ମା ପା ନ ଧା ପା, ଧା ମ ପ ଗ ରି ମ ପ

ରାଗ- ଜୟନ୍ତ = (ଜୟଶ୍ରୀ)

କୋମଳାଖେୟୌ ରିଧୌ ଯତ୍ର ଗନି ଚ ତୀବ୍ରସଂଜ୍ଞିତୌ ।
ମନ୍ତୀବ୍ରତର ସଂଜ୍ଞଃ ସ୍ୟାଜ୍ଜୟଶ୍ରୀନାମକେ ପୁନଃ ।। ୮୩ ।।

ଆରୋହଣେ ରିଧୌ ନ୍ୟସ୍ତୌ ନିସ୍ୱରୋଦ୍‌ଗ୍ରାହ ମଣ୍ଡିତେ।
(ସଂ ପା ଶ୍ଲୋ- ୪୬୫)
କାମବର୍ଦ୍ଧନିକା ମେଳେ କେତାଶ୍ରୀ କୀର୍ତ୍ୟତେ ସଦା ॥ ୮୪ ॥
ଆରୋହେ ରିଧବର୍ଜଂ ସ୍ୟାଦବରୋହେ ସମଗ୍ରକମ୍।
ଗାଂଧାରାଂଶା ତଥା ସାଚା ସାୟଂକାଲୋଚିତା ମତା ॥ ୮୫ ॥
କୈଶ୍ଚିଦ୍ ସୈବୋଦିତା ପ୍ରାତର୍ନୈବଂ ଭାତି ସୁସଙ୍ଗତମ୍।
ଅନ୍ୟୈତାଂ ତୀବ୍ର ଧା ମଦ୍ୱା ମାରବା ମେଳନେ ଜଗୁଃ।
ଅପସାର୍ଯ୍ୟ ମତାନ୍ୟାନ୍ୟାନ୍ୟୁପଯୁକ୍ତୈବ ସ୍ୱୀକୃତା ॥ ୮୬ ॥

ଏହି ରାଗ ସଙ୍ଗୀତପାରିଜାତରେ ଜୟଶ୍ରୀରୂପେ ଗୃହୀତ ଏହା ଉତ୍କଳରେ ଜୟନ୍ତ ନାମରେ କଥିତ। ଲକ୍ଷ୍ୟ ସଙ୍ଗୀତ ମତରେ ଜେତାଶ୍ରୀ କହନ୍ତି। ଏହା ଓଡ଼ବ ସମ୍ପୂର୍ଣ୍ଣ ଆରୋହରେ ରି-ଧା ବର୍ଜ୍ୟ। ଏଥିରେ- ରି- ଧା- କୋମଳ, ଗାନି ତୀବ୍ର ବା ଶୁଦ୍ଧ- ମ ତୀବ୍ର ବା କଡ଼ି ହୁଏ। ବାଦୀ ପା ସଂବାଦୀ ସା ହୁଏ, ଅଥବା -ଗା- ବାଦୀନି ସମ୍ବାଦୀ ରଖି କେହି କେହି ଗାଇଥାନ୍ତି। ପୂର୍ବାଙ୍ଗ ସୂର୍ଯ୍ୟାସ୍ତ ସମୟରେ ଗାନ ହୁଏ। ଏହା ପୂର୍ବୀ ମେଳରୁ ଉତ୍ପନ୍ନ ହୁଏ। କେହି କେହି ଶୁଦ୍ଧ-ଧା-କୋମଳ- ଧା ପରିବର୍ତ୍ତେ ମାରୁଆ ମେଳରେ ଓଡ଼ବରେ ଜେତ ନାମରେ ଗାଇଥାନ୍ତି। ତହିଁରେ ସା- ବାଦୀ ମା-ନି ବର୍ଜନ।

ଆରୋହ-ନି ସା ଗା ପା ମାଧା ପା ନି ସା
ଅବରୋହ-ସା ନି ଧା ପା ପାମା ଧା ମା ଗା ମା ଗା ରି ସା
ଧରଣ-ନ ସା ଗା ପା ମା ଧା ପା ମା ଧା ମ ଗା ମାଗାରି ସା

୨ୟ ପ୍ରକାର

ଆରୋହ-ସା, ରିସା, ଗାପା, ପା ପାଧାଗା, ପା ସା

ଅବରୋହ-ସା ପା ଧାଗା, ରିଗା, ପାଧା ପାଗା, ରି ସା।

ଧରଣ-ସା-ଗାପା, ମା, ରି ସା, ଗା, ପାଗ, ରି ଗା,

ପା ଧା ଗା, ପାଗା,ରିସ।

ଧୈବତସ୍ୱର ଅବରୋହରେ ଦୁର୍ବଳପରି ଲାଗେ।

ଜୈତଶ୍ରୀରିହବର୍ଣ୍ଣିତା ଗମନୟଷ୍ଟୀବ୍ର ମୃଦୁଧର୍ଷଭା-

ବରୋହେ ରିଧବର୍ଜିତା ପୁନରିୟଂ ପୂର୍ଣ୍ଣାବରୋହେ ମତା।

ଗାନ୍ଧାରସ୍ୟ ନିଷାଦକସ୍ୟ ଚ ସଦା ସଂବାଦ ସଂଭୂଷିତା।

ଗୀତାଳାପ-ବିଚାର ଚାରୁମତିଭିଃ ସାୟଂ ମୁଦା ଗୀୟତେ।। ୮୭।।

(ରାଗକଳ୍ପଦ୍ରୁମାଙ୍କୁରେ)

ପୂର୍ବୀମେଳେ ସମୁତ୍ପନ୍ନା ପ୍ରାରୋହେ ରିଧ ବର୍ଜିତା।

ଗାନ୍ଧାରାଂଶ ସାୟମିୟଂ ଜୈତଶ୍ରୀ ଗାୟତେ ବୁଧୈଃ।। ୮୮ ।।

(ଚନ୍ଦ୍ରିକାୟାମ୍)

ରାଗ-ଜୟଜୟନ୍ତୀ (ଜୟ ଜୟ)

ପ୍ରୋକ୍ତେୟଂ ଜୟଜୟନ୍ତିକା ତୁ ପୂର୍ଣ୍ଣା

ଗୌନୀ ଦ୍ୱାବପି ମୃଦୁ ମୋ ରିଧୌ ଚ ତୀବ୍ରୌ।

ବାଦୀରିର୍ବିଳସତି ପଞ୍ଚମୋ ହି ମନ୍ତ୍ରୀ

ସୋରଟ୍ୟଂ ଗତ ଇହ ଗୀୟତେ ନିଶାୟାମ୍।। ୮୯ ।।

(କଳ୍ପଦ୍ରୁମାଙ୍କୁରେ)

ଦ୍ୱିନିଷାଦା ଦ୍ୱିଗାନ୍ଧାରାପ୍ୟଂଶା ସନ୍ୟାଦୀ ପଞ୍ଚମା ।
ସୋରଟ୍ୟଂ ଗତ ଏବୈଷା ନିଶି କୈଜୟବନ୍ତିକା ।। ୯୦ ।।
(ଚନ୍ଦ୍ରିକାୟାମ୍)

ଜୟଜୟନ୍ତୀ ରାଗ ଖମ୍ବାଜ ବା ଶ୍ରୀରାଗ ମେଳରୁ ଉତ୍ପନ୍ନ ହୁଏ। ଏହା ସମ୍ପୂର୍ଣ୍ଣ ଜାତି; ବାଦୀ-ରି ସଂବାଦୀ ପା ସ୍ୱର ହୁଏ ଗାଇବା ସମୟ ରାତ୍ରି ଦ୍ୱିତୀୟ ପ୍ରହର। ଏଥିରେ ଦୁଇ ଗାନ୍ଧାର ଓ ଦୁଇ ନିଷାଦ ଲାଗେ। ମ-ଟି ମୃଦୁ ଓ ରି ଧ ତୀବ୍ର। ଆରୋହରେ ଶୁଦ୍ଧ ବା ତୀବ୍ର-ଗ-ନି ଓ ଅବରୋହରେ କୋମଳ-ଗ ଓ ନି ସ୍ୱର ଲଗାଯାଏ ଏବଂ ତୀବ୍ର ଗ ମଧ୍ୟ ଅବରୋହରେ ବ୍ୟବହାର ହୁଏ ଏହା ସୁରାଟ ରାଗର ଅଙ୍ଗ ଏବଂ ମିଶ୍ର ରାଗ ଏଥିରେ ଗୌଡ଼ ବିଲାବଳି ସୁରଟ ଏହିତିନି ରାଗର ମିଳନ ଦେଖାଯାଏ। ଏହା ସଂକୀର୍ଣ୍ଣ ଓ ପୂର୍ବାଙ୍ଗ ପରମେଳ ପ୍ରବେଶ ରାଗ।

ଆରୋହ- ସା-ରି-ରି-ଗ ରି ସ,
ନି ଧା ପା ରି ଗା ମା ପା ନି, ସା

ଅବରୋହ- ସା-ନି ଧା ପା, ଧା ମ, ରି ଗ ରି ସା

ଧରଣ- ରି ଗା ରି ସା ନି ଧା ପା ରି,
ଗ ମ ପ, ମ, ରି ଗ ରି ନ ସ

### ରାଗ- ଜଙ୍ଗଲା

ଜଙ୍ଗଲା ରାଗ ସାଲଗ ଅଟେ। ଏହା ପିଲୁ ଓ ଝିଂଝୋଟି ରାଗ ମିଶ୍ରଣରେ ଉତ୍ପନ୍ନ ହୁଏ। ଏହା ସର୍ବକାଳୀନ ଗାନ ହୁଏ।

ଏଥିରେ ବାଦୀ-ରି, ସମ୍ବାଦୀ-ପା ସ୍ୱର ହୁଏ। ପୂର୍ବାଙ୍ଗ ପ୍ରଧାନ, ସରଳସ୍ୱରୂପ, ଜାତି ସମ୍ପୂର୍ଣ୍ଣ।

ଆରୋହ ଓ ଅବରୋହ-ସା ନି ଧା ପା ଧା ସା ରି ଗା ରି

ରି ଗା-ମା ପ, ଗ ମ ପା, ଗ ରି,

ରି, ରି ଗା, ସାରି ନ ସା।

ଧରଣ- ଆରେହ ଅବରୋହ ଅନୁସାରେ।

## ରାଗ- ଜୟନ୍ତକଳା (ଜୈତକଲ୍ୟାଣ)

ସଗୌ ପଗୌ ପଧ ପଗା ରିସୌ ପଗୌ ପଧୌ ଚ ଗଃ।
ଜୟଦ୍‌କଲ୍ୟାଣକଃ ପାଂଶୋ ଗେୟୋ ରାତ୍ରି ମୁଖେ ବୁଧୈଃ ।। ୯୧ ।।
(ଅଭିନବ ରାଗମଞ୍ଜରୀ)

ଜୟତ୍‌କଲ୍ୟାଣ ରାଗ କଲ୍ୟାଣ ମେଳରୁ ଉତ୍ପନ୍ନ ହୁଏ। ଏଥିରେ ମା ଓ ନି ସ୍ୱର ବର୍ଜିତ ହୁଏ। ବାକି ସ୍ୱର ଶୁଦ୍ଧ ଲାଗେ। ଜାତି ଔଡ଼ବ- ଔଡ଼ବବାଦୀ-ପା, ସଂବାଦୀ-ସା-ସ୍ୱର ହୁଏ; ସମୟ ରାତ୍ର ପ୍ରଥମ ପ୍ରହର, ପୂର୍ବାଙ୍ଗ; ଆରୋହରେ ˙ଗାପା ଓ ଅବରୋହରେ ଧା- ଗା ସ୍ୱର-ସଙ୍ଗତିଯୋଗୁ ଅତିରକ୍ତି ଦାୟକ ହୁଏ।

ଆରୋହ- ସା-ରେ -ଗା ପା ଧା ସା।

ଅବରୋହ- ସା ପା ଧା ପା ଗାପା ଧାପା ଗା, ରି, ସା।

ଧରଣ-ସା-ଗା- ପାଗା ପାଧା ପାଗା ରିସା ପାଗା ପାଧା

## ରାଗ-ଝୀଝୋଟ

ଝୀଝୁଟୀତ୍ୟେବ ରାଗଃ ସକଳଜନମତଃ କୋମଳାଭ୍ୟାଂ ମନିଭ୍ୟା-
ମନ୍ୟେ ତୀବ୍ରାଃ ପ୍ରଯୁକ୍ତା କ୍ୱଚିଦପି ମୃଦୁଗସ୍ତୀବ୍ର ନିଶ୍ଚାପି ଗେୟଃ ।
ବାଦୀ ଗାନ୍ଧାର ଉକ୍ତଃ ଶ୍ରୁତି ରୁଚିରତରୋ ଧୈବତଃ ସଂପ୍ରବାଦୀ
ପ୍ରାରୋହେଽନ୍ତୌ ନିଗୌ ସ୍ତୋ ନିଶି ମଧୁରଗଣୈର୍ମନ୍ଦମଧ୍ୟାଭି ଗୀତଃ ॥ ୯୨ ॥
(ରାଗକଳ୍ପଦ୍ରୁମାଙ୍କୁରେ)

ଝୀଝୋଟୀ ରାଗ ଖମ୍ବାଜ ବା ଶ୍ରୀରାଗ ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ । ସଂପୂର୍ଣ୍ଣ ଗାନ୍ଧାର ବାଦୀ, ଧୈବତ ସମ୍ବାଦୀ । ଗାଇବା ସମୟ ରାତ୍ରି ଦ୍ୱିତୀୟ ପ୍ରହର । ଏହା ଗୋଟିଏ କ୍ଷୁଦ୍ରରାଗ । ଏହାର ବିସ୍ତାର ବିଶେଷରେ ମନ୍ଦ୍ର ଓ ମଧ ସପ୍ତକରେ ହୁଏ । ଧ ସା ରେ ମାଗା ଏହି ସ୍ୱର ବିନ୍ୟାସହେତୁ ଏହା ରାଗବାଚକ ହୁଏ । ଏହା ପୂର୍ବାଙ୍ଗ ରାଗ ।

ଆରୋହ-ସା ରି ଗା ମା ପା ଧା ନି ସା
ଅବରୋହ-ସା ନି ଧା ପା ମା ଗା ରି ସା
ଧରଣ-ଧସା ରିମା ଗା ପାମାଗାରି ସାନି । ଧାପା

## ରାଗ-ଢୁକସର (ଢକ୍କ)

ରିଧୌ ତୁ କୋମଳୌ ଜ୍ଞେୟାବାଭିରୀ ମୂର୍ଚ୍ଛନାୟୁତେ ।
ଆରୋହ ଚ ଧବର୍ଜଦ୍ୱଂ ରାଗେ ଢକ୍କାଭିଧାନକେ ॥ ୯୩ ॥
(ସଂ.ପା.ଶ୍ଳୋ.-୪୩୨)

ଢକ୍କ ରାଗରେ ରେ-ଧା ଓ -ଗା-ନି ସ୍ୱର କୋମଳ ହୁଏ । ଆରୋହରେ ଧୈବତ ବର୍ଜିତ ହୁଏ । ଅବରୋହ ସମ୍ପୂର୍ଣ୍ଣ

ଜାତି। ଏହା ଷାଡ଼ବ ସମ୍ପୂର୍ଣ୍ଣ ପୂର୍ଣ୍ଣାଙ୍ଗ ରାଗ; ଗାଇବା ସମୟ ଦିବା ତୃତୀୟ ପ୍ରହର ଶେଷରେ ହୁଏ। ଏଥିରେ ଗାନ୍ଧାର ସ୍ୱର ସବୁ ସ୍ଥାନରେ କମ୍ପନ ହୁଏ। ଗା-ବାଦୀ, ନି-ସଂବାଦୀ ହୁଏ। ଏହା ଭୈରବୀମେଳରୁ ଉତ୍ପନ୍ନ ହୁଏ।

ଆରୋହ-ସାରି ଗା ମା ପା ନି ସା

ଅବରୋହ-ସା ନି ଧା ପା-ମା ଧା ପା-ମା ଗା ରି ସା

ଧରଣ-ସା ରି ଗା ଗ ମା ପା ନି ଧା ଗା ପା ଗା ଗା ରି ସା

## ରାଗ-ତୋଡ଼ି

ଷଡ୍ଜପୂର୍ବା ତୁ ତୋଡ଼ୀ ସ୍ୟାତ୍ ଯତ୍ରୋକ୍ତୌ କୋମଳ ରିଧୌ।
ନନ୍ୟାସଃସ୍ୟାଦ୍ଧୈବତସ୍ତସ୍ୟାଂ ଗାଂନ୍ଧାରାଂଶେ ଶୋଭିତା ।। ୯୪ ।।
ମେନାରୋହ ତୁ ପନ୍ୟାସା ପଞ୍ଚମେ ନୋଭୟୋରପି।
(ସଂ.ପା.ଶ୍ଳୋକ ୩୮୬)
ମଶ୍ଚ ତୀବ୍ରତମୋଽପ୍ୟୁକ୍ତୋ ମୃଦୁ ପ ଇତି ପଣ୍ଡିତୈଃ ।। ୯୫ ।।
ବରାଟି ତୋଡ଼ିକାମେଳୋ ଯୋ ଗ୍ରନ୍ଥେଷୁ ନିରୂପିତଃ।
ସମାଦୃତଃ ସ ଏବାତ୍ର ତୋଡ଼ୀତି ଲକ୍ଷ୍ୟବେଦିଭିଃ ।। ୯୬ ।।
ଅସ୍ମାନ୍ମେଳାସମୁତ୍ପନ୍ନା ରାଗିଣୀ ତୋଡ଼ିକାହ୍ୱୟା।
ଆରୋହେ ଚାବରୋହେ ଚ ସଂପୂର୍ଣ୍ଣା ଲୋକବିଶ୍ରୁତା ।। ୯୭ ।।
ଧୈବତଃ ସଂମତୋ ବାଦୀ ଗାନ୍ଧାରୋ ମନ୍ତ୍ରିତୁଲ୍ୟକଃ।
ଗାନମସ୍ୟାଃ ସମୀଚୀନଂ ଦ୍ୱିତୀୟ ପ୍ରହରେଽହନି ।। ୯୮ ।।
ସଂଗତିର୍ଧଗୟୋରତ୍ର ଭବେଦ୍ରକ୍ତି ପ୍ରଦାୟିନୀ।
ଆରୋହେ ସ୍ୟାଦ୍ବିପାଽତ୍ୱଂ ବୈଚିତ୍ର୍ୟମବରୋହେଣେ ।। ୯୯ ।।

ପ୍ରାତଃକାଳୋଚିତଂ ନୈବ ତୀବ୍ରମସ୍ୟ ପ୍ରୟୋଜନମ୍ ।
ଲୋକେ ପ୍ରତୀୟମାନତ୍ୱାଦ୍ ସ୍ୱୀକୃତମପପାଦକମ୍ ॥ ୧୦୦ ॥
ଗ୍ରନ୍ଥୋକ୍ତତୋଡ଼ିମେଳୋଽସୌ ଲକ୍ଷ୍ୟେ ଭୈରବୀନାମକଃ ।
ଇତି ମୟା ପୁରୈବୋକ୍ତଂ ଲାଚାରୀ ଚ ବାହାଦୁରୀ ।
ହୋସେନୀ ନାମିକୋ ତୋଡ଼ୀ ବିଲାସଖାନିକା ତଥା ॥ ॥୧୦୧ ॥
ଏବଂ ବହୁବିଧାସ୍ତୋଡ଼ି ରାଗାନ୍ତରବିମିଶ୍ରିତାଃ ।
ପ୍ରସିଦ୍ଧଂ ଚ ସମାନୀତା ଲୋକେ ଯବନଗାୟକୈଃ ॥ ୧୦୨ ॥

(ଲା.ସଂ.)

ତୋଡ଼ୀରାଗରେ ରି-ଧା-ଗା ସ୍ୱର କୋମଳ ହୁଏ ଏବଂ କୋମଳ ନି ଓ ଶୁଦ୍ଧ ନି ଉଭୟ ବ୍ୟବହାର ହୁଏ। ମ-ସ୍ୱର ତୀବ୍ର ବା କଡ଼ା ହୁଏ। ଜାତି ସମ୍ପୂର୍ଣ୍ଣ। ସମ୍ପୂର୍ଣ୍ଣ -ଧ-ସ୍ୱର ବାଦୀ, ଗ-ସ୍ୱର ସଂବାଦୀ ହୁଏ। କେହି କେହି ପଣ୍ଡିତ ବିପରୀତଭାବେ ଗା ବାଦୀ, ଧା ସଂବାଦୀ କରିଥାନ୍ତି ଓ ମ ସ୍ୱରକୁ ଗ୍ରହ-ଅଂଶ ମାନିଥାନ୍ତି; ମାତ୍ର ବର୍ତ୍ତମାନ ତାହାର ପ୍ରଚଳନ ନାହିଁ। ସମୟ ଦିବା ପ୍ରଥମ ପ୍ରହର ଶେଷ ଦ୍ୱିତୀୟ ପ୍ରହର ଉତ୍ତରାଂଗ। ଏହା ଶୋକ ବରାଡ଼ି ବା ତୋଡ଼ି ମେଳରୁ ଉତ୍ପନ୍ନ ହୁଏ। ତୋଡ଼ି ବହୁ ପ୍ରକାର ରାଗାନ୍ତର ମିଶ୍ରଣରେ ହୋଇଥାଏ।

ଆରୋହ-ସ ରି ଗ ମ ପ ଧ ନି ସ।
ଅବରୋହ-ସ ନି ଧ ପ ମ ଗ ରି ସ।
ଧରଣ-ଧ ନ ସ-ରି ଗ ରି ସ, ମପ, ଧ, ମଗ, ରି ଗ ରି ସ।

ଦ୍ୱିତୀୟ ପ୍ରକାରରେ ମ କଡ଼ି ତୀବ୍ର ନ ଶୁଦ୍ଧ ବା ତୀବ୍ର ହୁଏ ନାହିଁ। ମ ଶୁଦ୍ଧ-ନି କୋମଳ ହୁଏ। ପ୍ରଥମ ପ୍ରକାର ଅନୁସାରେ ଆରୋହ-ଅବରୋହ ବାଦୀ-ସଂବାଦୀ ଓ ସମୟ ଇତ୍ୟାଦି ହୁଏ; ମାତ୍ର ଆରୋହରେ ନି ଓ ଅବରୋହରେ ମ ସ୍ୱର ଦୁର୍ବଳ ହୁଏ। ଏହା ଭୈରବୀ ମେଳରୁ ଉତ୍ପନ୍ନ ହୁଏ।

ଆରୋହ-ସ ରି ଗ ମ, ପ ଧ ନି ସ
ଅବରୋହ-ସ ନି ଧ ପ ମ ଗ ର ସ
ଧରଣ-ନସ, ରିସ, ଧନିସ, ଗ, ରିଗ ମଗ ରିଗ ରିସ

## ରାଗ-ତୋଡ଼ିପରଜ

ତୋଡ଼ି ପରଜ ରାଗ ତୋଡ଼ି ଓ ପରଜ ଏହି ଦୁଇ ରାଗର ସଂମିଶ୍ରଣରେ ତୋଡ଼ି ବା ଶୋକବରାଡ଼ି ମେଳରୁ ଉତ୍ପନ୍ନ ହୁଏ। ଏହି ଦୁଇଗୋଟି ରାଗର ଲକ୍ଷଣ ଏହି ଗ୍ରନ୍ଥରେ ପୃଥକ୍ ପୃଥକ୍ ଲେଖାଯାଇଅଛି। ଜାତି ସମ୍ପୂର୍ଣ୍ଣ, ସମ୍ପୂର୍ଣ୍ଣ-ପା-ସ୍ୱର ଦୁର୍ବଳ ହୁଏ। ଏହାର ଗ-ବାଦୀ, ଧ-ସଂବାଦୀ ହୁଏ ଏବଂ ପରଜ ରାଗର ପରା-ସ-ସ୍ୱରର ବୈଚିତ୍ର୍ୟ ଯେପରି ହୁଏ ସେହପରି ହୁଏ। ସମୟ ଦିବା ଦ୍ୱିତୀୟ ପ୍ରହର ସ ସାୟଂକାଳ।

ଆରୋହ-ସ ରି ଗ ମ ପ ଧ ନି ସ
ଅବରୋହ-ସ ନି ଧ ପ ମ ଗ ର ସ
ଧରଣ-ସ ନି ସ ରି ଗ ରି ସ, ମ ଧ ନି ସ
ସ ନି ଧ ପ, ମ ପ ଧ ପ ମ ଗ ର ଗ ରି ସ

## ରାଗ-ଦ୍ରାବିଡ଼

ଗାନ୍ଧାରେତି (ନି ?) ରିପୋପେତଃ ପ୍ରସ୍ତୁରଦ୍ ଷଡ଼ଜପଞ୍ଚମ ।
ଗେୟୋ ଦ୍ରାବିଡ଼ଗୌଡ଼ୀୟଂ ଗ୍ରହାଂଶନ୍ୟାସ ସପ୍ତମଃ ।। ୧୦୩ ।।
(ସଂ.ର.ରା.ଧାୟ-ଶ୍ଳୋ ୧୬୦)

ନିଷାଦଂଶ ଗ୍ରହନ୍ୟାସ ଷଡ୍ଜ ପଞ୍ଚମସଂକୁଳଃ ।
ଗେୟୋ ଦ୍ରାବିଡ଼ଗୌଡ଼ୋଽୟଂ ବୀରଶୃଙ୍ଗାରୟୋର୍ନିଶି ।। ୧୦୪ ।।
(ଗୀତପ୍ରକାଶ-ଉତ୍କଳ)

ଦ୍ରାବିଡ଼ ରାଗର ଶାସ୍ତ୍ରୀୟ ନାମ ଦ୍ରାବିଡ଼-ଗୌଡ଼ । ଏହା ଶ୍ରୀରାଗ ବା ଖମ୍ମାଜ ବା କାମ୍ଭୋଜି ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ-ସମ୍ପୂର୍ଣ୍ଣ । ଏହାର ଗା ବାଦୀ, ନି ସଂବାଦୀ । ଆରୋହରେ ଶୁଦ୍ଧ ନ-ବ୍ୟବହାରେ ମନୋହର ହୁଏ ଓ ସା.ପା.ସଂଯୋଗ ଓ ସଙ୍ଗତିରେ ଅତି ରକ୍ତିଦାୟକ ହୁଏ । ଏହା ବୀର ଓ ଶୃଙ୍ଗାର ରସ । ସମୟ ମଧ୍ୟରାତ୍ର, ପୂର୍ବାଙ୍ଗପ୍ରଧାନ ।

ଆରୋହ-ସା ରେ ଗ ମ ପଧ ନଧ ସ ।
ଅବରୋହ-ସ ନି ଧ ପ ମ ଗ ରେ ସ ।
ଧରଣ-ନ ସ ଗର ଗମପ, ଗମପଧ, ନଧ, ସ, ସ ନି ଧପ,
ମ ପ ସ ନ ଧ ପ ମ ଗ ।

## ରାଗ-ଦେଶାଖ୍ୟ

ରି-ତୀବ୍ରତର ସଂଯୁକ୍ତୋ ଗ-ତୀବ୍ରେଣାପି ସଂଯୁତଃ ।
ଧ-ଗ-ବର୍ଜୋଽବରୋହେ ସ୍ୟାଦ୍ ଗାନ୍ଧାରସ୍ୱରମୂର୍ଚ୍ଛନଃ ।
ତୀବ୍ରୋ ଯତ୍ର ନିଷାଦସ୍ୟାଦ୍ଦେଶାଖ୍ୟଃ ସବିରାଜତେ ।। ୧୦୫ ।।
(ସଂ.ପା. ଶ୍ଳୋ ୫୭୧)

**ହରପ୍ରିୟାମେଳସମୁଦ୍‌ଭବୋୟଂ**
**ଦେଶାଖ୍ୟରାଗଧଗଦୁର୍ବଳଂ ସ୍ୟାତ୍‌।**
**ବାଦ୍ୟତ୍ର ଷଡ୍‌ଜଃ ସହଚାରିମଧ୍ୟମଃ**
**ସାରଂଗଭଂଗ୍ୟା କୁତୁପେଽଭିଗୀୟତେ ।। ୧୦୬ ।।**

**(ରାଗକଳ୍ପଦ୍ରୁମାଙ୍କୁରେ)**

ଦେଶାଖ୍ୟ ରାଗରେ ଗ-ନି- କୋମଳ ଓ ଆଉ ଅନ୍ୟ ସ୍ୱରସବୁ ଶୁଦ୍ଧ ହୁଏ। ଏଥିରେ ଧା-ସ୍ୱର ବର୍ଜ୍ୟ ଓ ଗାନ୍ଧାର ଦୁର୍ବଳ ମାନନ୍ତି। କେହି କେହି ଧୈବତକୁ ମଧ୍ୟ ଦୁର୍ବଳ ମାନିଥାନ୍ତି। ଏହାର ବାଦୀ ପଞ୍ଚମ ବା ପା-ସଂବାଦୀ-ସା-ସ୍ୱର ହୁଏ ପୂର୍ବାଙ୍ଗ। ଏଥିରେ କେହି କେହି ଶୁଦ୍ଧ-ଗା, ଶୁଦ୍ଧ-ନି ଅଳ୍ପ ପ୍ରୟୋଗ କରିଥାନ୍ତି। 'ପାରିଜାତ' ଅନୁସାରେ ଗାନ୍ଧାର-ମୂର୍ଚ୍ଛନା ମ-ସ୍ୱର ତୀବ୍ର, ବାକି ସବୁ ସ୍ୱର ଶୁଦ୍ଧ ହୁଏ। ଜାତି ସଂପୂର୍ଣ୍ଣ ଓଡ଼ବ। ଏହା ପ୍ରାତଃକାଳେ ଗୀତ ହୁଏ।

ପ୍ରଥମ ପ୍ରକାର କଲ୍ୟାଣମେଳ :
ଆରୋହ-ସା ରେ ଗା ମା ପ ଧା ନି ସା
ଅବରୋହ-ସା ନି ପା ମା ରେ ସା
ଧରଣ-ନି ସା ମ ରେ ପା ମା ନି ପା ସା
ସା ନି ପା ଧା ମା ଗା ମା ରେ ସା।

ଦ୍ୱିତୀୟ ପ୍ରକାର ଧନାଶ୍ରୀମେଳ:
ଆରୋହ-ନି ସା ମ ରେ ପା ମା ନି ପା ସା
ଅବରୋହ-ସା ନି ପା ମାପା ଗାମା ରେସା
ଧରଣ-ସାସାମାରେସା, ନିସାମାମା ପା ନି ପାଗାମାରେସା ସାନିସ

## ରାଗ-ଦେଶମହ୍ଲାର ବା ଦେଶ

ରାଗୋ ଦେଶଃ ପଞ୍ଚମାଂଶୋର୍ଯମାତ୍ୟଃ
ସମ୍ପୂର୍ଣୋଽୟଂ ସୋରଟୀତୁଲ୍ୟ ଏବ।
କିଂଚିଦ୍ଭେଦାଚ୍ଚାବରୋହେ ରିବକ୍ରୋ
ରାତ୍ରୌ ଯାମାଦୁତ୍ତରଂ ଗୀୟତେଽସୌ ॥ ୧୦୭ ॥

(ରାଗକଳ୍ପଦ୍ରୁମାଙ୍କୁରେ)

ପାଂଶୋ ଋଷଭ ସମ୍ବାଦୀ ସୋରଟୀ ତୁଲ୍ୟରୂପକଃ।
ରିବକ୍ରୋ ଦେଶରାଗସ୍ତୁ ଦ୍ୱିତୀୟପ୍ରହରେ ନିଶି ॥ ୧୦୮ ॥

(ରାଗ ଚନ୍ଦ୍ରିକାୟାମ୍)

ଦେଶମହ୍ଲାର ରାଗ ଖମ୍ବାଜ ବା ଶ୍ରୀରାଗମେଳରୁ ଉତ୍ପନ୍ନ ହୁଏ। ଜାତି ଓଡ଼ବ ସମ୍ପୂର୍ଣ। ଏହାର ସ୍ୱରୂପ ସୁରଟ ତୁଲ୍ୟ। ଅବରୋହରେ ଗାନ୍ଧାର ସ୍ୱର ପ୍ରୟୋଗହେତୁ ସୁରଟ ରାଗରୁ ପୃଥକ୍ ଜଣାଯାଏ। ବାଦୀସ୍ୱର ପଞ୍ଚମ ଏବଂ ସଂବାଦୀ ଋଷଭ ହୁଏ। କେହି କେହି ଓଲଟା ପ୍ରକାର ମାନିଥାନ୍ତି ଅର୍ଥାତ୍ ରେ-ବାଦୀ, ପା-ସଂବାଦୀ। ସମୟ ରାତ୍ରି ଦ୍ୱିତୀୟ ପ୍ରହର; ପୂର୍ବାଙ୍ଗ।

ଆରୋହ-ସା ରେ ମା ପା ନି ସା
ଅବରୋହ-ସା ନି ଧା ପା ମା ଗା ରେ ଗା-ସା
ଧରଣ-ରେ, ମା ପା ନି ଧାପା, ପାଧା ପାମା, ଗାରେଗାସା

## ରାଗ-ଧନାଶ୍ରୀ

ଆରୋହେ ରି-ଧହୀନା ସ୍ୟାତ୍ ପୂର୍ଣଶୁଦ୍ଧସ୍ୱରୈର୍ଯୁତା।
ଗାନ୍ଧାର ସ୍ୱରପୂର୍ବାସ୍ୟାଦ୍ଧନାଶ୍ରୀର୍ମଧ୍ୟମାନ୍ତକା ॥୧୦୯ ॥

(ସଂ.ପା.ଶ୍ଳୋକ ୩୫୮)

ସ୍ୱରାସ୍ତୁ ମୃଦବୋଽଖିଳା ଋଷଭ ଧୌ-ଚ-ନାରୋହଣେଽ
ବରୋହସମୟେ ଭବେୟୁରଥ ଯତ୍ର ସର୍ବେଽପି ଚ।

ସମୂଲ୍ଲସତି ପଞ୍ଚମୋଂଽଶ ଇହ ଷଡ୍ଜସଂବାଦିନ୍ୟ-
ପରାହ୍ଣସମୟେଷୁ ନିଗ୍ରହଯୁତା ଧନାଶ୍ରୀ ମତା ।। ୧୧୦ ।।
(ରାଗ କଳ୍ପଦ୍ରୁମାଙ୍କୁରେ)

ହନୁମତ୍ତୋଡ଼ିମେଳାଚ୍ଚ ଜାତୋ ଧନ୍ୟାସିନାମକଃ ।
ସ ନ୍ୟାସଂ ସାଂଶକଂ ଚୈବ ସଷଡ୍‌ଜଗ୍ରହମୁଚ୍ୟତେ ।
ଆରୋହ ରିଧ ବର୍ଜଂ ଚାପ୍ୟବରୋହେ ସମଗ୍ରକମ୍ ।। ୧୧୧ ।।
ସ ଗ ମ ପ ନି ସା । ସ ନି ଧ ପ ମା ଗ ରି ସ ।।
(ରାଗଲକ୍ଷଣ)

ଧନାଶ୍ରୀ ରାଗରେ ଗା-ନି-ସ୍ୱର କୋମଳ ଓ ବାକି ସ୍ୱର ଶୁଦ୍ଧ ହୁଏ। ଏଥିରେ ଆରୋହରେ ରି-ଧା-ସ୍ୱର ବର୍ଜିତ ହୁଏ। ଅବରୋହ ସମ୍ପୂର୍ଣ୍ଣ ଜାତି, ଓଡ଼ବ ସମ୍ପୂର୍ଣ୍ଣ, ଷଡ୍‌ଜ ପଞ୍ଚମ ଏବଂ କ୍ୱଚିତ୍ ମଧ୍ୟମର ପ୍ରାବଲ୍ୟ ଦେଖାଯାଏ। ପା-ଗା ସଙ୍ଗତି ହୁଏ। ପା-ବାଦୀ, ମା-ସଂବାଦୀ। ଦିବା ତୃତୀୟ ପ୍ରହରରେ ଗାନ ହୁଏ। ପୂର୍ବାଙ୍ଗପ୍ରଧାନ। ଅନ୍ୟପ୍ରକାରେ ରେ, ଗା, ଧା, ନି କୋମଳ ରଖି ବାକି ସ୍ୱର ଶୁଦ୍ଧ କରି ଉପରୋକ୍ତ ବାଦୀ-ସଂବାଦୀ ସଙ୍ଗତି ରଖି ଗାନ ମଧ୍ୟ ହୁଏ।

ପ୍ରଥମ ପ୍ରକାର:

ଆରୋହ-ନ ସା ଗା ମା ପା, ନି ସା

ଧନାଶ୍ରୀମେଳ ଅବରୋହ-ସା ନି ଧା ପା, ଗା ମା ପା
ଗା,
ମା ଗା ରି ସା

ଧରଣ-ନ ସା ଗା ମାପ ପା; ଧା ପା ନି ଧା ପା;
ଗା ପା ଗା ରି ସା।

ପରନ୍ତୁ ଭୈରବୀମେଳରେ ଦ୍ୱିତୀୟ ପ୍ରକାରः

ଆରୋହ-ନ ସା ଗା ମା ପା ନି ସା ।

ଅବରୋହ-ସା ନି ଧା ପା ମା ପା ଗା ରେ ସା ।

ଧରଣ-ନି ଚ ଗା ମା ପା, ନି ସାନି ଧା ପା ମା ଗା
ପା ଗା ରେ ସା ।

## ରାଗ-ନାଟ କୁରଙ୍ଗୀ (ନାଟ କୁରଞ୍ଜୀ)

ପୂର୍ଣ୍ଣୋ ନାଟକୁରଂଙ୍ଗ୍ୟାଖ୍ୟଃ କାମ୍ବୋଜୀ ମେଳକୋଦ୍ଭବଃ ।
ସନ୍ୟାସାଂଶଗ୍ରହଃ ସାୟଂ ଗେୟଃ ସଙ୍ଗୀତ-କୋବିଦୈଃ ।। ୧୧୨ ।।
(ସାରାମୃତ)

ହରିକାମ୍ବୋଜୀମେଳାଚ ସଂଜାତଶ୍ଚ ସୁନାମକଃ ।
ତଥା ନାଟ କୁରଞ୍ଜୀ ଚ ସ ନ୍ୟାସଂ ସାଂଶକଗ୍ରହମ୍ ।
ରିପତ୍ୟକ୍ତଂ ବକ୍ରମର୍ଦ୍ଧେପସର୍ଦ୍ଧେ ଚ ପବର୍ଜିତମ୍ ।।୧୧୩।।
ସ ଗ ମ ନି ଧ ନିସା ସ ନି ଧ ମ ଗ ରି ସ ।।(ରାଗଲକ୍ଷଣ)

କାମ୍ବୋଜୀ ମେଳକେଽପ୍ୟନ୍ୟେ ଦୂର୍ଗାସ୍ୟା ଲକ୍ଷ୍ୟବର୍ତ୍ମନି ।
ଔଡ଼ବାରିପହୀନାଽସୌ ଗାନ୍ଧରାଂଶେନ ଭୂଷିତା ।। ୧୧୪ ।।
ଈଷତ୍‌ସ୍ୱର୍ଶୋ ରିସ୍ୱରେ ଚେତ୍ ଗ୍ରହୋକ୍ତା ରାଗିଣୀ ଭବେତ୍ ।
ନାଟ କୁରଂଜିକାନାମ୍ନୀ ଗାନ୍ଧାରାଂଶମନୋହରା ।। ୧୧୫ ।।
(ଲ.ସଂ-ପ୍ରଥମ ପ୍ରକାଶ)

ଶ୍ରୀରାଗ ବା କାମ୍ବୋଜୀମେଳରୁ ନାଟକୁରଙ୍ଗୀ ବା ନାଟକୁରଂଜୀ ରାଗ ଉତ୍ପନ୍ନ ହୁଏ । ଜାତି ଔଡ଼ବ ରି-ପା-ବର୍ଜ୍ୟ ସ୍ୱର । କଦାଚିତ୍-ରି ଈଷତ୍ ସ୍ପର୍ଶ କରାଯାଏ । ସାୟଂକାଳେ ଗାନ ହୁଏ । ସମ୍ପୂର୍ଣ୍ଣ ରାଗ-ନି-କୋମଳ; ବାକି ସ୍ୱରସମସ୍ତ ଶୁଦ୍ଧ । ଗା-ବାଦୀ; ଧା-ସମ୍ବାଦୀ ।

ଆରୋହ-ସ-ଗା-ମା-ଧା-ନି-ସା
ଅବରୋହ-ସ ନି ଧା ମା ଗା ସା
ଧରଣ-ସା-ଗା-ମା- ନି ଧା ମା ଗା ମା ଗା ମା ଗା ସା

## ରାଗ-ନଟ (ନାଟ)

ରିଷ୍ଟୁ ତୀବ୍ରତରୋ ଯସ୍ମିନ୍ ଗାନ୍ଧାରସ୍ତୀବ୍ରସଂଜ୍ଞକଃ ।
ଧଷ୍ଟୁ ତୀବ୍ରତରଃ ପ୍ରୋକ୍ତୋ ନିଷାଦସ୍ତୀବ୍ରନାମକଃ ।
ଅବରୋହେ ଧଗୌ ନଷ୍ଟୋ ନାଟେ ରି-ସ୍ୱର ମୂର୍ଚ୍ଛନା ॥ ୧୧୬ ॥
(ସଂ.ପା. ଶ୍ଳୋକ-୪୩୩)

ପ୍ରଖ୍ୟାତୋ ନଟରାଗ ଏବ ବିଲସତ୍ତୀବ୍ରସ୍ୱରୈର୍ମୈଡରୈ-
ରାରୋହେ ପରିପୂର୍ଣ୍ଣତାଽସ୍ୟ ଧଗୟୋସ୍ତ୍ୟାଗୋଽବରୋହେ ମତଃ ।
ବାଦୀ ଦିବ୍ୟତି ମଧମୋ ଲସତି ସଂବାଦୀ ତୁ ଷଡ୍ଜସ୍ୱରୋ
ଧାମଦ୍ଭିଃ ପ୍ରହରାତ୍ପରଂ ସୁମଧୁରଂ ରାତ୍ରାବସୌ ଗାୟତେ ॥ ୧୧୮ ॥
(ରାଗ କଳ୍ପଦ୍ରୁମାଙ୍କୁରେ)

ନଟରାଗ ନଟ ବା ବେଲାବଲୀ ବା ଶଙ୍କରାଭରଣମେଳରୁ ଉତ୍ପନ୍ନ ହୁଏ । ଅବରୋହରେ ଧ-ଗ-ସ୍ୱର ବର୍ଜିତ ହୁଏ । ଜାତି ସମ୍ପୂର୍ଣ୍ଣ ଓଡ଼ବ । ବାଦୀ-ମା ଓ ସଂବାଦୀ ସା-ସ୍ୱର ହୁଏ । ଗାଇବାସମୟ ରାତ୍ରି ଦ୍ୱିତୀୟ ପ୍ରହର ପୂର୍ବାଙ୍ଗ-ରାଗ ।

ଆରୋହ-ସା ରି ଗା ମା ପା ଧା ନି ସା ।
ଅବରୋହ-ସା ନି ଧା ନି ପା ମା ଗା ମା ରେ ସା ।
ଧରଣ-ସା ଗା ମା ପା ଗା ମା ରି ଗା ମା ପା ମା ଗା
ମା ରେ ସା ।

## ରାଗ-ନଳନୀଗୌଡ଼ା
### (ଶାସ୍ତ୍ରୀୟ-ନାମନାରାୟଣ ଗୌଳ)

ହରିକାମ୍ବୋଜୀମେଳାଶ୍ଚ ସଂଜାତଶ୍ଚ ସୁନାମକଃ।
ସ ନାରୟଣଗୌଳାଖ୍ୟୋ ନିନ୍ୟାସଂ ନ୍ୟଂଶକଗ୍ରହମ୍।
ଗବର୍ଜ୍ଜଂ ବକ୍ରମାରୋହେଽପ୍ୟବରୋହେ ସମଗ୍ରକମ୍॥ ୧୧୯॥
ସ ରି ମ ପ ନ ଧ ନି ସ-ସ ନି ଧ ପ ମ ଗ ରି ସ॥

(ରାଗ-ଲକ୍ଷଣ)

ନଳିନୀ-ଗୌଡ଼ା ରାଗରେ ନି-ସ୍ୱର କୋମଳ ହୁଏ ବାକି ସ୍ୱର-ସମସ୍ତ ଶୁଦ୍ଧ ଲାଗେ। ଏହା କାମ୍ବୋଜୀ ବା ଶ୍ରୀରାଗମେଳରୁ ଉତ୍ପନ୍ନ ହୁଏ। ଆରୋହରେ ଗା-ସ୍ୱର ବର୍ଜ୍ଜିତ ହୁଏ। ଅବରୋହ ସମ୍ପୂର୍ଣ୍ଣ ଜାତି ଷାଡ଼ବ ସମ୍ପୂର୍ଣ୍ଣ। ଏଥିରେ ନି-ବାଦୀ ଓ ମା-ସମ୍ବାଦୀ। ଗାଇବା ସମୟ ସାୟଂକାଳ, -ପୂର୍ବାଙ୍ଗ।

ଆରୋହ-ସା ରେ ମା ପା ନି ଧା ନି ସା
ଅବରୋହ-ମା ନି ଧା ପା ମା ଗା ରେ ସା
ଧରଣ-ସା ରେ ମା ରେ ମା ପା ନି ଧା ନି ସା ନି
ଧ ପା ମା ପା ମା ଗା ସା ରେ ପା ମା ଗା ରେ ଗା ସା

## ରାଗ-ପଞ୍ଚମ

ପଞ୍ଚମୋ ରିପହୀନଃ ସ୍ୟାଦ୍ ତୀବ୍ରଗଃ ସାଦିମଃ ସ୍ମୃତଃ।
ମଧମ ନ୍ୟାସସଂଯୁକ୍ତୋ ମଧମାଂଶେନା ଶୋଭିତଃ॥ ୧୧୯॥
(ସଂ.ପା. ଶ୍ଲୋକ ୩୬୯)

**ମାରବାମେଳକେ ଜାତଃ ପଞ୍ଚମୋ ଲୋକବିଶ୍ରୁତଃ ।**
**ସମ୍ପୂର୍ଣ୍ଣୋ ମଧ୍ୟମାଂଶୋଽପି ନନ୍ତଂ ଯାମେତିମେ ସ୍ମୃତଃ ॥ ୧୨୦ ॥**
**ଉତ୍ତରାଙ୍ଗପ୍ରଧାନୋଽୟଂ ଦ୍ୱିମଧ୍ୟମବିଭୂଷିତଃ ।**
**ପରଜାନନ୍ତରଂ ଗୀତୋ ହ୍ୟବଶ୍ୟଂ ରଂଜୟେନ୍ମନଃ ॥ ୧୨୧ ॥**
**(ଲ.ସଂ)**

ପଞ୍ଚମ ରାଗ ପଞ୍ଚମ ବା ମାରୁଆରମେଳରୁ ଉତ୍ପନ୍ନ ହୁଏ । ଜାତି ଔଡ଼ବ ଷାଡ଼ବ ।

ଆରୋହରେ ରି-ପା, ଅବରୋହରେ ପା-ବର୍ଜିତ ହୁଏ । ରେ-କୋମଳ ଅଚ୍ଚ ଲାଗେ ।

ସା-ବାଦୀ, ମା-ସମ୍ବାଦୀ । ଉତ୍ତରାଙ୍ଗ-ରାତ୍ରି ଶେଷପ୍ରହରରେ ଗୀତ ହୁଏ ।

ପ୍ରଥମ ପ୍ରକାର ପଞ୍ଚମ ବା ମାରୁଆମେଳ:
ଆରୋହ-ସା, ଗା ମା-ଦା-ସା
ଅବରୋହ-ସା, ନିଧା, ମାଧାମାଗ, ମାଗା, ରିସା
ସାମା, ମା, ମାଗା, ମାଧା, ନିଧା, ନି ମଧ, ସା
ଧରଣ-ଆରୋହ ଅବରୋହ ଅନୁସାରେ ହେବ ।

ଦ୍ୱିତୀୟ ପ୍ରକାର ପଞ୍ଚମରାଗ:
ଏହା ଔଡ଼ବ ସମ୍ପୂର୍ଣ୍ଣ । ଆରୋହରେରି-ପା-ବର୍ଜିତସ୍ୱର । ଅବରାହରେ ପା-ବର୍ଜ୍ୟ । ବାଦୀ-ପା, ସା-ସଂବାଦୀ । ଉତରାଙ୍ଗ-ଶେଷ ରାତ୍ରିରେ ଗାନ ହୁଏ ।

ଆରୋହ-ସା-ଗା-ମା-ଧା-ସା

ଅବରୋହ-ସା-ରି-ନି-ପା-ମାଧା, ମାମ, ମା, ଗା, ପାଗା

ରିସା, ନିସା, ମା-ମା-ପାଗା, ପା, ଧାପାମା

ପାଗା ମାଧା ସା

ଧରଣ-"                                        "

ତୃତୀୟ ପ୍ରକାର ପଞ୍ଚମରାଗ:

ଏହା ପୂର୍ବୀ ବା ବରାଡ଼ିମେଳରୁ ଉତ୍ପନ୍ନ ହୁଏ। ଏହା ଷାଡ଼ବ ସମ୍ପୂର୍ଣ୍ଣ ରାଗ। ଆରୋହରେ-ରି-ବର୍ଜିତ-ଅବରୋହ ସମ୍ପୂର୍ଣ୍ଣ;-ସା- ବାଦୀ-ମା-ସଂବାଦୀ ଉତ୍ତରାଙ୍ଗ ରାତ୍ରି ଶେଷ ପ୍ରହରରେ ଗାନ ହୁଏ।

ଆରୋହ- ସା,ଗା,ମା ଧା ସା

ଅବରୋହ-ସା, ରେ, ନିଧା, ପା, ମା ପା, ଧାନିଧାପା- ମାମା,

ଗା, ମାଗାରେସା; ନସା, ମା, ସା,ରେ

ନିଧା, ନିଧାପାମା, ସା

ଧରଣ        "           "

ଚତୁର୍ଥ ପ୍ରକାର ପଞ୍ଚମରାଗ:-

ଏହା ଔଡ଼ବ ଷାଡ଼ବ ଆରୋହରେ - ରେ-ପା- ବର୍ଜିତ। ଅବରୋହରେ- ପା- ବର୍ଜିତ। ବାଦୀ- ସା- ସମ୍ବାଦୀ- ମା। ଉତ୍ତରାଙ୍ଗ ରାତ୍ରି ଶେଷ ପ୍ରହରରେ ଗାନ ହୁଏ। ଏହା ଦକ୍ଷିଣ ଭାରତ ପଦ୍ଧତିର ସୂର୍ଯ୍ୟକାନ୍ତ ମେଳ ପ୍ରକାର ହୋଇଥାଏ। ଯଦି ର - ସ୍ୱର ଅବରୋହରେ ବର୍ଜନ କରାଯାଏ ତେବେ ଓଡ଼ବ ପ୍ରକାରର ହୋଇଥାଏ।

ଆରୋହ- ସା, ରେସା, ମା, ମା, ଗା ମାଧା ନିସା

ଅବରୋହ- ସା, ରେନିଧା, ମାଧାସା, ନିଧା, ମା ମାଗା, ମାଗାରେସା,

ଧରଣ- ,, ,,

ପଞ୍ଚମ ପ୍ରକାର ପଞ୍ଚମରାଗ:-

ଏହା ଓଡ଼ବ ସମ୍ପୂର୍ଣ୍ଣଜାତି। ଆରୋହରେ ରେ-ପା-ବର୍ଜିତ ହୁଏ। ଅବରୋହ ସମ୍ପୂର୍ଣ୍ଣ-ସା-ବାଦୀ-ମା-ସଂବାଦୀ। ଉତ୍ତାଙ୍ଗ ରାଗ ରାତ୍ରି ଶେଷ ପ୍ରହରରେ ଗାନ ହୁଏ।

ଆରୋହ- ସା, ରେସା ମା-ମା, ଗା, ମାଧାସା

ଅବରୋହ- ସା, ରେ, ନିଧା ମାଗା, ପା ମା ପାଗା ଗରେସା

ଧରଣ- ଆରୋହ ଅବରୋହ ଅନୁସାରେ।

ରାଗ-ବରାଡୀ (ବରାଟୀ, ବରାଟିକା, ବରାଳି)

ରିକୋମଳା ଗତୀବ୍ରାଦ୍ୟା କୋମଳୀକୃତଧୈବତା।

ନିନା ତୀବ୍ରେଣ ସଂଯୁକ୍ତା ବରାଟୀ ଧୈବତାଦିକା ॥ ୧୨୨ ॥

ମତୀବ୍ରତରସମ୍ପନ୍ନାନ୍ଦୋଳନେନ ମନୋହରା।

(ସଂ-ପା-ସାଂ-ପା ୩୯୦ ଶ୍ଳୋ)

ବରାଟୀ ପୂର୍ବସୂର୍ଯ୍ୟୁକ୍ତ ବରାରୀ ଲକ୍ଷବିଶ୍ରୁତା ॥୧୨୩॥

ପୂର୍ଣ୍ଣାରୋହାବରୋହେ ଚ ମାରବା ମେଳନାଶ୍ରିତା।

ସମୀଚୀନଂ ଗାନମସ୍ୟା ଦିନାନ୍ତେଽତିମନୋହରମ୍ ॥ ୧୨୪ ॥

ପ୍ରାଚୁର୍ଯ୍ୟାନ୍ମାରବାଂ ଗସ୍ୟ କ୍ୱଚିଋଙ୍ଗଂଜନଂ ଭବେତ୍।

ମାରବା ପଞ୍ଚମତ୍ୟକ୍ତ ରାଗଭେଦସ୍ତତଃ ସ୍ଫୁଟଃ ॥ ୧୨୫ ॥

ସଙ୍ଗତିସପଚୟୋଷ୍ଟାତ୍ର ତଥୈବ ଗପୟୋ କ୍ୱଚିତ୍ ।
ସ୍ୟାନ୍ମଧମସ୍ୟ ଦୌର୍ବଲ୍ୟାଦ୍‌ବିଶେଷେଣ ସୁଖପ୍ରଦା ॥ ୧୨୬ ॥
ଦେଶିକାରସ୍ତଥା ତୋଡୀ ତ୍ରିବେଣ୍ୟପି ଯଥାଯଥମ୍ ।
ମିଳନ୍ତ୍ୟତ୍ରେତି ସଂପ୍ରୋକ୍ତ ଗାନଶାସ୍ତ୍ରବିଶାରଦୈଃ ॥ ୧୨୭ ॥
ଗ୍ରନ୍ଥେଷୁ ବହବୋ ଭେଦା ବରଟ୍ୟା ସମୁଦୀରିତାଃ ।
ଲକ୍ଷ୍ୟେ ପ୍ରସିଦ୍ଧବୈଧୁର୍ଯ୍ୟାନ୍ନ ତେଽତ୍ର ସମୁଦାହୃତା ॥ ୧୨୮ ॥

(ଲ-ସଂ)

### ରାଗ-ବରାଡୀ

ବରାଡୀ ରାଗ ମାରୁଆ ବା ପଞ୍ଚମ ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ ବାଦୀ-ଗା-ସଂବାଦୀ-ଧା । ପୂର୍ବାଙ୍ଗ-ସନ୍ଧ୍ୟା ସମୟେ ଗାନ ହୁଏ ।

ପ୍ରଥମ ପ୍ରକାର-

ବରାଡୀ ରାଗରେ ରି-ରି- ଧା-ସ୍ୱର କୋମଳ ହୁଏ । ଗା-ମା-ନି-ସ୍ୱର-ତୀବ୍ର ହୁଏ । ଜାତି ସମ୍ପୂର୍ଣ୍ଣ-ବାଦୀ- ଗା, ସଂବାଦୀ ନି ସ୍ୱର ହୁଏ । ଗାନ ସମୟ ଦିବା ଦ୍ୱିତୀୟ ପ୍ରହର ଉତ୍ତାରେ ପୂର୍ବାଙ୍ଗ ।

ଆରୋହ- ସା ରି ଗା ମା ପାଧା ନି ସା

ଅବରୋହ- ସା ନି ଧା ପା ମା ଗା ରି ସା

ଧରଣ- ନି ସା ରି ଗା ମା ରି ଗା ରି ସା

ଦ୍ୱିତୀୟ ପ୍ରକାର-

ଆରୋହ- ନି ରି ଗା, ପା, ପାଧାଗା, ମା ଧା ସା

ଆରୋହ-ନି, ରି ଗା, ପା, ପାଧାଗା, ପା, ପାଧାସା

ଅବରୋହ-ସା ରି ନି, ପା, ପାଧା ମା ଗା, ପାଗା, ରି ସା

ଧରଣ-ପାଧାଗା, ପା, ଧା ମାଗା, ରିଗା, ମାଗା, ରିସା

## ରାଗ- ପଞ୍ଚମବରାଡ଼ୀ

ପଞ୍ଚମବରାଡ଼ୀ ରାଗ ପଞ୍ଚମ ଓ ବରାଡ଼ୀ ରାଗ ମିଶ୍ରଣରେ ପଞ୍ଚମ ବା ମାରୁଆ ମେଳରୁ ଉତ୍ପନ୍ନ ହୁଏ। ଜାତି ଔଡବ ସମ୍ପୂର୍ଣ୍ଣ ସାଲଗରାଗ। ଅବରୋହରେ ପା- ଦୁର୍ବଳ। ବାଦୀ-ମା-ଓ ସଂବାଦୀ ସା-ସ୍ୱର ହୁଏ। ଉତ୍ତରାଂଗ; ରାତ୍ରି ଶେଷ ପ୍ରହର ଗାଇବା ସମୟ। ଆରୋହରେ ରି-ପ ବର୍ଜିତ ହୁଏ। ଏହା ପଞ୍ଚମ ମେଳର ରାଗ। କେହି କେହି ବରାଡ଼ୀ ମେଳରେ ମଧ୍ୟ ଗାଇଥାନ୍ତି। ପଞ୍ଚମ ମେଳର ପ୍ରଚଳନ ଅଧିକ ଦେଖାଯାଏ।

ଆରୋହ-ସ ରେ, ସ ମା ମା ଗ ମ ପା ଗା ମ ଧା ନ
ସ

ଅବରୋହ-ସା ନି ଧା ମ ମ ଗା, ମା-ଗା ରି-ସା

ଧରଣ-ଆରୋହଣ ଅବରୋହଣ ପରି।

## ରାଗ-ପରଜ

ମାୟା ମାଳବମେଳାଚ୍ଚ ଜାତଃ ପରଜନାମକଃ।
ସନ୍ୟାସଂସାଂଶକଂ ଚୈବ ଷଷଡ୍‌କୁଗ୍ରହମୁଚ୍ୟତେ
ଆରେହେ ତୁ ସୁସମ୍ପୂର୍ଣ୍ଣମବରୋହେ ତଥୈବ ଚ।। ୧୨୯।।

**ସ ରି ଗ ମ ପ ଧ ନ ମା।**
**ସା ନି ଧ ପ ମ ଗ ରି ସା।**

**(ରାଗ ଲକ୍ଷଣ)**

**ପୂର୍ବମେଳସୁସଂଜାତଃ ପରଜୋ ବିବୁଧପ୍ରିୟଃ।**
**ଆରୋହେ ଚାବରୋହେଽପି ସମ୍ପୂର୍ଣ୍ଣ ସର୍ବସମତଃ॥ ୧୩୦॥**
**ଉତ୍ତରାଙ୍ଗପ୍ରଧାନତ୍ୱାତ୍ତାରଷଡ୍‌ଜାଂଶଶୋଭିତଃ।**
**ଗାନମଭୀପ୍‌ସିତଂ ତସ୍ୟ ନକ୍ତଂ ଯାମେଽନ୍ତିମେ ସଦା॥ ୧୩୧॥**

**(ଲ-ସଂ)**

**ରାଗୋୟଂ ପରଜାଭିଧୋ ନିଗଦିତଃ ପୂର୍ଣ୍ଣୋ ବହୂନାଂମତେ**
**ତୀବ୍ରୌଯତ୍ରଗନୀମୃଦୂ କିଳ ରିଧୌ ତୀବ୍ରୋ ମୃଦୁର୍ମଧମଃ।**
**ତାରଷଡ୍‌ଜଇହାଂଶ ଇତ୍ୟଭିହିତ ସ୍ୟାତ୍ ପଞ୍ଚମୋଽମାତ୍ୟକୋଃ**
**ରାତ୍ରାବନ୍ତିମଯାମ ଏବ ସୁଖଦୋ ବିଦ୍ୱଦ୍‌ବରୈର୍ଗୀୟତେ॥ ୧୩୨॥**

**(ରା-କ-ଦ୍ରୁ)**

ପରଜରାଗ ପୂର୍ବଥାଟରୁ ଉତ୍ପନ୍ନ ହୁଏ। ଏଥିରେ ଦୁଇ ମଧ୍ୟମ ବ୍ୟବହାର ହୁଏ। ସମ୍ପୂର୍ଣ୍ଣ ଜାତି। ସା-ବାଦୀ ପା-ସଂବାଦୀ, ଶେଷ ରାତ୍ରିରେ ଗାନ ହୁଏ। ଉତ୍ତରାଂଗ ରାଗ;-ତାରା-ସା-ଦ୍ୱାରା ବିଶେଷ ବୈଚିତ୍ର୍ୟ ହୁଏ। କେତେକଙ୍କ ମତରେ ଦ୍ୱିତୀୟ ପ୍ରକାର ପରି ଗାନ ହୁଏ। ଆରୋହରେ 'ରେ' ଦୁର୍ବଳ ହୁଏ।

ପ୍ରଥମ ପ୍ରକାର:-

ଆରୋହ-ସା ରି ଗା ମା ପା ଧା ନି ସା
ଅବରୋହ-ସା ନି ଧା ପା ମା ଗା ରି ସ
ଧରଣ-ସା ନି ଧାପାମାପାଧାପା ଗମାଗ।

ଦ୍ୱିତୀୟ ପ୍ରକାର-

ଆରୋହ-ନି ସ ଗ ମ ଧ ନି ସ

ଅବରୋହ-ସ ନି ଧ ପ ମ ପ ଧ ପ,

ଗମଗ, ମ ଗ ରି ସ

ଧରଣ-ସ ନିଧପ, ମ ପ ଧ ପ, ଗମଗ,

### ରାଗ-ପାହାଡୀ

ଗୌର୍ଯ୍ୟୁପନ୍ନା ପାହାଡୀ ସ୍ୟାଦ୍ ଗାନ୍ଧାରସ୍ୱରବର୍ଜିତା ।
ଉଦ୍‌ଗ୍ରାହେ ଷଡ୍‌ଜସମ୍ପନ୍ନା ନ୍ୟାସାଂଶୟୋ ରି-ଶୋଭିତା ।। ୧୩୩ ।।

(ସଂ-ପା୪୪୬ ଶ୍ଳୋ)

ପାହାଡିକା ଭବତି ମେତରସର୍ବତୀବ୍ରା
ମନ୍ୟଛକା ସତତସଂଶ୍ରିତମନ୍ଦ୍ରମଧ୍ୟା ।
ବାଦୀ ତୁ ଷଡ୍‌ଜ ଇହ ପଞ୍ଚମ ମନ୍ତ୍ରୀଯୁକ୍ତଃ
ସଂଗୀୟତେ ସୁଚତୁରୈଃ ଖଳୁ ସର୍ବଦାଽସୌ ।। ୧୩୪ ।।

(ରାଗକଳ୍ପଦ୍ରୁମାଙ୍କୁରେ)

ମାୟା ମାଳବଗୌଳାଚ ମେଳାଜ୍ଜାତଃ ସୁନାମକମ୍ ।
ପାହାଡୀରାଗ ସଂପ୍ରୋକ୍ତଃ ସନ୍ୟାସଂ ସାଂଶକ ଗ୍ରହମ୍ ।

(ରାଗ ଲକ୍ଷଣ)

ଆରୋହେ ଗାଧବର୍ଜଂ ଚ ପୂର୍ଣ୍ଣବକ୍ରାବରୋହକମ୍ ।। ୧୩୫ ।।

ସ ରି ମା ପା ନି ସା ସା ନି

ପ ଧା ମ ପା ଗା ରି ସା

ପାହାଡୀ ରାଗରେ ରେ ଧ କୋମଳ, ଗା-ନି ସ୍ୱର ତୀବ୍ର ମା-ସା-ପା-ସ୍ୱର ଶୁଦ୍ଧ ହୁଏ ।

ଆରୋହରେ ଗା ବର୍ଜିତ, ଅବରୋହରେ ସମ୍ପୂର୍ଣ୍ଣ। ଜାତି ଷାଡ଼ବ ସମ୍ପୂର୍ଣ୍ଣ। ବାଦୀ ସା ଓ ପା-ସଂବାଦୀ। ଗାଇବା ସମୟ ଦିବା ତୃତୀୟ ପ୍ରହର, ପୂର୍ବାଙ୍ଗ। ରାଗଲକ୍ଷଣ ଅନୁସାରେ ଆରୋହେ ଗ-ଧା ସ୍ୱର ବର୍ଜିତ ଓ ବକ୍ର ସମ୍ପୂର୍ଣ୍ଣ ହୁଏ। ରାଗ-କଳ୍ପଦ୍ରୁମାଙ୍କୁର ଅନୁସାରେ ସମସ୍ତ ସ୍ୱର ଶୁଦ୍ଧ ଅର୍ଥାତ୍ ନଟ ବା ବେଳାବେଳୀ ବା ଶଙ୍କରାଭରଣ- ମେଳର ରାଗ ମ-ନି-ସ୍ୱର ଦୁର୍ବଳ; ଆରୋହରେ ଅଳ୍ପ ମଧ୍ୟମ ଲାଗେ; ତେଣୁ ଭୂପାଳୀରୁ ପୃଥକ୍ ଜଣାପଡେ; ମନ୍ଦ୍ର ମଧ୍ୟ ସପ୍ତକରେ ବିସ୍ତାର ହୁଏ- ଗା ରେ ସା ଧା ପ ଧା ସା ଏପରି ହୁଏ।

ପ୍ରଥମ ପ୍ରକାର-

ଆରୋହ- ସା ରି ମା ପା ଧ୍ରା ନି ସା

ଅବରୋହ- ସା ନି ଧ୍ରା ପା ମା ଗା ରି ସା

ଧରଣ- ସା ରି ମା ପା ଧା ପା ପା ମା ପା ମା ରି
ରି ସ ରି ରି ସା ନ ସା।

ଦ୍ୱିତୀୟ ପ୍ରକାର-

ଆରୋହ- ସା ରି ମା ପା ନି ସା

ଅବରୋହ- ସା ନି ପା ଧା ମା ପା ଗା ରି ସା

ଧରଣ- ଆରୋହ ଅବରୋହ ଅନୁସାରେ।

ତୃତୀୟ ପ୍ରକାର-

ଆରୋହ- ସା ରି ଗା ପା ଧା ସା

ଅବରୋହ- ସା ଧା ପା ଗା ଗା ମା ଗା ରି ସା

ଧରଣ- ଗା, ରି ସା, ଧା ପା ଧା ସା, ଗା ପା
ଧା ପା- ଗା, ରି-ସା ଧା

## ରାଗ-ପିଲୁ

**ମତଃ ପିଲୁରାଗଃ ସକଳ ମୃଦୁତୀବ୍ରସ୍ୱରଯୁତୋ**
**ମୃଦୁର୍ଗାଂଧାରୋଽଂଶଃ ସହଚରତି ତୀବ୍ରସ୍ତୁ ନିରିହ।**
**ପ୍ରସିଦ୍ଧଃ ସର୍ବତ୍ର ପ୍ରଚୁରତର ସଂଚାର ରୁଚିରଃ**
**ସଦା ଗେୟଃ ସର୍ବାର୍ଭକତରୁଣବୃଦ୍ଧୈଃ ପରିଚିତଃ॥ ୧୩୬॥**

(ରାଗକଳ୍ପଦ୍ରୁମାଙ୍କୁରେ)

**ସର୍ବେ ସ୍ୱ୍ୟଃ କୋମଳାସ୍ତୀବ୍ରା ବାଦୀମୃଦୁଗୋମତଃ।**
**ସଂବାଦୀ ଯତ୍ର ନିସ୍ତୀବ୍ରଃ ପିଲୁରାଗଃ ସ ସର୍ବଦା॥ ୧୩୭॥**

(ରାଗଚନ୍ଦ୍ରିକାୟାମ୍)

ଧନାଶ୍ରୀ ବା କାଫି ମେଳରୁ ପିଲୁରାଗ ଉତ୍ପନ୍ନ ହୁଏ। ଏହା କ୍ଷୁଦ୍ର ଜାତୀୟ ଓ ସଂକୀର୍ଣ୍ଣ ରାଗ। ଏହା ଅତିରଞ୍ଜକ ହୁଏ। ଏଥିରେ କୁଶଳ ଗାୟକମାନେ ଶୁଦ୍ଧ ୭ ଓ ବିକୃତ ୫ ଏପରି ଏ ରାଗ ୧୨ ସ୍ୱର ସଂଯୋଗ କରି ଗାଇଥାନ୍ତି। ତୀବ୍ରସ୍ୱର ବହୁତ ଆରୋହଣରେ ପ୍ରୟୋଗ ହୁଏ ଓ ଅବରୋହରେ ଅଧିକ କୋମଳ ସ୍ୱର ବ୍ୟବହାର ହୋଇଥାଏ। ଏହାର ବାଦୀ-ଗା, ସଂବାଦୀ-ନି ସ୍ୱର ହୁଏ। ଦିବସର ତୃତୀୟ ପ୍ରହର ଅଥବା ସର୍ବକାଳେ ଗାନ ହୁଏ। ପୂର୍ବାଙ୍ଗ ଓ ସମ୍ପୂର୍ଣ୍ଣ ଜାତି।

ଆରୋହ- ନି ସା, ଗ୍ରା ରି ଗା ମା ପା, ଧା ପା ନି
ଧା ପା ସା

ଅବରୋହ-ନି, ଧା, ପା, ମା ଗା ନି ସା

ଧରଣ-ନି, ସା, ଗା ନି ସା ପା ଧା ନି ସା।

## ରାଗ-ପୂରବୀ

ଗୌରୀମେଳସମୁତ୍ପନ୍ନା ଷଡ଼ଜୋଦ୍‌ଗ୍ରାହସମନ୍ୱିତା ।
ନ୍ୟାସାଂଶଗସ୍ୱରୋପେତା ପୂର୍ବୀ ସା ସୁଖଦାୟିନୀ ॥ ୧୩୮ ॥
(ସଂ.ପା.ଶ୍ଳୋ- ୪୪୯)

ମାୟାମାଳବ ମେଳାଚ୍ଚ ଜାତଃ ପୂର୍ବୀତିନାମକଃ ।
ସନ୍ୟାସଂ ସାଂଶକଂ ଚୈବ ସଷଡ୍‌ଜଗ୍ରହହମୁଚ୍ୟତେ ॥
ଆରୋହେ ତୁ ସୁସମ୍ପୂର୍ଣ୍ଣମବରୋହେ ତଥୈବ ଚ ॥ ୧୩୯ ॥

ସ ରି ଗ ମ ପ ଧ ନି ସା । ସ ନି ଧ ପ ମ ଗ ରି ସା ।
(ରା.ଲ)

ପୂର୍ବୀରାଗଃ ସକଳବିଦିତଃ କୋମଳାଭ୍ୟାଂ ରିଧାଭ୍ୟାଂ
ମଧ୍ୟସ୍ତୀବ୍ରୋ ମୃଦୁରପି ସଦୈବାତ୍ର ତୀବ୍ରୌ ଗନିସ୍ତଃ ।
ଗୋ ବାଦ୍ୟତ୍ର ପ୍ରବିଲସତି ତତ୍ସାହଚର୍ଯୈନିଷାଦେଃ
ସଂପୂର୍ଣ୍ଣୋଽସୌ ସରସବିବୁଧୈଃ ସାୟମେବ ପ୍ରଗୀତଃ । ୧୪୦ ॥
(କଳ୍ପଦ୍ରୁ ମାଙ୍କରେ)

ପୁରବୀ ରାଗ ଗୌରୀମେଳ ବା ଭୈରବମେଳରୁ ଉତ୍ପନ୍ନ ହେଲେ ମଧ୍ୟ ଏହା କଳ୍ପଦ୍ରୁମାନଙ୍କୁର ଗ୍ରନ୍ଥ ଅନୁସାରେ ପୂରବୀ ବା ବରାଡି- ମେଳର ରାଗ କହନ୍ତି । ଗୌରୀମେଳରେ କେବଳ ମତୀବ୍ର ପ୍ରୟୋଗରେ ପୂରବୀମେଳ ହୁଏ । ଜାତି ସମ୍ପୂର୍ଣ୍ଣ । ସମ୍ପୂର୍ଣ୍ଣ- ଗା-ବାଦୀ; ନି- ସଂବାଦୀ ହୁଏ । ପୂର୍ବାଙ୍ଗ, ସମୟ ସୂର୍ଯ୍ୟାସ୍ତ । ଯେତେବେଳେ ଗୌରୀମେଳରେ ଗାଇବାକୁ ହୁଏ, ତହିଁରେ ତୀବ୍ର ମ-ସ୍ୱର ପ୍ରୟୋଗ ହୁଏ ନାହିଁ । ପୂର୍ବୀ ମେଳରେ ଗାଇଲେ ଦୁଇଗୋଟି

ମ-ସ୍ୱର ଅର୍ଥାତ୍ ଶୁଦ୍ଧ ଓ ତୀବ୍ର ମ-ସ୍ୱର ଉଭୟେ ପ୍ରୟୋଗ ହୁଅନ୍ତି ।

ଗୌରୀ ମେଳର:-
ଆରୋହ- ସ-ରି-ଗ-ମ-ପ-ଧ-ନି-ସ
ଅବରୋହ-ସ ନି ଧ ପ ମ ଗ ରି ସ ।
ଧରଣ- ନ ସ ର ଗ ମ ଗ ଗ ମ । ଗ ମର,
ମଧ ମଗ ମଗ ରି ସ ।

ବରାଡି ମେଳର:-
ଆରୋହ-ସ ରି ଗ ମ ପ ଧ ନ ସ
ଅବରୋହ-ସ ନି ଧ ପ ମ ଗ ରି ସ ।
ଧରଣ-ନି ସରି ଗ, ମଗ, ଗମ ମ ଗମଗ, ରି ଗ,
ମ ଧ ମ ଗ ମଗ ରିସ
ନ ସ ର ଗ, ରି ଗ, ମଗ, ପମଗ, ରେଗ, ମଗ, ରସ ।
ଅଥବା ନି ସରିଗ, ରି ଗ ମଗ,
ପମଗ, ରିଗ, ମଗ, ରିସ

ରାଗ- ପୂରୀକଲ୍ୟାଣ ବା ପୂର୍ବକଲ୍ୟାଣ (ମିଶ୍ରରାଗ)

ପୂରୀକଲ୍ୟାଣ ରାଗ ପଞ୍ଚମ ବା ମାରୁଆ ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ । ଗା-ବାଦୀ; ନି-ସଂବାଦୀ । ପୂର୍ବାଙ୍ଗ, ଆରୋହେ ନିଷାଦ ଦୁର୍ବଳ ହୁଏ । ଗାନ ସମୟ ସନ୍ଧ୍ୟାବେଳ । ଏହା ମାରୁଆ ଓ କଲ୍ୟାଣ ରାଗ ମିଶ୍ରଣରେ ହୁଏ । ଆରୋହରେ ନି ଦୁର୍ବଳ ହୁଏ । କେହି କେହି ରି-ବାଦୀ ଏବଂ ଧ-କୁ ସଂବାଦୀ କରିଥାନ୍ତି ।

ଆରୋହ-ସା, ରି, ଗ, ମା, ପା, ଧା, ନିଧା, ସା
ଅବରୋହ-ସା ନି ଧା ପା ମା ଗା ରେ ସା
ଧରଣ-ଆରୋହ ଅବରୋହ ପରି।

## ରାଗ-ପୂରୀ ବା ପୂରିଆ

**ପୂରିଆ ତୁ ଷାଡ଼ବା ରି କୋମଳା ଚ ମତୀବ୍ରକା।**
**ମନ୍ଦ୍ର ମଧ୍ୟଚାରିଣୀ ଚ ସୂରକ୍ତିଦା ପବର୍ଜିତା॥ ୧୪୧ ॥**
**ମନ୍ଦ୍ରଗାମିନୀ ମତା ଗବାଦିନୀ ନିସଂବଦା।**
**ସ୍ନିଗ୍ଧମଞ୍ଜୁଳସ୍ୱରୈର୍ନିଶାସୁ ଗୀୟତେ ବୁଧୈଃ॥ ୧୪୨ ॥**

(କଳ୍ପଦ୍ରୁମାଙ୍କୁରେ)

**ମୃଦୁରିରିତରେ ତୀବ୍ରା ବାଦୀସଂବାଦିନୌ ଗନି।**
**ପବର୍ଜିତା ପୂର୍ବଯାମେ ଗୀୟତେ ନିଶି ପୂରିୟା॥୧୪୩॥**

(ଚନ୍ଦ୍ରିକାୟାମ୍)

ପୂରିୟା ରାଗରେ ରି କୋମଳ, ମା ତୀବ୍ର; ବାକି ସ୍ୱର ସମସ୍ତ ଶୁଦ୍ଧ ହୁଅନ୍ତି। ପ-ବର୍ଜିତ, ଜାତି ଷାଡ଼ବ-ଷାଡ଼ବ ବାଦୀ-ଗା ସଂବାଦୀ-ନି; ଉତ୍ତରାଙ୍ଗପ୍ରଧାନ। ଏଥିରେ ନିଷାଦ ଓ ମଧ୍ୟମ ସଂଗତିରେ ବୈଚିତ୍ୟ ଦାୟକ। ମନ୍ଦ୍ର ସପ୍ତକରେ ସା-ନି-ଧ-ନି ମାଗା ଏପରି ଗାନ କଲେ ଅତି ସୁନ୍ଦର ହୁଏ। ଏହା ପଞ୍ଚମ ବା ମାରୁଆମେଳରୁ ଉତ୍ପନ୍ନ ହୁଏ।

ଆରୋହ- ନି. ରେ ସା, ଗା· ମା ଧା, ନି ରେ ସା
ଅବରୋହ- ସା ନି, ଧା, ମା ଗା ରେ ସା
ଧରଣ- ନି ରେ ସା, ନି. ଧା ନି. ମା, ଧା ରେ ସା

## ରାଗ- ପୁନ୍ନାଗ (ପୁନ୍ନାଗବରାଳୀ)

ପୁନ୍ନାଗାଖ୍ୟବରାଟ୍ୟାନ୍ତୁ ନିଷାଦସ୍ତୀବ୍ରସଂଜ୍ଞକଃ।
ମସ୍ତୁ ତୀବ୍ରତରଃ ପ୍ରୋକ୍ତୋ ଗଧା ବୃଦ୍‌ଗ୍ରାହକୌ ସ୍ମୃତୌ ॥ ୧୪୩॥
(ସଂ ପା- ୩୯୪ ଶ୍ଳୋ)

ପୁନ୍ନାଗ ରାଗକୁ ଶାସ୍ତ୍ରରେ ପୁନ୍ନାଗ ବରାଳୀ ଲେଖାଯାଇଅଛି। ଏଥିରେ ମ-ତୀବ୍ର ବାକ୍ୟତିସ୍ୱର ଓ ରେ କୋମଳ ସ୍ୱର ଲାଗେ, ନିସ୍ୱରତୀବ୍ର ଯାହାକୁ ଏଥିରେ ଶୁଦ୍ଧ ନିସ୍ୱର କୁହାଯାଇଅଛି ତାହା ସହିତ ବାକି ସମସ୍ତ ସ୍ୱର ଶୁଦ୍ଧ ହୁଅନ୍ତି। ଏହା ପଞ୍ଚମ ବା ମାରୁଆମେଳରୁ ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ ସମ୍ପୂର୍ଣ୍ଣ-ଗା-ବାଦୀ ଓ ଧା ସଂବାଦୀ। ସନ୍ଧ୍ୟା ସମୟରେ ଗାନ ହୁଏ, ପୂର୍ବାଙ୍ଗ।

ଆରୋହ-ସ ରି ଗ ମ ପ ଧ ନି ସ
ଅବରୋହ-ସ ନି ଧ ପ ମ ଗ ରି ସ
ଧରଣ-ଗ ମ ପ ଧ ନି ଧ ନି ସ, ର ସ ନି ଧ ପ
ମ ଗ ମ ପ ଗର ସ।

## ରାଗ- ପଟ୍ଟମଞ୍ଜରୀ

ପଞ୍ଚମାଂଶ ଗ୍ରହନ୍ୟାସା ସମ୍ପୂର୍ଣ୍ଣ ପଟ୍ଟମଞ୍ଜରୀ।
ହୃଷ୍ୟକା ମୂର୍ଚ୍ଛନା ଜ୍ଞେୟା ରସିକାନାଂ ସୁଖପ୍ରଦା ॥୧୪୫॥
ହରିପ୍ରିୟା ହ୍ୟଯେ ମେଳେ ମଞ୍ଜରୀପଟ୍ଟପୂର୍ବିକା।
ରାଗିଣୀ ଶ୍ରୁୟତେ ଲକ୍ଷ୍ୟେ ସମ୍ପୂର୍ଣ୍ଣ ବହୁସମ୍ମତା ॥୧୪୬॥
ଆରୋହେ-ଧ-ଙ୍ଗ ଦୌର୍ବଲ୍ୟାଦ୍ ସୂଗାଙ୍ଗ ପ୍ରସୂଚୟେଦ୍।
ସାରଙ୍ଗେ ଲଘନଂ ପ୍ରୋକ୍ତଂ ସମୂଳଂ ସ୍ୱରଯୋସ୍ତୟୋ ॥୧୪୭॥

ବାଦୀତ୍ୱଂ ଷଡ୍ଜକେ ନିଷ୍ଠାଂ ସଂବାଦୀତ୍ୱଂ ତୁ ପଞ୍ଚମେ ।
ସାରଂ ଗାନଂ ତରଂଗାନଂ ଭବେଦସ୍ୟାଃ ସୁସନ୍ମତମ୍ ।। ୧୪୮ ।।
(ଲ-ସଂ)

ପଟହମଞ୍ଜରୀ ରାଗ-ଔଡ଼ବ ସମ୍ପୂର୍ଣ୍ଣ । ଆରୋହରେ- ଧ-ଗ- ସ୍ୱର ବର୍ଜିତ । ଏଥିରେ ଗ-ନି କୋମଳ ବାକି ସ୍ୱର ଶୁଦ୍ଧ ଲାଗେ । ଗାଇବା ସମୟ- ଦିବା ତୃତୀୟ ପ୍ରହର । ସା-ବାଦୀ- ପସଂବାଦୀ ହୁଏ । ଏହା ପୂର୍ବାଙ୍ଗ ରାଗ । ଏହା ଧନାଶ୍ରୀ ବା କାଫି ବା ଖରହରପ୍ରିୟା- ମେଳରୁ ଜାତ ହୁଏ ।

ଆରୋହ- ସା-ରେ-ମ-ପ-ନି-ସ

ଅବରୋହ- ସ ନି ଧ ପ ଧ ମ ଗ ର ସ ।

ଧରଣ- ନ ସା, ରେସ ନି ଧ ପ ସା-ରେମପ ଧରଗ
ମଗଗ ରସା ।

ଦ୍ୱିତୀୟ ପ୍ରକାର

ଶଙ୍କରାଭରଣମେଳର ସମସ୍ତ ଶୁଦ୍ଧ ସ୍ୱର ସମ୍ପୂର୍ଣ୍ଣ ଜାତି ପୂର୍ବାଙ୍ଗ ।
ସା-ବାଦୀ-ପ-ସଂବାଦୀ । ରାତ୍ରି ଦ୍ୱିତୀୟ ପ୍ରହରରେ ଗାନ ହୁଏ ।
ଆରୋହ, ଅବରୋହ- ସଗ ମଗ ରସ, ର ସ ନ ଧ ପ
ରେ ଗା ସା ପ ମ ଗ ର ସ ।

ଧରଣ- ଆରୋହ ଅବରୋହୀ ଅନୁସାରେ ହେବ ।

## ରାଗ-ବଙ୍ଗଳା (ବଙ୍ଗାଳ)

ବଙ୍ଗାଳୀ ରିଧ ହୀନାସ୍ୟାନ୍ମତୀବ୍ରତରସଂଯୁତା ।
ନି- ତୀବ୍ରେଣାପି ସଂଯୁକ୍ତା ସ-ସ୍ୱରୋତ୍‌ଥିତ ମୂର୍ଚ୍ଛନା ।। ୧୪୯ ।।
(ସଂ.ପା. - ୩୮୧ ଶ୍ଳୋକ)

ବଙ୍ଗାଳୀ ଔଡ଼ବ ଜ୍ଞେୟା ଗ୍ରହାଂଶ ନ୍ୟାସଷଡ୍ଜଭାକ୍।
ରି ଧ ହୀନା ଚ ବିଜ୍ଞେୟା ମୁର୍ଚ୍ଛନା ପ୍ରଥମା ମତା।
ପୂର୍ଣ୍ଣ ବାମଦ୍ରୟୋପେତା କଲ୍ଲୀନାଥେନ ଭାଷିତା ॥ ୧୫୦ ॥

(ଦର୍ପଣ)

ଭୈରବାଖ୍ୟ ସୁମେଳାଚ୍ଚ ବଙ୍ଗାଳ-ଭୈରବୋ ମତଃ।
ଆରୋହେ ଚାବରୋହେଽପି ନିଷାଦସ୍ୱରବର୍ଜିତଃ ॥ ୧୫୧ ॥
ଧୈବତୋଽତ୍ର ମତୋ ବାଦୀ ଗବକ୍ରଷ୍ଟାବରୋହଣେ।
ଗାନଂ ସୁନିଶ୍ଚିତଂ ତସ୍ୟ ପ୍ରାତଃକାଳେ ମନୀଷିଭିଃ ॥ ୧୫୨ ॥

(ଲକ୍ଷ୍ୟସଙ୍ଗୀତମ୍)

ବଙ୍ଗଳା ରାଗରେ ସଙ୍ଗୀତ ପାରିଜାତ ଅନୁସାରେ ଗା-କୋମଳ ଓ-ମ ସ୍ୱର କଡି। ବାକି ସମସ୍ତ ସ୍ୱର ଶୁଦ୍ଧ ହୁଅନ୍ତି। ଏଥିରେ ରି-ଧ-ସ୍ୱରହୀନ ହୁଏ। ମାତ୍ର ମତାନ୍ତରେ କୋମଳ ରି-ଧ-ସ୍ୱର ପ୍ରୟୋଗ ହୁଏ, ରି-ଧ-ସ୍ୱର ଆରୋହଣରେ ବର୍ଜିତ ହୁଏ। ଅବରୋହଣରେ କୋମଳ ରି-ଧ-ସ୍ୱର ଅଳ୍ପ ପ୍ରୟୋଗ ହୁଏ। ଗାନ ସମୟ ଦିବା ପ୍ରଥମ ପ୍ରହର ଉତ୍ତରାଂଗ। ଏହା ଶୋକବରାଡ଼ି ବା ତୋଡ଼ିମେଳରୁ ଉତ୍ପନ୍ନ ହୁଏ। ଜାତି ଔଡ଼ବ ସମ୍ପୂର୍ଣ୍ଣ। ଏହାର ଦ୍ୱିତୀୟ ପ୍ରକାର ଗୌରୀ ବା ମାଳବଗୌଡ଼ ମେଳରୁ ଉତ୍ପନ୍ନ ହୁଏ। ଜାତି ଷାଡ଼ବ ଷାଡ଼ବ। ବାଦୀ-ଧ, ସଂବାଦୀ-ରେ ସ୍ୱର ହୁଏ।ଉତ୍ତରାଂଗ, ସମୟ ପ୍ରାତଃକାଳ।

ଏହା ହିନ୍ଦୁସ୍ଥାନୀ ପଦ୍ଧତି ମୂଳତାନି ରାଗ ସ୍ୱର ସହିତ ସମାନ ଶୁଣାଯାଏ-

ପ୍ରଥମ ପ୍ରକାର-

ଆରୋହ- ସ ଗ-ମ-ପ-ନ-ସ

ଅବରୋହ- ସ ନ ଧ ପ ମ ଗ ର ସ

ଧରଣ- ନ ସ ଗ ମ ପ ଧ ପ ମ ଗ ମ ପ ମ
ଗ ର ସ

ଦ୍ୱିତୀୟ ପ୍ରକାର

ଆରୋହ- ସରି, ଗ ମ ପ ଧ ସ

ଅବରୋହ- ସ ଧ ପ ମ ଗ ମ ରି ସ

ଧରଣ- ଧପ, ମଗ, ମର ସ, ପଧ, ସ ଧପ ଗ, ମର,ସ

## ରାଗ-ବସନ୍ତ

ଷଡ୍‌ଜାଦିମୂର୍ଚ୍ଛନେ ମାତେ ଗନୀତୀବ୍ରୌ ବସତକେ।

(ସଂପ. ୩୭୦-ଶ୍ଲୋକ)

ବସନ୍ତରୌ ଗେୟୋ ମୃଦୁଳରଷଭତ୍ତୀବ୍ରସକଳଃ
ପହୀନୋ ମହ୍ନନ୍ଦଃ ସମଗ ପୁନରାବୃତ୍ତିରୁଚରଃ।
ସ ବାଦୀ ମାମାତ୍ୟୋଽପ୍ୟହନି ନିଶି ଚାବ୍ୟାହତଗତିଃ
ସ୍ଥିତସ୍ତାରେ ଷଡ୍‌ଜେ ସ ଜଗତି ବସନ୍ତୋ ବିଜୟତେ॥ ॥୧୫୩॥

(କଳ୍ପଦ୍ରୁମାଙ୍କୁରେ)

ମୃଦୁରିରିତରେ ତୀବ୍ରଃ ପବର୍ଜ୍ୟଶ୍ଚ ଦ୍ୱିମଧମଃ।
ଷଡ୍‌ଜବାଦୀମ ସଂବାଦୀ ବସନ୍ତରୌ ବସନ୍ତକଃ॥ ୧୫୪ ॥

(ଚନ୍ଦ୍ରିକାୟାମ୍)

ଷଡ୍‌ଜନ୍ୟାସଗ୍ରହାଶୋଽୟଂ ଷଡ୍‌ଜମଧମିକୋ ଭବଃ।
ଜ୍ଞେୟୋ ବସନ୍ତ ସମ୍ପୂର୍ଣ୍ଣୋ ବସନ୍ତସମୟେ ବୁଧୈଃ॥ ୧୫୫॥
(ସଂ ମୁକ୍ତାବଳୀ- ଓଡ଼ିଶା)

ଷଡ୍‌ଜମଧମିକାଜ୍ଜାତଃ ଷଡ୍‌ଜନ୍ୟାସଗ୍ରହାଂଶକଃ।
ଗେୟୋ ବସନ୍ତରାଗୋଽୟଂ ବସନ୍ତ ସମୟେ ବୁଧୈଃ॥ ୧୫୬॥
(ଗୀତପ୍ରକାଶ)

ଶ୍ରୀରାଗସମ୍ଭବଃ ସୋଽୟଂ ବସନ୍ତଃ ସମୁଦୀରିତଃ।
ମନ୍ୟନ୍ତେ ରାଗିଣୀ କେଚିଦ୍‌ବାସନ୍ତୀଞ୍ଚ ଶ୍ରିୟସ୍ତ୍ରିକା॥ ୧୫୭॥
ସ୍ୟାତ୍ତ୍ର କୃତ୍ରିମତ୍ୱଂ ବୈ ଋଷଭେ ମଧମଦ୍ୱୟୋଃ।
ପଞ୍ଚମେନ ବିହୀନା ସା ଯୁକ୍ତା ସ୍ୟାଦ୍‌ବକ୍ରଷାଡ଼ବା॥ ୧୫୮॥
ଆରୋହେ ଋଷଭନ୍ୟସ୍ତା ବାଦୀସ୍ୟାନ୍ମଧମସ୍ତଥା।
ସଂବାଦୀ ଷଡ୍‌ଜ ଏବାତ୍ରାରୋହଣେ କ୍ଳିଷ୍ଟମଧମା।
ସ୍ୟାତାଂ ଦ୍ୱାବରୋହେ ତ ଦିବସେ ପ୍ରଥମେଦଳେ॥ ୧୫୯॥
(ସଂ-ସ-ସାରେ, ସଂ.ପା.ରେ ଉଦ୍ଧୃତ)

ବସନ୍ତ ରାଗରେ ରେ-କୋମଳ ଦୁଇ ମଧମ ମା-ମା- ବାକି ସ୍ୱରସବୁ ଶୁଦ୍ଧ ଲାଗେ। ପା-ସ୍ୱର ବର୍ଜିତ ହୁଏ। ସା-ବାଦୀ ଓ ମା-ସଂବାଦୀ ହୁଏ। ମଧ୍ୟ ମା- ବାଦୀ ସା-ସମ୍ବାଦୀ କରାଯାଇପାରେ। ଏହା ଉତ୍ତରାଙ୍ଗ ଜାତି ଔଡ଼ବ ଷାଡ଼ବ। କିନ୍ତୁ ଅନ୍ୟ ପ୍ରକାର ସମ୍ପୂର୍ଣ୍ଣ ଜାତି ମାନିଥାନ୍ତି। ତହିଁରେ ବାଦୀ ତାର ଷଡ଼ଜ-ସଂବାଦୀ ପଞ୍ଚମ ହୁଏ। ଗାଇବା ସମୟ ରାତ୍ରି ଶେଷ,

ପ୍ରାତଃକାଳ ଦିବା ପ୍ରଥମ ପ୍ରହର। ଏହା ବସନ୍ତ ଋତୁରେ ଅଧିକ ପ୍ରିୟ ହୁଏ। ଆରୋହରେ ତୀବ୍ର ବା ଚଢ଼ା ମ ଓ ଅବରୋହରେ ଦୁଇ ମଧ୍ୟମ ଲାଗେ।

ପ୍ରଥମ ପ୍ରକାର ପଞ୍ଚମ ମେଳ-
ଆରୋହ-ସା-ଗା-ମା-ଧା-ନି-ସା
ଅବରୋହ- ସ-ନି-ଧା-ମା ମା ଗା ରି ସା
ଧରଣ- ଆରୋହ ଅବରୋହ ଅନୁସାରେ

ଦ୍ୱିତୀୟ ପ୍ରକାର-
ଆରୋହ-ସା-ଗାମା ନିଧା, ମା ଧା ମା ଗା, ମାଧାସା
ଅବରୋହ-ସ, ନିଧା, ନି, ମାଗା,ରେ ସା
ଧରଣ-ଆରୋହ ଅବରୋହ ଅନୁସାରେ

ତୃତୀୟ ପ୍ରକାର-
ଆରୋହ-ସା, ଗା, ମା, ନି, ଧାପା, ମାଗା ମା ଧା ନି ସା
ଅବରୋହ-ସା ନି ଧା ନି, ମା ଗା ମା ଗରେ ସା
ଆରୋହ ଅବରୋହ ଅନୁସାରେ।

ଚତୁର୍ଥ ପ୍ରକାର-
ନଟମେଳ-ସମସ୍ତ ଶୁଦ୍ଧ ସ୍ୱର ସମ୍ପୂର୍ଣ୍ଣ ଜାତି
ଆରୋହ-ସ ରି ସ ମ ଗ ସ ପପ ଗ ମଧନିସ
ଅବରୋହ-ସ ରି ସ ନ ଧ ପ ମ ପ
ଗ ମ ମ ଗ ରି ରି ସ।
ଧରଣ-ସ ରି ସ ମା ଗ ମ ପ ପ ଗମ ଧନ ସ

ପଞ୍ଚମ ପ୍ରକାର-

ଶୁଦ୍ଧ ଧ-ପରିବର୍ତ୍ତେ କୋମଳ-ଧ-ସଂଯୋଗରେ ବରାଡିମେଳ ପ୍ରକାରେ
ଆରୋହ-ସ ଗ ମ ଧ ରେ ସ
ଅବରୋହ-ର ନି ଧ ପ, ମ ଗ, ମ ଗ ମ ଧ ମ ଗା ରେସ
ଧରଣ-ମ ଧ ରି ସ ରି ନି ଧ ପ ମ ଗ ମ ଗ ।

ରାଗ-ବେଳାବଳୀ

ବେଲାବଲ୍ୟାଂ ଗନୀତୀବ୍ରୌ ମୂର୍ଚ୍ଛନା ଚାଭିରୁଦ୍‌ଗତା ।
ଆରୋହେ ମନିହୀନାୟାମଂଶଃ ଷଡ୍‌ଜୋ ବୁଧୈଃ ସ୍ମୃତଃ ।
ଅବରୋହେ ଗବର୍ଜାୟାଂ କ୍ୱଚିଦ୍‌ଗାଂଧାରମୂର୍ଚ୍ଛନା ॥ ୧୬୦ ॥
(ସଂପା- ୪୦୮ ଶ୍ଲୋକ)

ରାଗୋବେଲାବଳୀତି ପ୍ରଥିତ ଇହ ସଦା ମାନ୍ୟତୀବ୍ରସ୍ୱରେଷୁ
ଷଡ୍‌ଜନ୍ୟାସଗ୍ରହୋଽୟଂ ପ୍ରକୃତିସୁରୁଚିରେ ଧୈବତାଂଶୋଗମନ୍ଦ୍ରା ।
କଲ୍ୟାଣାଙ୍ଗଂ ଦଧାନୋ ବିଳସତି ନିଗୟୋର୍ବକ୍ରତା ଚାତ୍ର ନିତ୍ୟଂ
ପ୍ରାତର୍ଗେୟୋଽଭିଗୀତୋ ରମୟତି ହୃଦୟଂ ଶୃଣ୍ୱତାମେଷ ପୂର୍ଣ୍ଣଃ ॥ ୧୬୧ ॥
(କଳ୍ପଦ୍ରୁମାଙ୍କୁରେ)

ବେଲାବଳୀ ରାଗରେ ସମସ୍ତ ସ୍ୱର ଶୁଦ୍ଧ ଲାଗେ । ଏହା ନଟମେଳରୁ ଉତ୍ପନ୍ନ ହୁଏ ଅର୍ଥାତ୍ ଅଭିରୁଦ୍‌ଗତାମୂର୍ଚ୍ଛନା ର-ଗ-ନି-ସ୍ୱରକୁ କୋମଳ ନ କରି ତୀବ୍ର କଲେ ଓ ଗାନ୍ଧର-ମୂର୍ଚ୍ଛନା ସଂଯୋଗରେ ତୀବ୍ର-ମ -ଲୋପ ହୋଇ ସମସ୍ତ ସ୍ୱର ଶୁଦ୍ଧ ହୋଇ ଶଙ୍କରାଭରଣ ବା ନଟମେଳ ହୁଏ । ଆରୋହଣରେ-ମ ନି- ହୀନ; କିନ୍ତୁ ବର୍ଜିତ ନୁହେଁ ଦୁର୍ବଳ ହୁଏ ଓ ଅବରୋହରେ ଗା-ସ୍ୱରବର୍ଜରେ ବକ୍ର ସମ୍ପୂର୍ଣ୍ଣ ଜାତି ଅଟେ । ସା-ବାଦୀ ପା-ସଂବାଦୀ

ହୁଏ। ମଧ୍ୟ-ଧା-ବାଦୀ ଗା- ସଂବାଦୀ କରି ଗାନ କରାଯାଏ। ଗାଇବା ସମୟ ଦିବା ପ୍ରଥମ ପ୍ରହର, ଉତ୍ତରାଙ୍ଗପ୍ରଧାନ।

ଆରୋହ- ସା-ରେ-ଗା-ମା-ପା-ଧା-ନି-ସା
ଅବରୋହ- ସା-ନି-ଧା-ପା-ମା-ରେ ଗା-ରେ ସା
ଧରଣ- ଗା-ରେ-ଗା-ପା-ଧା-ନି-ସା

## ବିଭାସ

ମଙ୍କୁ ତୀବ୍ରତରୌ ଯସ୍ମିନ୍ ଗନୀତୀବ୍ରୌରିଧୈ ମତୌ।
କୋମଳୌ ନ୍ୟାସଧୋପେତେ ବିଭାସେ ଗାଦିମୂର୍ଚ୍ଛନେ ॥ ୧୬୨ ॥
ଆରୋହେ ମନିବର୍ଜତ୍ୱଂ ଗ-ପାଂଶ ସ୍ୱରସଂଯୁତେ।
(ସଂ-ପା-୩୮୩ ଶ୍ଳୋକ)

ମେଳେ ଭୈରବକେ ତତ୍ର ମନିହୀନୋ ବିଭାଂଶୁକଃ ॥ ୧୬୩ ॥
ଔଡ଼ବୋ ଧୈବତାଂଶୋଽପି ପଞ୍ଚମନ୍ୟାସମଣ୍ଡିତଃ।
ବିଚିତ୍ରେ ଗପସଂଗତ୍ୟା ସୁଶାନ୍ତପ୍ରକୃତିଂ ପୁନଃ ॥ ୧୬୪ ॥

ମାରବା ମେଳକୋତ୍ପନ୍ନୋ ବିଭାସଃ ଶ୍ରୂୟତେ ଜନେ।
ସମ୍ପୂର୍ଣ୍ଣେ ଗୀୟତେ ପ୍ରାତରଂତିମାଂଶପ୍ରଧାନକଃ ॥ ୧୬୫ ॥
ଧୈବତସ୍ୟୈବ ବାଦିତ୍ୱଂ ସଂଗୀଦୀତ୍ୱଂ ତୁଗସ୍ୟ ତତ୍।
ଗପୟୋର୍ମଧୟୋଶ୍ଚାପି ସଂଗିତୀରକ୍ତିକାରଣମ୍ ॥ ୧୬୬ ॥
(ଲ-ସଂ)

ବିଭାସ ରାଗ ଚାରି ପ୍ରକାରରେ ହୋଇଥାଏ। ତାହାର ସମସ୍ତ ପ୍ରକାର ପ୍ରାତଃକାଳରେ ଗାନ ହୁଏ।

ପ୍ରଥମ ପ୍ରକାର

ଭୈରବ ବା ଗୌରୀମେଳରୁ ଉତ୍ପନ୍ନ ହୁଏ। ଜାତି ଔଡ଼ବ

ଏଥିରେ- ମ-ନି ସ୍ୱର ବର୍ଜିତ ହୁଏ। ଏହା ଉତ୍ତରାଙ୍ଗ। ବାଦୀ ସ୍ୱର ଧା ସଂବାଦୀସ୍ୱର- ଗା।

ଆରୋହ-ସା ରେ ଗା ଗା ପା ଧା ସା

ଅବରୋହ-ସା ଧା ପା ଗାରେ ସା

ଧରଣ-ଧା, ପା, ଗ ପା, ଗ, ରେ ସା, ଗ ପ,
ଧା, ପା, ସା ଧା, ପା

ଦ୍ୱିତୀୟ ପ୍ରକାର

ପୂରବୀ ବା ବରାଡିମେଳରୁ ଉତ୍ପନ୍ନ ହୋଇଥାଏ। ଷାଡବ ସମ୍ପୂର୍ଣ୍ଣ ଜାତି। ଉତ୍ତରାଙ୍ଗ- ଆରୋହରେ -ନି ସ୍ୱର ବର୍ଜିତ ହୁଏ ଧା ସ୍ୱର-ବାଦୀ ଗା ସ୍ୱର-ସଂବାଦୀ।

ଆରୋହ-ସା, ରେସ, ଗାପା, ଧା, ସା

ଅବରୋହ-ସାଧା, ନିଧାପା; ମାଗା ପାଧା ର ସା, ନିଧାପା,
ମା ପାଧାପା ଗାରସା,

ଧରଣ-ଧା ପ ମାପା, ଗାର ସା ଧ ଧ ପ, ଏଥିରେ ମଧ୍ୟମ
ଓ ନିଷାଦ ସ୍ୱର ଦୁର୍ବଳ ହୁଏ।

ତୃତୀୟ ପ୍ରକାର-

ମାରୁଆ ବା ପଞ୍ଚମମେଳରୁ ଉତ୍ପନ୍ନ ହୁଏ। ସମ୍ପୂର୍ଣ୍ଣ ଜାତି ଉତ୍ତରାଙ୍ଗ। ଧା-ସ୍ୱର ବାଦୀ ଗା-ସ୍ୱର ସଂବାଦୀ।

ଆରୋହ-ସା, ନି ର ଗା, ପାଗା, ରେସା, ଗାପା, ପାଧା
ମାଗା ମାଧା ସା,

ଧରଣ-ନି ରେଗା, ମାଗା, ଗାରେସା, ଗାପା, ଗାପାଧା, ମାଗା,
ପାଗାରେସ । ଆରୋହରେ ନିଷାଦ ଦୁର୍ବଳ ହୁଏ।

ଚତୁର୍ଥ ପ୍ରକାର-

ଏହା କଲ୍ୟାଣମେଳରୁ ଉତ୍ପନ୍ନ ହୁଏ।

ଆରୋହ-ସ ରି ଗ ପ ଧ ସ

ଅବରୋହ-ସ ଧ ପ ଗ ର ସ

ଧରଣ-ଧ ପ ଗ ପ ଗ ର ସ ଗ ପ ଧ ପ ସ ଧ ପା

## ରାଗ-ବସନ୍ତବରାଡୀ

ଗାଂଶଗ୍ରାହୀ କିଳ ବସନ୍ତବରାଳୀ ସର୍ବଦାଽରିପା ସାନ୍ତା।

(ରାଗବିବୋଧ)

ନଟଭୈରବିରାଗାଖ୍ୟମେଳାଜ୍ଜାତଃ ସୁନାମକଃ ।। ୧୬୭ ।।

ବସନ୍ତାଖ୍ୟ ବରାଳୀ ତୁ ସନ୍ୟାସଂ ସାଂଶକଗ୍ରହମ୍।

ଆରୋହେ ତୁ ଗର୍ବଜଂ ଚାପ୍ୟବରୋହେ ମବର୍ଜିତମ୍।। ୧୬୮ ।।

ସ ରି ମ ପ ଧ ନି ସା। ସ ନି ଧ ପ ଗ ରି ସା-

(ରାଗଲକ୍ଷଣ)

ରାଗବିବୋଧ ଗ୍ରନ୍ଥାନୁସାରେ ବସନ୍ତବରାଳୀ ରାଗରେ ସମସ୍ତ ଶୁଦ୍ଧ ସ୍ୱର ପ୍ରୟୋଗ ହୁଏ। ଅବରୋହରେ ତୀବ୍ର (ମା') ସ୍ୱର ବ୍ୟବହାର ହୁଏ। ଜାତି ଔଡ଼ବ। ସବୁ ସମୟରେ ଗାନ କରାଯାଏ। ଏହା ପୂର୍ବାଙ୍ଗ ଗାନ୍ଧାର (ଗା) ସ୍ୱର ବାଦୀ, ନିଷାଦ (ନି) ସ୍ୱର ସଂବାଦୀ ହଏ। ରେ-ପା-ସ୍ୱର ବର୍ଜିତ ହୁଏ। ଏହା ନଟ ବା ବେଲାବଳୀ ମେଳରୁ ଉତ୍ପନ୍ନ ହୁଏ।

ଆରୋହ- ସା ମ ଗା-ମା-ଧା-ନି-ସା।

ଅବରୋହ- ସା-ନି-ଧା-ମା-ଗା-ମା-ଗା ସା

ଧରଣ- ନ ସା-ମା ଗା-ମା-ଧା-ନି-ସା

ଅନ୍ୟ ପ୍ରକାର ରାଗଲକ୍ଷଣ ମତରେ-

ବସନ୍ତବରାଳୀ ରାଗ ନଟଭୈରବୀ ବା କର୍ଣ୍ଣାଟ ମେଳର ରାଗ। ଏଥିରେ ଗା ଧାନି ସ୍ୱର କୋମଳ ହୁଏ। ଆରୋହଣରେ ଗା ଓ ଅବରୋହଣରେ (ମା) ସ୍ୱର ବର୍ଜ୍ୟ ହୁଏ। ଜାତି ଷାଡବ, ଷାଡବ ବାଦୀସ୍ୱର (ସା) ସଂବାଦୀ ସ୍ୱର (ମା) ହୁଏ। ସମୟ ଦିବା ଦ୍ୱିତୀୟ ପ୍ରହର ଉତ୍ତରାଙ୍ଗ ରାଗ।

ଆରୋହ- ସା-ରେ-ମା-ପ-ଧ୍ରା ନି ସା।
ଅବରୋହ- ସା ନି ଧା ପା-ମା ପା-ଗା ରେ ସା।
ଧରଣ- ରେ-ମା-ପା-ନି-ଧା-ପା

### ରାଗ-ବିଳାହରି

**ଶଙ୍କରାଭରଣୀଯୋଽୟଂ ମେଳାସ୍ତଜ୍ଜା ବିଳାହରୀ।**
**ସଗ୍ରହାଂଶା ଚ ସନ୍ୟାସା ପୂର୍ଣ୍ଣା ପ୍ରାତଃ ପ୍ରଗୀୟତେ॥ ୧୬୭॥**
(ସାରାମୃତ)

**ଆରୋହେ ମଧ୍ୟମ ଲଘନଂ......।**
**ମେଳାଚ୍ଚ ସମ୍ଭବୋଧୀରଶଙ୍କରାଭରଣାଚ୍ଚ ବୈ॥ ୧୭୦॥**
**ରାଗୋ ବିଳାହରିଶ୍ଚୈବ ସନ୍ୟାସସାଂଶକଗ୍ରହମ୍।**
**ଆରୋହେ ମନିବର୍ଜ୍ଜଂ ଚାପ୍ୟବରୋହେ ସମଗ୍ରକମ୍॥ ୧୭୧॥**
**ସ ରି ଗ ପ ଧ ସା। ସ ନି ଧ ପ ମ ଗ ରି ସ॥**
(ଗାଃ ଲଃ)

ବିଳାହରୀ ରାଗ ଶଙ୍କରାଭରଣ ବା ନଟମେଳରୁ ଉତ୍ପନ୍ନ ହୁଏ। ଜାତି ଔଡ଼ବ ସମ୍ପୂର୍ଣ୍ଣ ଆରୋହରେ ମ-ସ୍ୱର ବର୍ଜିତ ହୁଏ ଓ ନି-ସ୍ୱର ବକ୍ର ବା ଦୁର୍ବଳ ହୁଏ। ଅବରୋହରେ ସମ୍ପୂର୍ଣ୍ଣ ସ୍ୱର

ଲାଗେ । ଏହା ଉତ୍ତରାଂଗ ପ୍ରାତଃକାଳରେ ଗାନ ହୁଏ । ଗା-ବାଦୀ, ଧା- ସଂବାଦୀ ସ୍ୱର ହୁଏ ।

ଆରୋହ- ସ ରି ଗ ପ ଧ ନି ଧ ସ

ଅବରୋହ- ସ ନ ଧ ପ ମ ଗ ର ସ

ଧରଣ- ସ ରି ଗ ପ ମ ଗ ରି ସ ନ ଧ ସ

ରାଗ- ବେଗଡା (ବିଦ୍ରାଗଡା) ଓ ବେହାଗ

ବିହାଗଡେ ଗନୀତିବ୍ରାବରୋହେ ତୁ ରିବର୍ଜିତେ ।
ଗାନ୍ଧାରୋଦ୍‌ଗ୍ରାହସମ୍ପନ୍ନେ ନ୍ୟାସାଂଶୋ ରିସ୍ୱରେ ମତଃ ।। ୧୭୨ ।।

(୪୪୭ ଶ୍ଳୋ ସଂ ପା)

ଯଦ୍ୟସ୍ମିନ୍ ପଂଚମୋଦ୍‌ଗ୍ରାହଃ ସ୍ୟାଦରୋହେ ଗବର୍ଜନମ୍ ।
ମୂର୍ଚ୍ଛନା ମଧ୍ୟମେ ଚାପି ପରାହିତ୍ୟଂ ସଦା ଭବେତ୍ ।। ୧୭୩ ।।

(ତୃତୀୟ ପ୍ରହରୋତ୍ତରମ୍-ସ. ପା ୪୪୮ ଶ୍ଳୋ)

ମେଳେ ମେଳାବଳସ୍ୟୈବ ପ୍ରୋକ୍ତୋ ରାଗଃ ସୁନାମକଃ ।
ବିହାଗ ଇତି ବିଖ୍ୟାତୋ ଗାନ୍ଧାରାଂଶଗ୍ରହୋ ଜନେ ।। ୧୭୪ ।।
ପ୍ରାରୋହେ ରିଧବର୍ଜଂ ସ୍ୟାଦବରୋହେ ସମଗ୍ରକମ୍ ।
ରାତ୍ର୍ୟାଂ ଦ୍ୱିତୀୟକେ ଯାମେ ଗାନମସ୍ୟ ମନୋହରମ୍ ।। ୧୭୫ ।।
ନିଷାଦଃ କୋମଳଶ୍ଚାସ୍ମିନ ପ୍ରଯୁକ୍ତଶ୍ଚେଦ୍ ବିଲୋମକେ ।
ବିହାଗଡା ସମୁପୃଭିର୍ଭବେଦିତି ବିଦାଂ ମତମ୍ ।। ୧୭୬ ।।

(ଲ.ସ)

ମେଳାଚ୍ଚ ସଂମ୍ଭବୋ ଧୀରଶଂକରାଭରଣାଚ୍ଚ ବୈ ।
ବ୍ୟାଗଡଶ୍ଚେତି ରାଗଶ୍ଚ ସନ୍ୟାସଂ ସାଂଶକଗ୍ରହମ୍ ।
ଆରୋହେ ରିଧବର୍ଜଂ ଚାପ୍ୟବରୋହେସମଗ୍ରକମ୍ ।। ୧୭୭ ।।

(ରା.ଲ.)

ସ ଗ ମ ପ ନ ସା । ସ ନି ଧ ପ ମ ଗ ରି ସା ।

ରାଗ ବେହାଗ- ଏହା ବେଲାବଳୀ ବା ଶଙ୍କରାଭରଣ ବା ନଟ ମେଳରୁ ଉତ୍ପନ୍ନ ହୁଏ। ଜାତି ଔଡ଼ବ ସମ୍ପୂର୍ଣ୍ଣ ଆରୋହରେ ରେ-ଧ ସ୍ୱର ବର୍ଜ୍ୟ ଓ ଅବରୋହ ସମ୍ପୂର୍ଣ୍ଣ ବାଦୀ-ଗା-ସମ୍ବାଦୀ-ନି ରାତ୍ରି ଦ୍ୱିତୀୟ ପ୍ରହରରେ ଗାନ ହୁଏ ପୂର୍ବାଙ୍ଗ।

ଆରୋହ- ସା, ଗା, ପା, ନି, ସା
ଅବରୋହ- ସା, ନି, ଧା, ପା, ମା, ଗା, ରେ, ସା
ଧରଣ- ନସା, ଗାମାପା, ନିସା, ନି, ଧାପା, ଗା, ମାପା,
ଗାମାଗା, ରେସା,

ଅବରୋହରେ ରେ ଧା ଦୁର୍ବଳ ହୁଏ।

ଦ୍ୱିତୀୟ ପ୍ରକାର ବେହାଗ-
ଆରୋହ ଅବରୋହରେ ଆଗନ୍ତୁକଭାବେ ମା-ବ୍ୟ ବାହାର ହୁଏ
ଆରୋହ- ସା, ଗା, ମା, ପା, ନି-ସା
ଅବରୋହଂ- ସା, ନି, ଧା, ପା, ମା, ପା, ଗା ମା-ଗା-ପା
ମା ଗା, ମା ଗା, ପା, ମା ମା ଗା, ରେ ସା,
ଧରଣ- ଆରୋହ ଅବରୋହ ଅନୁସାରେ।

ବେହାଗଡା- ବେହାଗଡା ରାଗରେ ସମସ୍ତ ସ୍ୱର ଶୁଦ୍ଧ ହୁଏ। ଆରୋହରେ ରେ-ସ୍ୱର ବର୍ଜିତ ହୁଏ। ଜାତି ଷାଡବ ସମ୍ପୂର୍ଣ୍ଣ, ରେ ବାଦୀ,-ଧ-ସମ୍ବାଦୀ ହୁଏ। ପୂର୍ବାଙ୍ଗ ରାତ୍ରି ତୃତୀୟ ପ୍ରହର ଶେଷରେ ଗାନ ହୁଏ। ଏହା ନଟ ବା ବେଲାବଳୀ ବା ଶଙ୍କରାଭରଣ ମେଳରୁ ଉତ୍ପନ୍ନ ହୁଏ। ଯଦି ପା-ସ୍ୱରକୁ ଗ୍ରହଣ କରାଯାଏ, ତେବେ ଆରୋହରେ ଗ- ବର୍ଜିତ ହୁଏ। ମୂର୍ଚ୍ଛନା ମଧ୍ୟମରେ ଶ୍ରୀରାଗ ମେଳ ହୁଏ। କିନ୍ତୁ ଏହାର ଚଳନ ପ୍ରବଳ ନୁହେଁ।

ଆରୋହ- ସା ଗା ମା ପା ନି ଧା ନି ସା ।
ଅବରୋହ- ସା ନି ଧା ପା ମା ଗା ରେ ସା ।
ଧରଣ- ଗା ମା ପା ନି ଧା ନି ସା ଗା ରେ ସା ନି
ପା ମା ଗା ମା ପା ମା ଗା ରେ ସା ନି ସା ।

## ରାଗ- ବଙ୍ଗଳାଶ୍ରୀ

ବଙ୍ଗଳାଶ୍ରୀ ରାଗ- ବଙ୍ଗଳା ଓ ଶ୍ରୀ ରାଗର ସଂମିଶ୍ରଣରେ ଉତ୍ପନ୍ନ ହୁଏ । ଏହି ଗ୍ରନ୍ଥରେ ବଙ୍ଗଳା ଓ ଶ୍ରୀ ରାଗର ଲକ୍ଷଣ ଲେଖା ଅଛି । ସେହି ଅନୁସାରେ ଲକ୍ଷଣ ଲେଖାଗଲା । ଗାଇବା ସମୟ ଦିବା ପ୍ରଥମ ପ୍ରହର ଓ ସର୍ବଦା ଜାତି ଔଡ଼ବ, ସମ୍ପୂର୍ଣ୍ଣ-ବାଦୀ, ଧ-ସମ୍ବାଦୀ, ର ସ୍ୱର ହୁଅନ୍ତି, ଉତ୍ତରାଂଗ ।

ଆରୋହ-ସ, ର ମ ପ ନି ସ
ଅବରୋହ-ସ ନ ଧ ପ ମ ଗ ମ ପ ଗ ମ ର ସ ।
ଧରଣ-ନ ସ ର ମ ପ ଧ ପ ମ ପ ଗ ମ ପ ମ
ଗ ମ ରି ସ

## ରାଗ-ବସନ୍ତଭୈରବ

କୋମଳାଖ୍ୟୌ ତୀବ୍ରୌ ଗ-ନି- ବସନ୍ତଭୈରବେ ।
ଧୈବାତାଂଶଗ୍ରହନ୍ୟାସେ ମଧମାଂଶୋଽପି ସମ୍ମତଃ ।। ୧୭୮ ।।
ସଂ-ପା- ୩୭୯ ଶ୍ଲୋକ

ବସନ୍ତଭୈରବରାଗ ଭୈରବ ବା ଗୌରୀ ମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ, ବାଦୀ-ଧା-ସାମ୍ବାଦୀ ରେ- ହୁଏ, ମଧ୍ୟ ମା-ବାଦୀ ସା-ସଂବାଦୀ କରି ଗାନ ହୁଏ । ଗାଇବା ସମୟ

ପ୍ରାତଃକାଳ ଉତ୍ତରାଙ୍ଗ ରାଗ । ଏହାକୁ ବର୍ତ୍ତମାନ କେବଳ ଭୈରବ ନାମରେ ପ୍ରଚାର କରାଯାଉଅଛି ।

ଆରୋହ-ସା ରେ ଗା ମା ପା ଧା ନି ସା
ଅବରୋହ-ସା ନି ଧା ପା ମା ଗା ରେ ସା
ଧରଣ-ସା ଗା ମା ପା ଧା ପା
ଅଥବା-ନ ସା ମା ଗା ମା ଧା ପା ମା ଗା ମା ରେ ସା

## ରାଗ-ଭୂପାଳ (ଭୂପାଳୀ)

ମନିବର୍ଜ୍ୟା ତୁ ଭୂପାଳୀ ରି-ଧୌ ଯତ୍ର ଚ କୋମଳୌ ।
ଗାନ୍ଧାରୋଦ୍‌ଗ୍ରାହସଂଯୁକ୍ତାରିନ୍ୟାସାଂଗାଂଶଶୋଭିତା ।। ୧୭୯ ।।
(ସଂ-ପା-୩୭୫ ଶ୍ଳୋ)

ଭୂପାଳୀ କାମରାଗସ୍ତିହ ସରିଗପଧୈଃ ପଞ୍ଚତୀବ୍ରସ୍ୱରୈଃ ସ୍ୟା-
ଦାରୋହେ ଚାବରୋହେଽପି ଚ ସଖଳୁ ପୁନର୍ନୈବ ଭେଦଂ ପ୍ରପେଦେ ।
ଗାନ୍ଧରୋ ଧୈବତେଽତ୍ର ପ୍ରବିକସତ ଉଭୌ ବାଦୀସଂବାଦିନୌପୌ ।
ପ୍ରଖ୍ୟାତ ଔଡୁବୋଽୟଂ ନିଶି ଗୁଣିନିକରୈର୍ଗୀୟତେ ପୂର୍ବଯାମେ ।। ୧୮୦ ।।
(ରାଗକଳ୍ପଦ୍ରୁମାଙ୍କୁରେ)

ଆରୋହେ ଚାବରୋହେ ଚ ଭୂପାଳୀ ମନିବର୍ଜିତା ।
ଗାଂଶଧୈବତ ସଂବାଦିନ୍ୟୁକ୍ତତୀବ୍ରସ୍ୱରୈର୍ନିଶି ।। ୧୮୧ ।।
(ରାଗଚନ୍ଦ୍ରିକାୟାମ୍)

ହନୁମଦ୍‌ତୋଡିମେଳାଚ୍ଚ ଜାତୋ ଭୂପାଳନାମକଃ ।
ସନ୍ୟାସଂ ସାଂଶକଂ ଚୈବ ସଷଡ୍‌ଜଗ୍ରହମୁଚ୍ୟତେ ।।
ଆରୋହେଽପ୍ୟବରୋହେ ଚ ମନିବର୍ଜଂ ଔଡ଼ବମ୍ ।। ୧୮୨ ।।
ସ ରି ଗ ପ ଧଧ ସ । ସ ଧ ପ ଗ ରି ସ (ରା.ଲ.)

ଭୂପାଳ ରାଗରେ ଆରୋହ ଅବଗ୍ରହରେ ମ ନି ସ୍ୱର ବର୍ଜିତ ହୁଏ। ବାକି ସ୍ୱର ଶୁଦ୍ଧ ହୁଏ। ଜାତି ଔଡ଼ବ। ସମସ୍ତ ସ୍ୱର ୫ ଗୋଟି ଶୁଦ୍ଧଯୋଗେ ଶଙ୍କରାଭରଣ ମେଳରୁ ଉତ୍ପନ୍ନ ରାଗ ଅଟେ। କାହାରି ୨ ମତରେ କଲ୍ୟାଣମେଳର ରାଗ ଅଟେ। ବାଦୀ-ଗାନ୍ଧାର ସଂବାଦୀ- ଧୈବତ ସ୍ୱର ହୁଏ। ଗାଇବା ସମୟର ରାତ୍ର ପ୍ରଥମ ପ୍ରହର ପୂର୍ବାଙ୍ଗପ୍ରଧାନ। ଏହାର ବହୁଳ ପ୍ରଚାର ଦେଖାଯାଏ। ଅନ୍ୟ ମତରେ ଭୂପାଳରାଗରେ- ରେ-ଧା-ଗା ସ୍ୱର କୋମଳ ହୁଏ ଓ ମା-ନି ସ୍ୱର ବର୍ଜିତ ହୁଏ। ବାକି ସ୍ୱର ଶୁଦ୍ଧ ହୁଏ। ଏହା ଭୈରବୀ ମେଳର ରାଗ। ଏଥିରେ ଗା-ବାଦୀ, ଧା ସଂବାଦୀ ହୁଏ। ସମୟ ପ୍ରାତଃକାଳ ଉତ୍ତରାଙ୍ଗପ୍ରଧାନ।

ପ୍ରଥମ ପ୍ରକାର ଶୁଦ୍ଧ ସ୍ୱର ମେଳର-ରାତ୍ର ପ୍ରଥମ ପ୍ରହର

ଆରୋହ-ସାରେ ଗା ପା ଧା ସା

ଅବରୋହ-ସା ଧା ପା ଗା ରେ ସା

ଧରଣ-ଗା ରେ ସା ଧା ସା ରେ ଗା। ପା-ଗା-ଧା ପା, ଗା, ରେ ସା

ଦ୍ୱିତୀୟ ପ୍ରକାର-ଭୌରବୀମେଳର

ଆରୋହ-ସାରେ, ଗା ପା, ଧା, ସା

ଅବରୋହ-ସା-ଧା-ପା-ଗା-ରେ-ସା

ଧରଣ-ଧା ପା ଗା ପା ଗା ରେ ଗା ରେ ସା ଧା ସା

### ରାଗ-ଭୈରବୀ

ସ-ସ୍ୱରାଂଶେ ଗ୍ରହନ୍ୟାସା ଭୈରବୀ ସ୍ୟାଦ୍ଧକୋମଳା।
ରିଣାରୋହେ ତୁ ପନ୍ୟାସା ପଞ୍ଚମେ ନୋଭୟୋରପି
ଷଡ଼ଜେନାଥାବରୋହେ ତୁ ସର୍ବଦା ସୁଖଦାୟିନୀ।। ୧୮୩।।

(ସଂ-ପା- ୩୭୪ ଶ୍ଳୋକ)

ଆଭାତ୍ୟସ୍ୟାଂ ରିଗମଧନୟ କୋମଳା ମୋଽତ୍ରବାଦୀ
ସ ସଂବାଦୀ କ୍ୱଚିଦପି ଧଗୌବାଦୀ ସଂବାଦିନୌଚ।
ପ୍ରାତର୍ଗେୟା ସୁରୁଚିରତରା ସ୍ୱୈରିଣୀ ସର୍ବଗମ୍ୟା
ସମ୍ପୂର୍ଣ୍ଣା ସା ଜନୟତି ସୁଖଂ ଭୈରବୀ ରାଗିଣୀୟମ୍॥ ୧୮୪॥
(କଳ୍ପଦ୍ରୁମାଙ୍କୁରେ)

ଭିନ୍ନଷଡ୍ଜସମୁତ୍ପନ୍ନା ଭୈରବୀ ପରିପୋକ୍‌ଷିତା।
ଧଗ୍ରହାଂଶ ମଧ୍ୟମାନ୍ତ ଗେୟା ମଙ୍ଗଳକର୍ମଣି॥ ୧୮୫॥
(ସଂ ମୁକ୍ତାବଳୀ (ଓଡ଼ିଶା)

ଯତ୍ର ମଧ୍ୟସ୍ୱରୋବାଦୀ ସଂବାଦୀ ଷଡ୍ଜ ଈରିତଃ।
ସ୍ୱୈରିଣୀ ଜାୟତେ ପ୍ରାତର୍ଭୈରବୀ ସର୍ବକୋମଳା॥ ୧୮୬॥
(ଚନ୍ଦ୍ରିକାୟାଂ)

ନଟଭୈରବୀ ରାଗାଖ୍ୟମେଳାଜ୍ଜାତଃ ସୁନାମକଃ।
ଭୈରବୀରାଗ ଇତ୍ୟୁକ୍ତଃ ସନ୍ୟାସଂ ସାଂଶକଗ୍ରହମ୍।
ଆରୋହେ ତୁ ସୁସଂପୂର୍ଣ୍ଣମବରୋହେ ପବର୍ଜିତମ୍॥ ୧୮୭॥
ସ ରି ଗ ମ ପ ଧ ନି ସ ସ ନି ଧ ମ ଗ ରି ସ॥

ଭୈରବୀ ରାଗରେ ରେ-ଗା-ଧା-ନି ସ୍ୱର କୋମଳ ହୁଏ ବାକିସ୍ୱର ଶୁଦ୍ଧ ଲାଗେ ଏହା ସଂପୂର୍ଣ୍ଣଜାତି ବାଦୀ ମଧ୍ୟମ ସଂବାଦୀ ଷଡ୍‌ଜସ୍ୱର ହୁଏ। କେହି କେହି ଧା ବାଦୀ ଗା ସଂବାଦୀ କରି ଗାଇଥାନ୍ତି। ସମୟ ପ୍ରାତଃକାଳ, ଏବଂ ସର୍ବକାଳିକ ଓ ମଙ୍ଗଳ କାର୍ଯ୍ୟରେ ଗାନ କରାଯାଏ। ଉତ୍ତରାଙ୍ଗ; ଆରୋହଣରେ ଶୁଦ୍ଧରେ ଅନେକେ ପ୍ରାୟୋଗ କରିବାର ଦେଖାଯାଏ। ମଧ୍ୟ ରି-ପ ବର୍ଜନ କରି ଔଡ଼ବ ଔଡବ ଜାତିରେ ଏହି ବାଦୀ ସଂବାଦୀ ଅର୍ଥାତ୍

ମ-ବାଦୀ ସ- ସମ୍ବାଦୀରେ ହୁଏ। ଏପରି ଚଳନ ବର୍ତ୍ତମାନ ଦେଖାଯାଏ ନାହିଁ।

ଆରୋହ- ସା, ରେ, ଗା, ମା, ପା, ଧା, ନ ସ
ଅବରୋହ- ସା ନି ଧା ପା ମା ଗା ରେ ସ
ଧରଣ- ମା ଗା ସା ରେ ସା ଧା ନି ସା

ଦ୍ୱିତୀୟ ପ୍ରକାର-

କେବଳ ରେ କୋମଳ ସ୍ୱର ପରିବର୍ତ୍ତେ ଶୁଦ୍ଧ ରେ ପ୍ରୟୋଗରେ ସଂପୂର୍ଣ୍ଣ ଷାଡ଼ବ ଜାତି।
ଆରୋହ- ସାରେ ଗା ମା ପା ଧା ନି ସା
ଅବରୋହ- ସା ନି ଧା ମା ଗା ରେ ସା
ଧରଣ- ମା ଗା ସା ରେ ସା ଧା ନା ସା

ତୃତୀୟ ପ୍ରକାର-
ଆରୋହ- ସ ଗ୍ରା ମ ଧ ନ ସା।
ଅବରୋହ- ସ ନି ଧ ମ ଗ ସା।
ଧରଣ- ସ ସ ଧ ନ ସ ମ, ଗ ମ ଗ ସା।

ଏହା ହିନ୍ଦୁସ୍ଥାନୀ ପ୍ରଚଳିତ ମାଲକୋଶ ରାଗ ସହିତ ସମାନ ଦେଖାଯାଏ।

### ରାଗ-ଭୈରବ

ଭୈରବେ ତୁ ରିପୌ ନଷ୍ଟୌ ଧାଦିମେ ନ୍ୟାସମଧ୍ୟମେ।
ତଦ୍ଗ୍ରୌନ୍ତୌ ଗନିତୀବ୍ରୌ ଚ କୋମଳୋ ଧୈବତଃ ସ୍ମୃତଃ ।। ୧୮୮ ।।
(ସଂ-ପା-୩୭୮ ଶ୍ଳୋ)

ରାଗାଦିର୍ଭୈରବାଖ୍ୟୋ ମୃଦୁରଷଭମଧସ୍ତୀବ୍ରନିଷ୍ଠ ପ୍ରଗୀତେ
ବାଦ୍ୟସ୍ତସ୍ମିନ୍‌ଧୈବତୋଽସୌ ବୃଷଭଇହ ତୁ ସଂବାଦୀ ରୂପୋଽଭିଗୀତଃ।
ଆରୋହେଽଲ୍ପର୍ଷଭତ୍ବଂ କ୍ବଚିଦପି ମୃଦୁନି ପ୍ରାହୁରେକେ ବିକଳ୍ପଂ
ପ୍ରାତଃକାଳେଷୁ ନିତ୍ୟଂ ଜଗତି ସୁମତିଭିଃ ସୁସ୍ବରଂ ଗୀୟତେଽସୌ।୧୮୯॥

(କଳ୍ପଦ୍ରୁମାଙ୍କୁରେ)

ପ୍ରଥମୋ ଭୈରବୋ ରାଗୋ ମୃଦୁମର୍ଷଭଧୈବତଃ।
ବାଦୀ ଧୈବତ ଏବାତ୍ର ସଂବାଦୀ ଋର୍ଷଭୋ ମତଃ॥ ୧୯୦ ॥

(ଚନ୍ଦ୍ରିକାୟାମ୍)

ଧୈବତାଂଶଗ୍ରହନ୍ୟାସଯୁକ୍ତ ସ୍ୟାଲ୍ଲୁବ୍ଧଭୈରବଃ।
ସକମ୍ପମନ୍ଦ୍ରଗାନ୍ଧାରୋ ଜ୍ଞେୟ ସଂମ୍ପୂର୍ଣ୍ଣ ରାଗରାଟ୍।୧୯୧॥

(ସଂ- ମୁକ୍ତାବଳୀ-ଓଡ଼ିଶା)

ଭୈରବ ରାଗରେ ରେ-ଧା କୋମଳ ଓ ବାକିସ୍ବର ଶୁଦ୍ଧ ହୁଏ ଏହା ସମ୍ପୂର୍ଣ୍ଣ ଜାତିରେ ପ୍ରଚଳିତ ଅଛି। ଏଥିରେ ବାଦୀ ଧା ସଂବାଦୀ ରେ ହୁଏ। ଆରୋହରେ ରେ ଅଳ୍ପ ପ୍ରୟୋଗ ହୁଏ। ଏହା ଉତ୍ତରାଙ୍ଗ, ସମୟ ପ୍ରାତଃକାଳ, କୁଶଳ ଗାୟକମାନେ କେତେବେଳେ ଅବରୋହରେ କୋମଳ ନ ସ୍ବର ପ୍ରୟୋଗ କରିଥାନ୍ତି ଏବଂ ଅନ୍ୟପ୍ରକାର ପୁରାତନମତେ ଔଡ଼ବ ଜାତି ଏଥି ରେ ପା, ବର୍ଜିତ ହୁଏ। ବାଦୀ ସା-ସଂବାଦୀ ମା ସ୍ବରରେ ନ୍ୟାସ ହେତୁ ମା ସଂବାଦୀ, ସମୟ ପ୍ରାତଃକାଳ। ଏହାର ଚଳନ ବର୍ତ୍ତମାନ କ୍ବଚିତ ଶୁଣାଯାଏ ସମ୍ପୂର୍ଣ୍ଣ ଜାତିର।

ଆରୋହ- ସା ରେ ଗା ମା ପା ଧା ନି ସା
ଅବରୋହ- ସା ନି ଧା ପା ମା ଗା ରେ ସା
ଧରଣ- ସା ଗା ମା ପା ଧା ପା

ଔଡ଼ବ ଜାତିର
ଆରୋହ-ସା ଗ ମା ଧା ନି ସା
ଅବରୋହ-ସା ନି ଧା ମା ଗା ସା
ଧରଣ-ଧା ନି ସା ଗା ମା ଧା

### ରାଗ- ଭାଟିଆରୀ

ମେଳେ ବା ସଂଚିକାଦ୍ୟେ ପ୍ରଭବତି ରୁଚିରୋ ଭଟ୍ଟହାରୋଽପିରାଗଃ
ସଂପୂର୍ଣ୍ଣୋ ମଧମାଂଶଃ ପରମମଧୁରସମ୍ବାଦୀ ଷଡ୍‌ଜସ୍ୱରୋ ହି।
ମିଶ୍ରା ଯସ୍ମିନ୍ ତୃତୀୟେଽମୀ ପରଜଲଳିତକାଲିଙ୍ଗକାଇଥମୁଚ୍ଚ
ରାତ୍ରେ ଯାମେ ତୃତୀୟେ ସୁକୁଶଳମତିଭିର୍ଗୀୟତେ ମଂଗୁତାନୈଃ ॥ ୧୯୨ ॥
(ରାଗ କଳ୍ପଦ୍ରୁମାଙ୍କୁର)

ମାରୁଆ ବା ପଞ୍ଚମ ମେଳରେ ଭାଟିଆରୀ ରାଗ ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ-ମା-ବାଦୀ-ସା-ସଂବାଦୀ ଉତ୍ତରାଙ୍ଗ। ଗାନ ସମୟ ରାତ୍ରି ତୃତୀୟ ପ୍ରହର।

ଆରୋହ-ମା ରେ ଗା ମା ପା ମା ପା ଧା ସା
ଅବରୋହ-ରେ ନି ଧା ପା ମା ଧା ସା ନି ଧା ପା ମା ପା
ଗା ରେ ସା

ଅଥବା-ସା ଧା ନି ପା ଧା ମା ପା ଗା ରେ ସା
ଧରଣ-ସା ଧା ପା ଧା ମା ପା ଗା ମା ଧା ସା

### ରାଗ-ମାଳଶ୍ରୀ

ରିହୀନା ମାଳବଶ୍ରୀ ସ୍ୟାତ୍ ଶୁଦ୍ଧମେଳ ସ୍ୱରୋଭବା ।
ମଧ୍ୟମାଦିସ୍ୱରୋଦ୍‌ଗ୍ରାହାଧାଂଶ ଯୁକ୍ତାନ୍ୟପା ସ୍ମୃତା ।। ୧୯୩ ।।
(ସଂ. ପା. ୩୬୪ ଶ୍ଳୋକ)

କଲ୍ୟାଣୀ ମେଳକେ ମାନ୍ୟା ମାଳବଶ୍ରୀ ରିଧୋଜ୍‌ଝିତା ।
ସନିପାଶ୍ଚ ମଗୌ ଚୈବ ପଗୌ ସଃ ପ୍ରଥମେ ନିଶି ।। ୧୯୪ ।।
(ସଂ-ପା-ରେ ଉଦ୍ଧୃତ-ସଂ-ମଞ୍ଜରୀ ଶ୍ଳୋକ)

ମାଳବଶ୍ରୀ ବା ମାଳଶ୍ରୀ ରାଗ କଲ୍ୟାଣୀ ମେଳରୁ ଉତ୍ପନ୍ନ ହୁଏ । ଏଥିରେ-ରେ-ଧ-ସ୍ୱର ବର୍ଜିତ ହୁଏ । ଏହା ଔଡବ ଜାତି-ଗ-ସ୍ୱର ବାଦୀ-ନି-ସ୍ୱର ସମ୍ବାଦୀ ପୂର୍ବାଙ୍ଗ । ସମୟ ରାତ୍ରି ପ୍ରଥମ ପ୍ରହର । ପ୍ରଥମ ପ୍ରକାର-

ଏଥିରେ ଗ-ନି-ସ୍ୱର କୋମଳ ବାକିସବୁ ଶୁଦ୍ଧ ହୁଏ । ରେ ବର୍ଜିତ ହୁଏ ଜାତି ଷାଡବ-ଷାଡବ-ବାଦୀ-ସା ଓ ସମ୍ବାଦୀ-ପା-ସ୍ୱର ହୁଏ ପ୍ରାତଃକାଳ । ଯଦି ଧା-ସ୍ୱରକୁ ବାଦୀ କରାଯାଏ ତାର ସଂବାଦୀ ଗା-ସ୍ୱର ହୁଏ । ଏହାର ଚଳନ କ୍ୱଚିତ୍ ଶୁଣାଯାଏ ।

ଆରୋହ-ସ ଗ ମ ପ ମ ପ ଗ ମ ଧ ନ ସ ।
ଅବରୋହ-ସ ନ ଧ ମ ପ ଧ ମ ପ ଗ ମ ଗ ସ
ଧରଣ-ନା ସ ଗ ମ ପ ମ ପ ଗ ମ ଧ ନ ସ
ସ ନ ଧ ମ ପ ଧ ମ ପ ଗ ମ ଗ ସା ।

ଦ୍ଵିତୀୟ ପ୍ରକାର-

ଆରୋହ-ସ-ଗ-ପ ମ ଗ ପ ନ ସା।

ଅବରୋହ-ସ ନ ପ ମ ଗ ପ ଗ ସ॥

ଧରଣ-ସ, ଗପ, ସ ନ ପ ମ ଗ, ପ, ଗ, ସ।

ତୃତୀୟ ପ୍ରକାର-

ଆରୋହ ଷାଡ଼ବ- ସ ନସ ଗପ ଗ ସ ମ ଧ ସା।

ଅବରୋହ ଔଡ଼ବ ସ ନ ପ ଗ ମ ଗ ପ ଗ ସ।

ଧରଣ- ଆରୋହ ଅବରୋହ ପରି।

ଏହି ତୃତୀୟ ପ୍ରକାରର ବାଦୀ-ପ-ସଂବାଦୀ ସ୍ଵର-ସ-ହୁଏ। ସୂର୍ଯ୍ୟାସ୍ତ ସମୟେ ଗାନ ହୁଏ, ଏହା ପୂରବୀ ବା ବରାଡି ମେଳରୁ ଉତ୍ପନ୍ନ ହୁଏ।

## ରାଗ-ମାଳବ

ରିଧୌ ତୁ କୋମଳୌ ଯତ୍ର ଗନୀ ତୀବ୍ରୌଚ ମାଳବେ।
ଷଡ଼ଜାବରୋହଣୋଦ୍‌ଗ୍ରାହେ ସରିନ୍ୟାସାଂଶୋଭିତେ॥ ୧୯୫॥
(ସଂ.ପା. ୪୦୩ ଶ୍ଳୋକ)

ଟଂକାବ୍ରୟ ସମୁଦ୍‌ଭୂତୋ ମାଳବୋଽପି ରିପୋଜ୍‌ଝିତଃ।
ନିଗାଦାଂଶଗ୍ରହନ୍ୟାସୋ ଭୂରି ସଧକମ୍ପିତଃ।
ବୀର ଶୃଙ୍ଗାରଯୋର୍ଗେୟା ଦିନାନ୍ତେ ନିଶି ବା ବୁଧୈଃ॥ ୧୯୬॥
(ଗୀତପ୍ରକାଶ)

ଗୌରୀ ବା ଭୈରବ ବା ମାଳବଗୌଡ଼ା ମେଳରୁ ମାଳବ ରାଗର ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ ବାଦୀ-ରେ ଓ ସଂବାଦୀ

ଧ-ସ୍ୱର ହୁଏ। ସ- ସ୍ୱର ଗ୍ରହ ଅର୍ଥାତ୍ ଗୀତାରମ୍ଭରେ ତାରା-ସ-ରୁ ଆରମ୍ଭ ହୁଏ। ଗାଇବା ସମୟ ଦିବା ଦ୍ୱିତୀୟ ପ୍ରହର। ଏହା ପୂର୍ବାଙ୍ଗ।

ଅନ୍ୟପ୍ରକାର ଏହି ମେଳରେ ରେ-ପା-ସ୍ୱର ବର୍ଜିତରେ ଜାତି ଔଡ଼ବ ଔଡ଼ବ-ନି-ବାଦୀ ଓ ଗ-ସମ୍ବାଦୀ ସ୍ୱର ହୁଏ ଏବଂ ଗ ପ୍ରଚୁର ବ୍ୟବହାର ହୁଏ। ସ-ଓ-ଧ-ସ୍ୱର କମ୍ପିତ ହୁଏ। ସମୟ ଗ୍ରୀଷ୍ମ ଋତୁ ଓ ଦିନ ଶେଷ।

ପ୍ରଥମ ପ୍ରକାର-

ଆରୋହ- ସ ର ଗ ମ ପ ଧ ନ ସ।

ଅବରୋହ- ସ ନ ଧ ପ ମ ଗ ର ସ

ଧରଣ- ସ ସ ନଧପ, ଧନଧପ, ମ, ପପ, ଗମରସ।

ଦ୍ୱିତୀୟ ପ୍ରକାର

ଆରୋହ- ସ ଗ ମ ଧ ନ ସ।

ଅବରୋହ- ସ ନ ଧ ମ, ଗ, ସ।

ଧରଣ- ସ ସ ଧ ନ ସ ଧ ମ

### ରାଗ- ମାରୁଆ

ରାଗୋଽସ୍ମିନ୍ ମାରବାଖ୍ୟେ ଭିଜଗମଧନଯଷ୍ଟିତ୍ରବାଃ ସ୍ୱର୍ମୂର୍ଦ୍ଧୁରିଃ
ବାଦ୍ୟୋଽସ୍ମିନ୍ସ୍ୟାଦ୍ଧି ତାୟୋର୍ଦ୍ଧ୍ୱବମନ୍ତ୍ରଭବତୋ ଲକ୍ଷ୍ୟଯୋଗାନୁରୋଧାତ୍।
ସଂବାଦୀ ଧୈବତୋଽସୌ ଶ୍ରୁଟମିହଗମନଂ ସାଧତେଽତିଶ୍ରମେଣ
ସଙ୍ଗୀତାଭ୍ୟାସଶୀଳୈର୍ନିୟତମବିରତଂ ଗୀୟତେ ସାୟମେବ॥ ୧୯୭॥

(କଳ୍ପଦ୍ରୁମାଙ୍କୁରେ)

ତୀବ୍ରୌ ଗମୌ ଧନୀ ଚୈବ ମୃଦୁରିଷେଵତର୍ଷଭୌ।
ସମ୍ବାଦିବାଦିନୌ ଯତ୍ର ସ ମାରୁଃ ସାୟମୀରିତଃ-॥ ୧୯୮ ॥ (ଚନ୍ଦ୍ରିକାୟାମ୍)

ମାରୁଆ ରାଗ ମାରୁଆ ବା ମଞ୍ଜମ ମେଳରୁ ଉତ୍ପନ୍ନ ହୁଏ। ଏହା ଷାଡ଼ବ ରାଗ -ରେ- କୋମଳ ଓ ମ-ତୀବ୍ର ବା କତୀ ସ୍ୱର ହୁଏ, ବାକୀ ସ୍ୱର ଶୁଦ୍ଧ ହୁଅନ୍ତି-ରେ-ବାଦୀ-ଧା-ସମ୍ବାଦୀ। ପୂର୍ବାଙ୍ଗ, ସୂର୍ଯ୍ୟାସ୍ତ ସମୟେ ଗାନ ହୁଏ। ପା-ବର୍ଜିତ ସ୍ୱର ଆରୋହରେ-ନି-ଦୁର୍ବଳ।

ଆରୋହ- ସା ରେ ଗା ମା ଧା ନିଧା ସା
ଅବରୋହ- ସା ନି ଧା ମା ଗା ରେ ସା
ଧରଣ- ଧା ମା ଗା ରେ-ଗା ମାଗାରେ-ସା, ନି ଧା ମା
ଧା ସା, ରେ, ସା

## ରାଗ-ମୋହନା

ହରିକାମ୍ବୋଜୀମେଳାଚ ସଂଜାତଶ୍ଚ ସୁନାମକଃ।
ରାଗୋ ମୋହନ ଇତ୍ୟୁକ୍ତଃ ସନ୍ୟାଂଶଂ ସାଂଶକଗ୍ରହମ୍।
ଆରୋହେପ୍ୟବରୋହେ ଚ ମନିବର୍ଜଂ ତଥୌଡ଼ବମ୍॥ ୧୯୯ ॥
ସ ରି ଗ ପ ଧ ସା। ସ ଧ ପ ଗ ରି ସ

(ରାଗଲକ୍ଷଣ)

ମୋହନା ରାଗ କାମ୍ବୋଜୀ ବା ଶ୍ରୀରାଗ ମେଳରୁ ଉତ୍ପନ୍ନ ହୁଏ। ଏଥିରେ- ମ-ନି-ସ୍ୱର ବର୍ଜିତ; ଜାତି ଔଡ଼ବ; ଔଡ଼ବ ବାଦୀ- ଗା- ସମ୍ବାଦୀ- ଧା-ସ୍ୱର ହୁଏ। ସର୍ବକାଳେ ଗାନ ହୁଏ, ପୂର୍ବାଙ୍ଗ।

ଆରୋହ-ସ ର ଗ ପ ଧ ସା।
ଅବରୋହ-ସ ଧ ପ ଗ ରି ସ।
ଧରଣ-ଗ ର ସ, ଧ ସ ର ଗ, ପ ଗ,
ଧ ପ ଗ ରି ସ।

## ରାଗ-ମାଳବଗୌଡ଼

**ଅଥ ମାଳବ ଗୌଳେଽସ୍ମିନ୍ ଗୌରୀସ୍ୱରସମୁଦ୍ଭବେ।**
**ତ୍ୟକ୍ତ ଧେ ରି-ସ୍ୱସେଦ୍ ଗ୍ରାହେ ନ ହ୍ୟାରୋହେ ସୁଗ- ସ୍ୱରଃ।**
**ଆରୋହେ ଯାଦ୍ଗିାନ୍ଧାରଃ ପାଦିର୍ମାନ୍ତେ ବିଧୀୟତେ॥ ୨୦୦॥**

(ସଂ-ପା-୪୨୮ ଶ୍ଳୋ)

ଏହାର ଅନ୍ୟ ନାମ ମାଳବ-ଗୌଳ। ଏଥିରେ ରେ-ଧା-କୋମଳ ସ୍ୱର ହୁଏ। ଏହାକୁ ବର୍ତ୍ତମାନ ଗୁଣିମାନେ ଭୈରବ ରାଗର ପୂର୍ବନାମାନ୍ତର ବୋଲି ମାନିଥାନ୍ତି। ଏହା ଦକ୍ଷିଣ ଗ୍ରନ୍ଥରେ ମାୟା ମାଳବ- ଗୌଡ଼ା ନାମରେ ମିଳେ। ଏଥିରେ ଧା-ସ୍ୱର ବର୍ଜ୍ଜିତ ହୁଏ; ଆରୋହରେ-ଗା- ସ୍ୱର ଲାଗେ। ନାହିଁ, ଅବରୋହରେ ଗା-ସ୍ୱର ଲାଗେ ତେଣୁ ଏହା ଔଡ଼ବ ଷଡ଼ବ ଜାତି ଅଟେ ଯଦି-ଗା-ସ୍ୱର ଆରୋହରେ ଲଗାଯାଏ ତେବେ ଷାଡ଼ବ ଜାତି ହୁଏ। ଏହା ବର୍ତ୍ତମାନ ପ୍ରଚଳନ ଅନୁସାରେ ଗୁଣିଗାୟକମାନେ ସ୍ୱଚ୍ଛ-ଧା-ସ୍ୱର ପ୍ରଯୋଗ କରି ଗାନ କରନ୍ତି। ସେହି ଅନୁସାରେ ଏହା ଷାଡ଼ବ ସମ୍ପୂର୍ଣ୍ଣ ଓ ସମ୍ପୂର୍ଣ୍ଣ ଜାତି ଅଟେ। ଏହାର ବାଦୀ-ପା-ଓ ସମ୍ବାଦୀ-ସା-ସ୍ୱର ହୁଏ; ସମୟ ଦିବା ତୃତୀୟ ପ୍ରହର, ଷାଡ଼ବ ସମ୍ପୂର୍ଣ୍ଣ ପ୍ରକାର।

ଆରୋହ-ସା-ରେ-ମା-ପା-ନିଧା ନି ସା
ଆରୋହ-ସା-ନିଧା-ପା-ମା-ଗା-ରେଧାମା-ଗା-ରେ-ସା
ଧରଣ-ରେ-ମା-ପା-ମା-ଗା-ରେ ମା ଗା-ରେ-ସା

### ସମ୍ପୂର୍ଣ୍ଣ ସମ୍ପୂର୍ଣ୍ଣ ପ୍ରକାର

ଆରୋହ-ସା-ରେ ଗା-ମା-ପା-ନିଧା ନିସା
ଅବରୋହ-ସା ନିଁଧା ପା ମା ଗା ରେ ସା
ଧରଣ-ରେ ସା ନ ସା ଗା ମା ପା ମାଗା ରେ ମା ଗାରେ ସା ।

### ରାଗ-ମୁଖାରୀ (ମୁଖାବରୀ)

ଋଷଭଃ କୋମଳୋ ଯତ୍ର ଗାନ୍ଧାରଃ ପର୍ବସଜ୍ଞକଃ ।
ମୁଖାର୍ଯାଂ ଧୈବତୋଦ୍‌ଗ୍ରାହୋ ନିଧୌ ପୂର୍ବାଖ୍ୟକୋମଳୌ ।
ଆରୋହେ ଘ-ନି ହୀନାୟାଂ ନ୍ୟାସାଂଶୌ ଷଡ୍‌ଜ ପଞ୍ଚମୌ ॥ ୨୦୧ ॥
(ସଂ-ପା୦୩୭୩ ଶ୍ଳୋ)

ଅଧିକାରି ଖରହରପ୍ରିୟ ମେଳାଦ୍ ସୁନାମକଃ ।
ମୁଖାରୀ ରାଗ ଉତ୍ପନ୍ନଃ ସନ୍ୟାସ ସାଂଶକଂ ଗ୍ରହମ୍
ନିବର୍ଜ ବକ୍ରମାରୋହେଽପ୍ୟବରୋହେ ସମଗ୍ରକମ୍ ॥ ୨୦୨ ॥
ସ ରି ଗ ରି ମ ପ ଧ ସା । ସ ନି ଧ ପ ମ ଗ ରି ସ
(ରା.ଲ)

ମୁଖାରୀ ରାଗରେ ରେ-ଗା-ଧାନି-ସ୍ୱର କୋମଳ ହୁଏ ବାକି ସ୍ୱର ଶୁଦ୍ଧ ଆରୋହରେ-ଗା-ନି-ସ୍ୱର ବର୍ଜିତ ହୁଏ ଜାତି ଔଡ଼ବ ସମ୍ପୂର୍ଣ୍ଣ- ବାଦୀ-ପା-ସଂବାଦୀ ସା ହୁଏ- । ସମୟ ସର୍ବ

କାଳୀନ ଉତ୍ତରାଙ୍ଗ ଏଥିରେ ଧା-ରେ-ନି ସ୍ୱରକୁ ଶୁଦ୍ଧ ଭାବେ ରାଗର ସୌନ୍ଦର୍ଯ୍ୟ ବୃଦ୍ଧି ହେଲା ଭଳି ପ୍ରୟୋଗ କରାଯାଇ ପାରେ। ଅନ୍ୟ ପ୍ରକାର ଖରହରପ୍ରିୟା ମେଳରେ- ଗା-ନି-କୋମଳ ହୁଏ ବାକି ସବୁ ଶୁଦ୍ଧ ସ୍ୱର ଲାଗେ ଜାତି ଔଡବ ସମ୍ପୂର୍ଣ୍ଣ-ସା-ବାଦୀ-ପା-ସଂବାଦୀ ହୁଏ ସବୁ ସମୟେ ଗାନ ହୁଏ।

ଅରୋହରେ-ଗା-ନି-ବାଦୀ-ପା-ସଂବାଦୀ ହୁଏ ସବୁ ସମୟେ ଗାନ ହୁଏ। ଆରୋହରେ- ଗା-ନି-ବର୍ଜ୍ୟ ହୁଏ ଅବରୋହରେ କୋମଳ-ଧା। କୁଶଳ ଗାୟକମାନେ ପ୍ରୟୋଗ କରିଥାନ୍ତି।

ପ୍ରଥମ ପ୍ରକାର-

ଆରୋହ- ସା, ରେ ମା, ପା, ଧା, ସା,

ଅବରୋହ- ସା ନି ଧା, ପା, ମା, ଗା, ରେ, ସା

ଧରଣ- ସା ରେ ମା, ପା ଧା ମା ପା ସା

ଦ୍ୱିତୀୟ ପ୍ରକାର-

ଆରୋହ- ସା ରେ ମା ପା ଧା ସା

ଅବରୋହ- ସା, ନି, ଧା, ପା-ମା-ଗା, ରୋସା

ଧରଣ- ସା, ରେ, ମା-ପା, ଧା-ମା-ପା ସା

## ରାଗ-ମଙ୍ଗଳ- (ମଙ୍ଗଳକୌଶିକ)

କୌଶିକ୍ୟଂ ବୋଟ୍ଟରାଗେ ବା ମଙ୍ଗଳଂ ମଙ୍ଗଳୈଃ ପଦୈଃ।
ବିଳମ୍ବିତଲୟେ ଗେୟଂ ମଙ୍ଗଳଂ ଛନ୍ଦସାଽଥବା।। ୨୦୩।।
(ସାଂ ରତ୍ନାକର ଶ୍ଳୋ ୩୦୫ ପ୍ରବନ୍ଧାଧ୍ୟାୟ)

ମାୟା ମାଳବ ମେଳାଢ ଜାତା ମଙ୍ଗଳକୌଶିକୀ।
ସନ୍ୟାଶ ସାଂଶକଂ ଚୈବ ଷଡ଼ଜଗ୍ରହମୁଚ୍ୟତେ।
ରିବର୍ଜ୍ଜଂ ବକ୍ରମାରୋହେଽପ୍ୟବରୋହେ ସମଗ୍ରକମ୍।। ୨୦୪।।
ସ ଗ ମ ପ ଧ ନ ସା ସ ନ ଧ ପ ମ ପ ରି ସା।।

(ରାଗ ଲକ୍ଷଣ)

ସଙ୍ଗୀତ ରତ୍ନାକର ଗ୍ରନ୍ଥରେ କୌଶିକୀ ବା ମଙ୍ଗଳଙ୍କୁ ଅଥବା ମଙ୍ଗଳ ଛନ୍ଦ ବିଳମ୍ବିତ ଲୟରେ ଗାଇବ, ଏହାର ନାମ ମଙ୍ଗଳ କୌଶିକ ବୋଲି ରାଗଲକ୍ଷଣ ଗ୍ରନ୍ଥରେ ଲେଖା ଅଛି। ତାହା ଉପରେ ଲେଖାଯାଇ ଅଛି ଏବଂ ବେଙ୍ଗଲ ସଙ୍ଗୀତ ପାଠଶାଳାର ପ୍ରଧାନ ଅଧକ୍ଷ କ୍ଷେତ୍ର ମୋହନ ଗୋସ୍ୱାମୀଙ୍କର ସଙ୍ଗୀତସାର ଗ୍ରନ୍ଥରେ ପୃ ୩୦୬ ଷାରେ ମଙ୍ଗଳ ରାଗର ଆଳାପ ସ୍ୱରଲିପି ଲେଖା ଅନୁସାରେ ମଙ୍ଗଳ ରାଗ ବା ମଙ୍ଗଳ କୌଶିକରାଗ। ମାୟା ମାଳବଗୌଡ଼ା ବା ଭୈରବ ବା ଗୌରୀ ମେଳରୁ ଉତ୍ପନ୍ନ ହୁଏ। ଏହା ବାଦୀ ଷଡ୍‌ଜ ସଂବାଦୀ ମଧ-ବା-ପଞ୍ଚମ ସ୍ୱର ହୁଏ। ଏହା ଉତ୍ତରାଙ୍ଗ ପ୍ରାଧାନ, ସମୟ ପ୍ରାତଃକାଳ।-

ପ୍ରଥମ ପ୍ରକାର

ଆରୋହରେ-ରେ-ବର୍ଜିତ ଅନୁସାରେ ଷାଡବ ସମ୍ପୂର୍ଣ୍ଣ ଜାତି

ଆରୋହ-ସ ମ ଗ ମ ପ ଧ ନି ସ

ଅବରୋହ-ସ ନ ଧ ପ ମ ଗ ର ସ।

ଧରଣ-ଆରୋହ ଅବରୋହ ପରି

ଦ୍ୱିତୀୟ ପ୍ରକାର-

ସଙ୍ଗୀତସାର- ଅନୁସାରେ ସମ୍ପୂର୍ଣ୍ଣ ଜାତି

ଆରୋହରେ-ର-ଦୁର୍ବଳ କ୍ୱଚିତ୍ କୋମଳ ନ-ବ୍ୟବହାର ହୁଏ

କିନ୍ତୁ କୋମଳ- ନ- ପ୍ରାୟୋଗ ନ କରି ମଧ୍ୟ ଗାନ କରାଯିବ।

ଆରୋହ-ସ ର ଗ ମ ପ ଧ ନ ସ

ଅବରୋହ-ସ ନ ଧ ପ ମ ଗ ର ସ

ଧରଣ-ଗ, ମ ମ ମ ନ ଧ ପ ମ, ସ ଗ ର ଗ

ମ ଗ ର ସ

## ରାଗ- ମେଘମଲ୍ଲାର (ମଲ୍ଲାର)

ଷଡ଼୍‌ଜାଦି ମୂର୍ଚ୍ଛନୋପେତଃ ଷଡ଼୍‌ଜତ୍ରୟସମନ୍ୱିତଃ।

ଗ-ନି-ହୀନୋଽପି ମଲ୍ଲାରୋ ବର୍ଷାସୁ ସୁଖଦାୟକଃ ।।୨୦୫।।

(ସ-ପା°-୩୭୦ ଶ୍ଳୋକ)

ମଲ୍ଲାର ଏବ ମେଘଃ କିଂଚିନ୍ନଦୁନି ପ୍ରବେଶତୋ ଭବତି।

ରଷଭ୍ୟାଂ ଦୋଲନମତ୍ୟତ୍ର ଭବେଦ୍ ଭେଦଧୀ ଜନନ ହେତୁଃ ।।୨୦୬।।

(ରାଗକଳ୍ପଦ୍ରୁମାଙ୍କୁରେ)

ମେଘମଲ୍ଲାର ରାଗ ଷଡ଼୍‌ଜ ମୂର୍ଚ୍ଛନାରୁ ଓ ଧନାଶ୍ରୀ ବା କାଫୀ ମେଳରୁ ଉତ୍ପନ୍ନ ହୁଏ ଏଥିରେ ସମସ୍ତ ସ୍ୱର ଶୁଦ୍ଧ ହୁଏ। ଓ-ଗା-ନି ସ୍ୱରହୀନ ବା ବର୍ଜିତ ହୁଏ ଜାତି ଓଡ଼ବ-ଓଡବ-ବାଦୀ-ମ-ସମ୍ବାଦୀ- ସା ସ୍ୱର ହୁଏ। ଏହାକୁ ମେଘ ଓ ମଲ୍ଲାର କହନ୍ତି; ସମୟ ବର୍ଷା କାଳ ଓ ସର୍ବଦା, ଅସମୟେ

ରାଗ ଗାନ ହେଲେ ଯେ ଦୋଷ ହୁଏ ଏ ରାଗଗାଇଲେ ତାହା ନଷ୍ଟ ହୁଏ। ଏହା ପୂର୍ବାଙ୍ଗ ପ୍ରଧାନ ଏହା ତିନି ଷଡ୍ଜ ସହିତ ହୁଏ ଅର୍ଥାତ୍ ମନ୍ଦ୍ର ଷଡ୍ଜଠାରୁ ତାର ଷଡ୍ଜ ପର୍ଯ୍ୟନ୍ତ ପୂରା ଦୁଇ ସପ୍ତକରେ ରୂପ ପ୍ରକାଶ କରେ।

ପ୍ରଥମ ପ୍ରକାର-
ଆରୋହ-ସ ର ମ ପ ଧ ସ
ଅବରୋହ-ସ ଧ ପ ମ ର ସ
ଧରଣ-ମ ପ ଧ ସ, ଧ ପ ମ, ସ ର ମ,

ଦ୍ୱିତୀୟ ପ୍ରକାର-
ଆରୋହଣ-ସ, ର ମ, ର ସ, ର, ମ ର ପ, ମ
ପ, ନ ପ, ନ ସ,
ଅବରୋହ-ସ, ନ ପ, ମ ପ, ର ମ, ର, ସ,
ଧରଣ-ର ମ, ର ସ, ନ ପ, ସ, ର, ମ ର,
ପ, ର ମ, ର, ସ,

## ରାଗ-ରାମକରୀ

ରିକୋମଳା ଗତୀବ୍ରା ଯା ମତୀବ୍ରତରସଂଯୁତା।
ଧକୋମଳା ନିତୀବ୍ରା ଚ ଖ୍ୟାତା ରାମକରୀତି ସା।
ଆରୋହେ ମନିବର୍ଜ୍ଜା ସ୍ୟାଦ୍ ପାଂଶାଧୈବତମୂର୍ଚ୍ଛନା ॥୨୦୭॥
ସଂ-ପା-୪୦୧ ଶ୍ଳୋ

ରାମକରୀ ରାଗ ଗୌରୀ ବା ଭୈରବ ମେଳରୁ ଉତ୍ପନ୍ନ ହୁଏ। ଏହି ରାଗରେ- ରେ-ଧା-ସ୍ୱର କୋମଳ ହୁଏ। ମଧମ

ତୀବ୍ର-ବା କଡି ମା- ଓ- ଗା-ନି ତୀବ୍ର ବା ଶୁଦ୍ଧ ହୁଅନ୍ତି। ଆରୋହ- ମା-ନି-ବର୍ଜିତ ହୁଏ, ଜାତି ଔଡ଼ବ ସମ୍ପୂର୍ଣ୍ଣ ବାଦୀ-ପା-ସଂବାଦୀ-ସା-ହୁଏ। ଗାଇବା ସମୟ ପ୍ରାତଃକାଳ। ଉତ୍ତରାଙ୍ଗ ପ୍ରଧାନ ଧୈବତ ମୂର୍ଚ୍ଛନା ଅନୁସାରେ ଶୁଦ୍ଧ-ମ-ପ୍ରୟୋଗ ହୁଏ। ଅର୍ଥାତ୍ ଦୁଇଗୋଟି- ମ-ବ୍ୟବହାର ହୁଏ

ଆରୋହ-ସାରେ ଗା ପା ଧା ସା
ଅବରୋହ-ସା ନି ଧା ପା ମା ଗ ମ ର ଗ ର ସ
ଧରଣ-ଧ ସା ର ଗ ପା ମା ଗା ମ ର ଗ ର ସ

## ରାଗ-ରାଜବିଜେ (ରାଜଧାନୀ)

କଲ୍ୟାଣମେଳସମ୍ଭୂତା ରାଜଧାନୀ ସୁଖପ୍ରଦା।
ଆରୋହଣେ ଧ ହୀନାସ୍ୟାଦ୍ ବହୁକମ୍ପମନୋହରା।
ଆମ୍ରେଡ଼ିତସ୍ୱରୈର୍ଯୁକ୍ତାଽବରୋହେଽପି ଗ ବର୍ଜିତା ।। ୨୦୮ ।।
(ସଂ-ପା-୪୮୬ ଶ୍ଳୋକ)

ବଙ୍ଗ ଦେଶର ନାରାଜୋଲାଧିପତିଙ୍କର ସଙ୍ଗୀତାଚାର୍ଯ୍ୟ ଶ୍ରୀରାମ ପ୍ରସନ୍ନ ବନ୍ଦୋପାଧ୍ୟାୟଙ୍କ ପାଣୀତ ସଂଙ୍ଗୀତ ମଞ୍ଜରୀର ସ୍ୱର ଲିପି ଅନୁସାରେ ରାଜ ବିଜୟ ରାଗ କାଫୀ ବା ଧନାଶ୍ରୀ ମେଳରୁ ଉତ୍ପନ୍ନ ହୁଏ। ଏଥିରେ ଆରୋହରେ-ଧ-ସ୍ୱର ବର୍ଜିତ ହୁଏ ଜାତି ଷାଡ଼ବ ସମ୍ପୂର୍ଣ୍ଣ ଗା. ବାଦୀ ନ ସମ୍ବାଦୀ ହୁଏ। ସନ୍ଧ୍ୟାରେ ଗାନ ହୁଏ ଶୁଦ୍ଧ ନି-ସ୍ୱର ମଧ୍ୟ ବ୍ୟବହାର ହୁଏ ଏହା ଉତ୍ତରାଙ୍ଗ। ସଙ୍ଗୀତ ମଞ୍ଜରୀରେ ସଂସ୍କୃତ ଶ୍ଳୋକ ଦିଆଯାଇ ନାହିଁ।

ସଙ୍ଗୀତ ପାରିଜାତ ଅନୁସାରେ ରାଜଧାନୀ ବା ରାଜବିଜେ

ରାଗ କଲ୍ୟାଣ ମେଳରୁ ଉତ୍ପନ୍ନ ହୁଏ। ଆରୋହରେ- ଧ- ଓ ଅବରୋହରେ- ଗ-ସ୍ୱର ବର୍ଜିତ ହୁଏ। ଜାତି ଷାଡବ ଷାଡବ ଏଥିରେ ପ୍ରାୟ ଅଧିକ ସ୍ୱର କମ୍ପନ ଆମ୍ରେଡିତ ବା ଦୋହରି ପ୍ରୟୋଗ ହୁଏ। ଯଥା- ସାସା, ରିରି, ଗଗ ଇତ୍ୟାଦି ଏହିପରି ବ୍ୟବହାର ହେଲେ ମନୋହର ହୁଏ। ଏହା ପୂର୍ବାଙ୍ଗ ବାଦୀ-ରେ ସଂବାଦୀ-ପ ସ୍ୱର ହୁଏ। ସବୁ ସମୟରେ ଗାନ ହୁଏ।

ରାଜଧାନୀ ରାଗର ନାମ କାଳକ୍ରମେ ରାଜାବିଜେ ନାମରେ ପ୍ରଚାର ହୋଇଅଛି। ତାହାକୁ ମଧ୍ୟ ଓଡ଼ିଶାରେ ରାଜବିଜେ କହନ୍ତି। ପ୍ରଥମ ପ୍ରକାର କଲ୍ୟାଣମେଳ ଅନୁସାରେ।

ଆରୋହ- ସ ର ଗ ମ ପ ନି ସ<br>
ଅବରୋହ- ସ ନି ଧ ପ ମ ର ସ<br>
ଧରଣ- ନ ର ଗ ମ ପ ର ଗ ର ସ।

ଦ୍ୱିତୀୟ ପ୍ରକାର- ଧନାଶ୍ରୀ ମେଳ ଅନୁସାରେ<br>
ଆରୋହ- ସ ରି ଗଗ ମ ପନି ସ<br>
ଅବରୋହ- ସ ନି ଧ ପ ମ ଗ ର ସ।<br>
ଧରଣ- ଗ ଗ ର ସ ନି ସ ଗ ମ ପ ନି ନି<br>
ଧ ପ ଗ ଗ ରି ସ।

## ରାଗ- ରେଗୁପ୍ତ

ଏହାକୁ ରାଗଲକ୍ଷଣରେ ରେଗୁପ୍ତି ଓ ଲକ୍ଷ୍ୟ ସଙ୍ଗୀତରେ ଓ ରାଗକଳ୍ପଦ୍ରୁମାଙ୍କୁରରେ 'ରେବା' ଗୀତପ୍ରକାଶରେ ରେବଗୁପ୍ତ ନାମକରଣ ହୋଇଅଛି।

ରେବଗୁପ୍ତସ୍ତଥାଷଡ୍‌ଜ ମଧ୍ୟମଗର୍ଭକୋଦ୍ଭବଃ।
ରିଗ୍ରହଂଶୋ ମଧମାନ୍ତୋ ରସେ ବୀରେ ନିୟୁଜ୍ୟତେ ॥ ୨୦୯ ॥
(ଗୀତାପ୍ରକାଶ ଉକ୍ତଳ)

ଗୌରୀ ମେଳ ସମୁଦ୍‌ଭୂତା ଷଡ୍‌ଜୋଦ୍‌ଗ୍ରାହେଣ ମଣ୍ଡିତା।
ମନି ତ୍ୟକ୍ତା ସଦା ରେବା ଗ-ପାଦ୍ୟିଯମନ୍ଦ୍ର ସ୍ୱରା ॥୨୧୦॥
(ସଂ-ପା-୪୧୮ ଶ୍ଳୋକ)

ମାୟାମାଳବଗୌଳାଚ ମେଳାଜ୍ଜାତଃ ସୁନାମକଃ।
ରେବଗୁପ୍ତିଷ ରାଗଷ ଧନ୍ୟାସଂ ଧାଂଶକଗ୍ରହମ୍।
ଆରୋହେଽପ୍ୟବରୋହେ ଚ ମନିବର୍ଜ୍ଜଂ ଷଥୌଡ଼ବମ୍॥୨୧୧॥
ସ ରି ଗ ପ ଧ ସା ସ ଧ ପ ଗ ରି ସ
(ରା:ଲ:)

ପୂର୍ବୀମେଳସମୁତ୍ପନ୍ନା ଖ୍ୟାତା ରେବା ଗୁଣିପ୍ରିୟା।
ଆରୋହେ ଚାବରୋହେଽପି ମନିହୀନୈବ ସଂମତା ॥ ୨୧୨ ॥
ପଂଶିକା ଗାଂଶିକା ବାସୌ ସାୟଂ ଗେୟା ବୁଧୈର୍ମତା।
ବର୍ଜନେ ନିମୟୋଃ ସିଦ୍ଧା ଗପୟୋଃ ସଙ୍ଗତିଃ ସ୍ୱୟମ୍ ॥୨୧୩॥
ଉତ୍ତରାଙ୍ଗପ୍ରଧାନତ୍ୱେ ବିଭାସାଙ୍ଗ ଭବେଦ୍ ସ୍ଫୁଟମ୍।
ନିମୟୋର୍ଯପରିତ୍ୟାଗସ୍ତଦ୍ରାଗୋଽପି ସୁସଂମତଃ ॥୨୧୪॥
(ଶ୍ରୀ.ଲ.ସିଂ)

ପୂର୍ବୀ ମେଳେଭାତି ବର୍ଜ୍ୟା ମନିଭ୍ୟାଂ
ଷଡ୍‌ଜାଂଶା ବା ଗାଂଶିକା କୈଶ୍ଚିଦୁକ୍ତା ॥
ସଂବାଦ୍ୟାସ୍ୟାଂ ପଞ୍ଚମଃ ସଂପ୍ରଦିଷ୍ଟଃ
ସେୟଂ ରେବା ସାୟମେବାଭିଗୀତା ॥ ୨୧୫ ॥
(ରାଗକଳ୍ପଦ୍ରୁମାଙ୍କୁରେ)

ରେଗୁପ୍ତରାଗ ବରାଡ଼ି ବା ପୂର୍ବୀ ମେଳରୁ ଉତ୍ପନ୍ନ ହୁଏ। ମାତ୍ର ମ-ନି-ସ୍ୱର ବର୍ଜ୍ୟ ହେତୁ ଗୌରୀ ଓ ମାୟା ମାଳବଗୌଡ଼ ବା ଭୈରବ ମେଳରୁ ଉତ୍ପନ୍ନ ବୋଲି ଶାସ୍ତ୍ରକାର କହିଅଛନ୍ତି ଏଥିରେ ମ-ନି ସ୍ୱର ବର୍ଜ୍ୟ ହୁଏ। ଜାତି ଔଡ଼ବ ଔଡ଼ବ, ଏହାରି ବାଦୀ.ରେ ଓ ସଂବାଦୀ ଧ-ସ୍ୱର ହୁଏ ଓ କାହାରି ମତରେ ଗାନ୍ଧାର ବାଦୀ ହୋଇଥାଏ। ଉତ୍କଳରେ-ରେ-ବାଦୀ ପ୍ରସିଦ୍ଧ ଅଟେ ଏହା ପୂର୍ବାଙ୍ଗ ସମୟ ସାୟଂ କାଳ।

ଆରୋହ-ସ ର ଗ ପ ଧ ସ
ଅବରୋହ-ସ ଧ ପ ଗ ର ସ
ଧରଣ-ର ର ସ ର ଗ ପ ଗ ର ସ ସ ର
ଗ ପ ଧ ପ ଧ ପ ସ ର ସ ଧ ପ ଗ ପ ଗ ର ସ

## ରାଗ-ଲଳିତ

ଯା ଗୌରୀରାଗସମ୍ଭୂତା ଲଳିତା ପଞ୍ଚମୋଜ୍‌ଝିତା
ସାଂଶୋଦ୍‌ଗ୍ରାହ ତଥା ମାନ୍ତା ଗୀତାନ୍ତେ ସା ସୁଶୋଭନା ।। ୨୧୬ ।।
(ସଂ-ପା-୪୧୩ ଶ୍ଲୋକ)

ଗୀତାନ୍ତେଽସୌ ଭବତି ଲଳିତା କୋମଳେନର୍ଷଭେଣ
ଯୁକ୍ତସ୍ତୀବ୍ରୈସ୍ତ୍ରିଗମଧନିଭିଃ କୋମଳେନାପିମେନ।
ମାଂଶଃଷଡ୍‌ଜେଽନ୍ତ୍ରତୁ ସହଚର ପଞ୍ଚମୌ ବର୍ଜ୍ୟତେସ୍ମିନ୍
ସୂର୍ଯ୍ୟେ ଯାମେ ନିଶି ସୁମତିଭିର୍ଗୀୟତେ ମଙ୍ଗଳାର୍ହଃ ।। ୨୧୭ ।।
(କଳ୍ପଦ୍ରୁମାନଙ୍କୁରେ)

ମୃଦୁରିର୍ନି ଧଗାନ୍ତୀବ୍ରମଦ୍ୱୟଂ ପଞ୍ଚମୋ ନହି।
ସମ-ସଂବାଦୀ ବାଦୀ ଚ ଗୀତାନ୍ତେ ଲଳିତଃ ଶୁଭଃ।।୨୧୮।।
(ଚନ୍ଦ୍ରିକାୟାମ୍)

ଲଳିତ ରାଗରେ-ରେ କୋମଳ ଗ ମ ଧ ତୀବ୍ର ବା ଶୁଦ୍ଧ ହୁଏ ଓ ଶୁଦ୍ଧ ମ ସ୍ୱର ଅର୍ଥାତ୍ ଦୁଇ ଗୋଟି-ମ ବ୍ୟବହାର ହୁଏ ଏବଂ ପଞ୍ଚମ ବର୍ଜିତ ସ୍ୱର ଅଟେ। ବାଦୀ ଶୁଦ୍ଧ ମଧ୍ୟମ ଓ ସଂବାଦୀ ଷଡ୍‌ଜ ହୁଏ। ଜାତି ଷାଡ଼ବ ଏହା ଉତ୍ତରାଙ୍ଗପ୍ରଧାନ। ଗାନ ସମୟ ରାତ୍ର ଶେଷ ପ୍ରହର। ଏଥିରେ ଧାମା ଧାମା ମା ଓ ନି ରେ ଗାମା ମାମା ମା ମାଗ ଏହି ପରି ପ୍ରୟୋଗ ହୁଏ। ଗ୍ରନ୍ଥରେ କୋମଳ ଧା ପ୍ରୟୋଗ ଲେଖାଅଛି; କିନ୍ତୁ କୋମଳ ପରିବର୍ତ୍ତେ ଶୁଦ୍ଧ ଧା ବ୍ୟବହାର ବହୁତ ପ୍ରଚଳିତ ଅଛି।
ଆରୋହ-ନ ରେ ଗା ମା ମା ମା ଗା ମାଧା ସା
ଅବରୋହ-ରେ ନିଧା ମାଧା ମାମା ଗା ରେସା
ଧରଣ-ନି ରେ ଗାମା ଧାମା ଧାମା ମା ଗା

### ରାଗ ଶାବେରୀ

ଶାବେରୀ ତୀବ୍ରଗାନ୍ଧାରା ଧୈବତୋଦ୍‌ଗ୍ରାହସମ୍ଭବା।
ମଧମାଂଶା ନିହୀନା ଚାରୋହଣେ ଗନିବର୍ଜିତ।।୨୧୯।।
(ସଂପ, ୪୪୩- ଶ୍ଳୋକ)

ମାୟାମାଳାବଗୌଳାଚ୍ଚ ମେଳାଜାତଃ ସୁନାମକଃ।
ଶାବେରୀ ରାଗ ଇତ୍ୟୁକ୍ତଃ ସନ୍ୟାସଂ ସାଂଶକଗ୍ରହମ୍।
ଆରୋହେ ଗନିବର୍ଜ୍ଜଂ ଚାପ୍ୟବରୋହେ ସମଗ୍ରକମ୍।।୨୨୦।।
ସରିମପ ସା ସ ନି ଧ ପ ମ ଗ ରି ସ।।
(ରା.ଲ.)

ଶାବେରୀ ରାଗର ନାମ ଉତ୍କଳର ଗୀତପ୍ରକାଶରେ ଶାବରୀ ଲେଖାଅଛି। ଉତ୍କଳରେ ଶବର ଗୋଟିଏ ଆଦିମ ଜାତି। ଶବର ଶବ୍ଦରୁ ସମ୍ପନ୍ନ ହେତୁ ଶାବେରୀ ରାଗ ନାମ ଧାରଣ କରିଅଛି। ଏହା ଧୈବତ ମୂର୍ଚ୍ଛନା ସମ୍ପନ୍ନ ଉତ୍ତରାୟତାରୁ ଜାତ ହୁଏ। ଉତ୍ତରାୟତା ମୂର୍ଚ୍ଛନା ସ୍ୱର ଯଥା- ସ ରି ଗ ମ ମ ଧ ନି। ଏହି ମୂର୍ଚ୍ଛନାରେ ଗାନ୍ଧାର ତୀବ୍ର ବା ଶୁଦ୍ଧ ଗ-ହେବ ଆରୋହଣରେ ଗ-ନି ସ୍ୱର ଓ ଅବରୋହଣରେ ନି-ସ୍ୱରର ବର୍ଜନ ହେବ ଏବଂ ଗୀତପ୍ରକାଶ ଅନୁସାରେ-ପ-ହୀନ ହୁଏ ଉତ୍ତରାୟତା ମୂର୍ଚ୍ଛନାରେ ପ-ହୀନ ହୁଏ; କିନ୍ତୁ ତୀବ୍ର ମଧମ-ପ-ସ୍ୱରରେ ପରିଣତ ହୋଇଥାଏ, ଏହି ଅନୁସାରେ ଶବେରୀ ରାଗ ଗୌରୀ ବା ମାୟା ମାଳବଗୌଳ ମେଳରୁ ଉତ୍ପନ୍ନ ହୁଏ। ଜାତି ଔଡ଼ବ ଷାଡ଼ବ ଓ ଔଡ଼ବ ସମ୍ପୂର୍ଣ୍ଣ ଦୁଇ ପ୍ରକାର ହୁଏ। ବାଦୀ-ମ-ଓ ସଂବାଦୀ-ସ-ସ୍ୱର ହୁଏ। କରୁଣରସ ରାଗ। ସର୍ବକାଳେ ଗାନ ହୁଏ ଏହା ପୂର୍ବାଙ୍ଗ।

ପ୍ରଥମ ପ୍ରକାର- ଔଡ଼ବ ଷାଡବ ଅନୁସାରେ।

ଆରୋହ-ସ ରି ମ ପ ଧ ସ

ଅବରୋହ-ସ ଧ ପ ମ ଗ ରି ସ

ଧରଣ- ସ ରି ମମ ଗ ରି ସ ରି ଗ

ରି ସ ଧ ଧ ସ

ଦ୍ୱିତୀୟ ପ୍ରକାର- ଔଡ଼ବ ସମ୍ପୂର୍ଣ୍ଣ ଅନୁସାରେ।

ଆରୋହ-ସ ରି ମ ପ ଧ ସ।

ଅବରୋହ-ସ ନ ଧ ପ ମ ଗ ର ସ।

ଧରଣ-ପ୍ରଥମ ପ୍ରକାର ପରି।

## ରାଗ- ଶଙ୍କରାଭରଣ

**ଶଙ୍କରାଭରଣେ ପୌଣ୍ଡୋ ଗନୀ ତୀବ୍ରୌ ତୁ ସାଦିମେ ।**
**ଗନ୍ୟାସେ ମଧମାଂଶେ ଢାଲୁକମ୍ପ ସୁଶୋଭିତେ ।।୨୨୧ ।।**

(ସଂ.ପା ୪୦୬ ଶ୍ଳୋକ)

**ଶଙ୍କରାଭରଣେ ରାଗଃ ସମ୍ପୂର୍ଣ୍ଣଃ ସାଂଶକଃ ସ୍ମୃତଃ ।**
**ଷଡ୍‌ଜନ୍ୟାସ ଗ୍ରହଃ ସୋଽୟଂ ସାମନ୍ତ ଛାୟମାଶ୍ରିତଃ ।। ୨୨୨ ।।**

(ସ୍ୱ. ମେ.ଳ)

ଶଙ୍କରାଭରଣ ରାଗ ବେଲାବଳୀ ବା ନଟମେଳରୁ ଉତ୍ପନ୍ନ ହୁଏ । ଜାତି ସମ୍ପୂର୍ଣ୍ଣ ସମ୍ପୂର୍ଣ୍ଣ-ମ-ସ୍ୱର ବାଦୀ ଓ ସ-ସ୍ୱର ସଂବାଦୀ ହୁଏ । ଏଥିରେ କେହି କେହି ଗ-ସ୍ୱରକୁ ଓ କେହି ସ-ସ୍ୱରକୁ ନ୍ୟାସ ମାନିଥାଚି, ଏହା ଢାଲୁକମ୍ପ ଗମକଦ୍ୱାରା ଶୋଭିତ ହୁଏ, ଉତ୍ତରାଂଗ-ଗାନ ସମୟ ପ୍ରାତଃକାଳ ।

ଆରୋହ- ସ ରି ଧ ମ ପଧ ନି ସ

ଅବରୋହ- ସ ନି ଧ ମ ଗ ରି ସ

ଧରଣ- ଗ ମ ପନି ସ ନି ଧ ପ ମ ଗ
ରି ସ ପ ରି ସ ।

## ରାଗ-ସୁରଟ

**ଶ୍ରୀରାଗମେଳସମ୍ଭୂତା ସୋରଠିରିସ୍ୱରୋଦ୍‌ଗ୍ରହା ।**
**ପଞ୍ଚମାଦ୍ଭୂମିତୋପେତାରିପର୍ଯ୍ୟନ୍ତଂ ପୁନସ୍ତଥା ।। ୨୨୩ ।।**

(ସଂ.ପା ୪୭୨ ଶ୍ଳୋକ)

**ସହୁମିତା ମପର୍ଯ୍ୟନ୍ତମଗ୍ରସ୍ୱସ୍ଥାନ ଷଡ୍‌ଜକା ।**
**ତଥୈବ ପଞ୍ଚମୋପେତା ରିସ୍ୱର ଚ୍ୟବିତୋଦିତା ।। ୨୨୪ ।।**

(ସଂ.ପା. ୪୭୩ ଶ୍ଳୋକ)

**ଖଂବାଜ ମେଳନୋତ୍ପନ୍ନା ସୋରଟୀ ଶାସ୍ତ୍ରସଂମତା ।**
**ଆରୋହେ ଗଧବର୍ଜ୍ୟଂ ସ୍ୟାଦବରୋହେ ସମଗ୍ରକମ୍ ।। ୨୨୫ ।।**
**ଋଷଭଃ ସଂମତୋ ବାଦୀ ସଂବାଦୀ ଧୈବତୋ ଭବେତ୍ ।**
**ଗାନଂ ସୁସମ୍ମତଂ ଚାସ୍ୟା ଦ୍ୱିତୀୟପ୍ରହରେ ନିଶି ।। ୨୨୬ ।।**
**ଯଦା ତୁ ରିଗଧାଃ ସ୍ୱରା ନିଗଦିତାଶ୍ଚ ତୀବ୍ରାସ୍ତଥା**
**ମୃଦୁର୍ଭବତି ମଧମୋ ବିଳସତୋ ନିଷାଦାବୁଭୌ ।**
**ରିଧୌ ବିଳସତୋ ମିଥୋ ରୁଚିରବାଦିସଂବାଦିନୌ**
**ଧଗୌ ଯଦି ନ ରୋହଣେ ନିଶି ତଦା ମାତା ସୋରଟୀ ।। ୨୨୭ ।।**
**(ରାଗ-କଳ୍ପଦ୍ରୁମାଙ୍କୁରେ)**

ସୁରାଟ ରାଗ ଶ୍ରୀରାଗ ବା ଖମ୍ବାଜ ମେଳରୁ ଉତ୍ପନ୍ନ ହୁଏ । ଏହା ଔଡ଼ବ ସମ୍ପୂର୍ଣ୍ଣ ରେ-ସ୍ୱର ବାଦୀ ଧ-ସ୍ୱର ସଂବାଦୀ ହୁଏ, ଆରୋହରେ -ଗ-ଧ-ସ୍ୱର ବର୍ଜ୍ୟ ହୁଏ । ଦୁଇ-ନି-ସ୍ୱର ପ୍ରୟୋଗ ହୁଏ । ଅବରୋହରେ -ଗ-ଧ-ସ୍ୱର ବର୍ଜ୍ୟ ହୁଏ । ଅବରୋହରେ-ଗ-ସ୍ୱର ଗୁପ୍ତ ହୋଇଥାଏ । ଆଗନ୍ତୁକ ଭାବେ (ଗ) ଦିଆଯାଇପାରେ । ଏହା ଗାଇବା ସମୟ ରାତ୍ରି ଦ୍ୱିତୀୟ ପ୍ରହର । ଏହା ପୂର୍ବାଙ୍ଗ ।

ଆରୋହ- ସା ରେ ମା ପା ନି ସ
ଅବରୋହ- ସ ନି ଧାପା ଧା ମା ରେ ସା
ଧରଣ- ରେ ମା ପା ନି ସ ନି ଧା ମାପା ଧାମର ।

## ରାଗ- ସୌରାଷ୍ଟ୍ର

**ଭୈରବେ ମେଳନେ ଖ୍ୟାତୋ ରାଗଃ ସୌରାଷ୍ଟ୍ରଭୈରବଃ ।**
**ମିଶ୍ରମେଳେ ସମୁଦ୍ଭୋଽସୌ ପ୍ରାତର୍ଗେୟୋ ନିଦୁର୍ବଳଃ ।। ୨୨୮ ।।**

ମଧ୍ୟମଃ ସଂମତୋ ବାଦୀ ସଂବାଦୀ ଷଡ୍‌ଜ ଈରତଃ।
ସଂପୂର୍ଣ୍ଣା ଗୀୟତେ ଲକ୍ଷ୍ୟେ ଧୈବତଦ୍ୱୟସଂଯୁତଃ ।। ୨୨୯ ।।
ପ୍ରାରୋହେ ତୀବ୍ରଧୋଯୁକ୍ତଃ କୋମଳଃସ୍ୟାଦ୍ ବିଲୋମକେ।
ବିଚିତ୍ରଂ ରୂପକଂ ଚୈତଲ୍ଲକ୍ଷ୍ୟେ ବୈମଲ୍ୟକାରଣମ୍ ।। ୨୩୦ ।।
(ଲ-ସଂ)

ସୌରାଷ୍ଟ୍ରୋଽୟଂ ଭୈରବସୈ୍ୟବମେଳେ
ମାଂଶଃପୂର୍ଣ୍ଣୋ ଧୈବତାହ୍ୱଂ ଦ୍ୱିଯୋଗୀ।
ଆରୋହେ ସ୍ୟାତ୍ତୀବ୍ରଧୋଽନ୍ୟୋଽବରୋହେ।
ପ୍ରାତର୍ଗେୟୋ ଦୁର୍ବଳୋଽସ୍ମିନିଷାଦଃ ।। ୨୩୧ ।।

ମାୟା ମାଳବ ମେଳାଚ୍ଚ ରାଗଃ ସୌରାଷ୍ଟ୍ର ନାମକ।
ସନ୍ୟାସ ସାଂଶକଂ ଚୈବ ଷଡ୍‌ଜଗ୍ରହମୁଚ୍ୟତେ।
ଆରୋହେତୁ ସୁସଂପୂର୍ଣ୍ଣମବରୋହେ ତଥୈବଚ ।। ୨୩୨ ।।
ସ ରି ଗ ମ ପ ଧ ନ ସା। ସ ନ ଧ
ପ ମ ଗ ରି ସ ।। (ରା-ଲ)

ସୌରାଷ୍ଟ୍ର ରାଗ ଗୌରୀ ବା ଭୈରବ ମେଳରୁ ଉପ୍ନ୍ନ ହୁଏ। ସଂପୂର୍ଣ୍ଣଜାତି -ସା-ବାଦୀ। ମା- ସଂବାଦୀ। ଉତ୍ତରାଙ୍ଗ- ପ୍ରାତଃକାଳେ ଗାନ ହୁଏ। ନି-ଦୁର୍ବଳ ହୁଏ। ଏଥିରେ ଦୁଇ ଗୋଟି ଧ-ସ୍ୱର ବ୍ୟବହାର ହୁଏ।

ଆରୋହ- ସ ମ ଗ ମ ଧ ମ ଧ ସ
ଅବରୋହ- ସ ନ ଧ ପ ମ ଗ ର ସ
ଧରଣ- ଗ ଗ ମ ଗ ର, ସ ଗ ଗ ର ସା। ଗ ମ
ଧ, ମ ଧ ସ,

ନ ଧ ମ, ଧମ, ମଧ, ନସ, ମଗ ମଗର ସା
ମ, ମ,
ପ, ପ, ଧ ଧ ନ ଧ ପ ସ, ଧ, ପ,
ମ ଗ ମ ଗ ର ର ସ

ଦ୍ୱିତୀୟ ପ୍ରକାର- ଏହା ସଂପୂର୍ଣ୍ଣ ଜାତି ସା-ବାଦୀ ମା-ସମ୍ବାଦୀ।
ଉତ୍ତରାଙ୍ଗ ସମୟ ପ୍ରାତଃକାଳ।
ଆରୋହ- ସ ରି ଗ ମ ପ ଧ ନି ସ
ଅବରୋହ- ସ ନି ଧ ପ ଗ ରି ସ
ଧରଣ- ମ ମ ଗ ମ ଗ ର ସ, ମ ମ ପ ପ,
ସ ସ ଧ ପ ମ ଗ ମଗ ରିରି ସା।

## ରାଗ-ସାହାନା

ହରପ୍ରିୟାହ୍ୱୟେ ମେଳେ ସାହାନାଜନୂରୀରିତ।
ରୂପମାଧୁନିକଂ ଚୈତତ୍‌ସଂପୂର୍ଣ୍ଣ ଗୁଣିସଂମତମ୍।। ୨୩୩।।
ପଞ୍ଚମଃ ସଂମତୋ ବାଦୀ ଷଡ୍‌ଜଃ ସ୍ୟାନ୍ମନ୍ତ୍ରିତୁଲ୍ୟକଃ।
ଗାନମଭିମତଂ ଚାସ୍ୟା ରାତ୍ର୍ୟାଂ ତୃତୀୟଯାମକେ।। ୨୩୪ ।।

(ଲ.ସଂ)

ସାହାନା ରାଗୋଽୟଂ ମୃଦୁଗମନିକ ସ୍ତୀବ୍ରଧରିକୋ
ନଧଃ ସ୍ୟାଦାରୋହେ ବିଳସତି ବିଲୋମେତୁ ସ ମନାକ୍।
ସମାମ୍ନାତଃ ପାଂଶୋ ଭବତି ସହକାରୀ ତୁ ସ ଇହ
ସ୍ବରଜ୍ଞାନୈର୍ଗୀତୋ ଜନୟତି ନିଶିଥେ ମୁଦମସୌ।। ୨୩୫ ।।

(ରା-କ-ଦ୍ରୁ)

ସାହାନା ରାଗରେ ଗା-ନି-କୋମଳସ୍ୱର। ଏହା ହରପ୍ରିୟା ବା କାଫୀ ବା ଧନାଶ୍ରୀ ମେଳରୁ ଉତ୍ପନ୍ନ ହୁଏ। ଜାତି ଷାଡ଼ବ ସଂପୂର୍ଣ୍ଣ ପ-ବାଦୀ, ସା-ସମ୍ବାଦୀ। ଉତ୍ତରାଙ୍ଗ ଆରୋହେ- ଧା-ବର୍ଜିତ। ମଧ୍ୟ ରାତ୍ରରେ ଗାନ ହୁଏ। ଏହାକୁ ମଧ୍ୟ ସାହାନା କାନଡ଼ା କହନ୍ତି ଏହା କାନଡ଼ା ଜାତୀୟ।

ଆରୋହ-ନି, ସା ରେଗା, ମାରେ, ସା-ନି
ଧାପା, ଧାମା, ମାପା, ସା
ଅବରୋହ-ନି ଧା ନି ପା-ମାପା,
ଗାମା, ପାଗା, ମା, ଗେସା
ଧରଣ- ନି ଧ ପ, ମପ, ସାନ୍ନିପ ମପଗ, ମ, ରେସା।

ରାଗ-ସୋମ

ଷଡ଼ଜେ ଷାଡ଼ଜୀଭବଃ ଷଡ଼ଜଗ୍ରହାଂଶାନ୍ତୋନିଗୋତ୍କଟଃ।
ସୋମରାଗଃ ସ୍ମୃତୋ ବୀରେ ତାର ମଧସ୍ଥ ମଧମଃ।। ୨୩୬।।
(ସ-ର-ରା-ବି-ଧାୟ ୧୬୭ ଶ୍ଲୋ)।

ଷାଡ଼୍ଜୀ ଜାତି ସମୁତ୍ପନ୍ନାଃ ଷଡ଼୍ଜନ୍ୟାସଗ୍ରହାଂଶକଂ।
ନିତାରଃ ପରିବାହନେ୍ୟା ରସେ ବୀରେ ନିଯୋଜ୍ୟତେ
ମେଘଚ୍ଛାୟାଗମେ ଗେୟଃ ସୋମରାଗମତଃ ସତାମ୍।। ୨୩୭।।
(ଗୀତପ୍ରକାଶ ଉତ୍କଳ ଗ୍ରନ୍ଥ)

ବକୁଳାଭରଣାନ୍ମେଳାତ୍ ସଂଜାତଃ ସୋମନାମକଃ।
ସନ୍ନ୍ୟାସ ସାଂଶକଂ ଚୈବ ଷଡ଼୍ଜଗ୍ରହମୁଚ୍ୟତେ।
ଆରୋହେ ତୁ ଗବର୍ଜଂ ଚାପ୍ୟବରୋହେ ପର୍ଜିତମ୍।। ୨୩୮।।
ସରି ମପା ଧନି ସା। ସ ନି ଧ ମ ଗରିସା।।
(ଗ-ଲ)

ରାଗଲକ୍ଷଣ ଅନୁସାରେ ବକୁଳାଭରଣ ମେଳ ଯଥା- ସରି ଗ ମ ପ ଧ ନ ସ ଏହି ସ୍ୱର ସଂଯୋଗରେ ହୁଏ। ଏହି ମେଳରୁ ସୋମ ରାଗ ଉତ୍ପନ୍ନ ହୋଇଅଛି। କିନ୍ତୁ ସଙ୍ଗୀତରତ୍ନାକର ଓ ଓଡ଼ିଶାର ଗୀତପ୍ରକାଶ ଅନୁସାରେ ସୋମରାଗ ଷଡ୍‌ଜ ମୂର୍ଚ୍ଛନାରୁ ଉତ୍ପନ୍ନ ହୁଏ। ଷଡ୍‌ଜ ମୂର୍ଚ୍ଛନାର ସ୍ୱର ପ୍ରାଚୀନ ପାରିଜାତ ଅନୁସାରେ-ସ ରି ଗ ମ ମ ପ ଧ ନି ସ ଧାନାଶ୍ରୀ କାଫି-ମେଳ ହୁଏ ତେଣୁ ଉତ୍କଳ ପ୍ରଚଳିତ ଓ ରତ୍ନାକର ଅନୁସାରେ ମେଳ ଷଡ୍‌ଜ ମୂର୍ଚ୍ଛନା, ସଙ୍ଗୀତ ପାରିଜାତ ଅନୁସାରେ ସ୍ୱର ସ୍ଥିର ରଖାଯାଇଅଛି। ରାଗଲକ୍ଷଣ ଅନୁସାରେ ଆରୋହ, ଅବରୋହ ଅନୁକ୍ରମେ ଓଡ଼ିଶା ପ୍ରଚଳିତମତେ ସୋମରାଗ ଧନାଶ୍ରୀ ଓ କାଫି ମେଳରୁ ଉତ୍ପନ୍ନ ହୁଏ। ବାଦୀ-ସା-ସଂବାଦୀ-ମ-ସ୍ୱର ହୁଏ। ଜାତି ଷାଡବ ଷାଡବ। ସର୍ବ କାଳେ ଓ ମେଘାଚ୍ଛନ୍ନରେ ବୀରରସରେ ଗାନ ହୁଏ। ଆରୋହରେ ଗ, ଅବରୋହରେ ପ ବର୍ଜିତ ହୁଏ। ଉତ୍ତରାଙ୍ଗରେ - ଓ-ପ-ସ୍ୱର ଦୁର୍ବଳ ହୁଏ।

ଆରୋହ- ସ ରି ମ ପ ଧ ନି ସ

ଅବରୋହ- ସ ନି ଧ ମ ଗ ରି ସ।

ଧରଣ- ରି ସ ଧ ନ ସ ମ, ର ମ ପ ଧ ମ ପ ଗ ରି ସ।

ମ ଧ ନି ସ ନ ଧ ମ ପ ଧ ମ ପ ଗ ର ସ।

## ରାଗ-ଶୋକବରାଡି

ଅଥ ଶୋକବରାଡ୍ୟାନ୍ତୁ ରିଗୌ କୋମଳପୂର୍ବକୌ।
ମଶ୍ଚତୀବ୍ରତରଃ ପ୍ରୋକ୍ତଃ କୋମଳୋ ଧୈବତଃ ସ୍ମୃତଃ।। ୨୩୯ ।।

ନ୍ୟାସାଂଶୌଚ ସନୀ ଯତ୍ର ମୂର୍ଚ୍ଛନା ଚ ଗପୂର୍ବିକା ।।
........ଦ୍ୱିତୀୟ ପ୍ରହରୋତ୍ତରମ୍ ।। ୨୪୦ ।।
(ସଂ-ପା-ଶ୍ଳୋ ୩୯୬)

ଶୋକବରାଡି ରାଗରେ ରେ-ଗା-ଧା-କୋମଳ ଓ ମା-ସ୍ୱର ତୀବ୍ର ବା କଡ଼ା ହୁଏ; ବାକି ସ୍ୱର ଶୁଦ୍ଧ ହୁଏ। ଜାତି ସମ୍ପୂର୍ଣ୍ଣ ଦ୍ୱିତୀୟ ପ୍ରହର ଶେଷ। ଏଥିରେ କୋମଳ ନି ଓ ଶୁଦ୍ଧ-ନି ସ୍ୱର ବ୍ୟବହାର ହୁଏ। କୋମଳ ନି ଅପେକ୍ଷା ଶୁଦ୍ଧ ନି ପ୍ରୟୋଗ ମୁଖ୍ୟ।

ଆରୋହ- ସା, ରେ-ଗା-ମା-ପା-ଧା-ନି-ସା
ଅବରୋହ- ସା-ନି-ଧା-ପା-ମା-ଗା-ରେ-ସା
ଧରଣ- ଆରୋହ ଅବରୋହ ଅନୁସାରେ।

## ରାଗ-ଶ୍ୟାମକଲ୍ୟାଣ

ଶ୍ୟାମରାଗୋ ଭବତି ବିଳସନ୍ମଦ୍ୱୟଶ୍ଚାନ୍ୟ ତୀବ୍ରଃ
ପ୍ରାରୋହେ ଧୈବତ ବିରହିତଃ ଷଡ୍‌ଜବାଦୀ ତଥାସ୍ମିନ୍।
ସଂବାଦୀ ଚ ପ୍ରକୃତିରୁଚିରେ ମଧ୍ୟମଃ ସଂପ୍ରଦିଷ୍ଟଃ
ପୂର୍ବେ ଯାମେ ସରସମତିର୍ଭିର୍ଗୀୟତେଽସୌ ନିଶାୟାମ୍ ।। ୨୪୧ ।।
(ରାଗକଳ୍ପଦ୍ରୁମାଙ୍କୁରେ)

ମରିନିସୌ ରିମୌପଶ୍ଚ ଧପୌ ମରି ନିସୌ ତଥା।
ପୂର୍ବଯାମେ ଭବେଦ୍‌ରାତ୍ର୍ୟାଂ ଶ୍ୟାମାଖ୍ୟୋ ରିପଶୋଭନଃ ।। ୨୪୨ ।।
(ଅଭିନବ ରାଗମଞ୍ଜରୀ)

କଲ୍ୟାଣ ରାଗରୁ ଶ୍ୟାମକଲ୍ୟାଣ ରାଗ ଉତ୍ପନ୍ନ ହୁଏ। ଏଥିରେ ଦୁଇ ମଧ୍ୟମ ପ୍ରୟୋଗ ହୁଏ। ଆରୋହରେ ଧୈବତ ସ୍ୱର ବର୍ଜିତ ହୁଏ। ବାଦୀ-ଷଡ୍‌ଜ, ସଂବାଦୀ ମଧ୍ୟମ। କେହି କେହି ଋଷଭ ସ୍ୱରକୁ ବାଦୀ କରିଥାନ୍ତି; କିନ୍ତୁ ଏହା ଅଧିକ ପ୍ରଚାର ନୁହେଁ। ନି ଏବଂ ଗା-ସ୍ୱର ଅଳ୍ପ ହୁଏ; କିନ୍ତୁ ନିଷାଦ ସ୍ୱର ସ୍ପଷ୍ଟ ଓ ଜୋର ହୁଏ। ରେ -ମା ସଙ୍ଗତି ରାଗବାଚକରେ ମହ୍ଲାର ରାଗର ଆଭାସ ଆସେ। ଜାତି ଷାଡବ ସମ୍ପୂର୍ଣ୍ଣ-ପୂର୍ଣ୍ଣାଙ୍ଗ ସମୟ- ରାତ୍ରି ପ୍ରଥମ ପ୍ରହର।

ଆରୋହ- ନ ସା ରେ ମା ରେ ମା ପ, ନି ସା

ଅବରୋହ- ସା ନି ଧାପା ମା ପା ଗା ମା ରେ ନ ସା।

ଧରଣ- ମାରେ, ନସା, ରେ, ମାପା, ମାରେ, ନସା।

## ରାଗ-ଶ୍ରୀରାଗ

ରିଦ୍ରୟୋଦ୍‌ଗ୍ରାହସଂଯୁକ୍ତଃ ଷଡ୍‌ଜୋଦ୍‌ଗ୍ରାହୋଽଥବା ମତଃ।
ଶ୍ରୀରାଗସ୍ତୀବ୍ର ଗାନ୍ଧାର ଆରୋହେ ଗ-ଧ-ବର୍ଜିତଃ ।। ୨୪୩ ।।

(ସଂ-ପା-୪୪୫ଶ୍ଳୋକ)

ଅ-ନ୍ୟାସଗ୍ରହାଂଶୋଽୟଂ ଶ୍ରୀରାଗ ସ୍ୱଳ୍ପପଞ୍ଚମଃ।
ଷଡ୍‌ଜୀଜାତିସମୁତ୍ପନ୍ନଃ ଷଡ୍‌ଜଗ୍ରାମ ସମାଶ୍ରିତଃ।
ସାୟଂ ଗେୟୋ ରସେ ବୀରେ ଶୃଙ୍ଗାରେ ଚେତି ନିଶ୍ଚିତଃ ।। ୨୪୪ ।।

(ଗୀତପ୍ରକାଶ)

ଶ୍ରୀରାଗଃ କଥିତୋଽତ୍ର ତୀବ୍ରନିଗମୋଽସ୍ମିନ୍ କୋମଳୌ ଧର୍ଷଭୌ
ବାଦ୍ୟତ୍ରର୍ଷଭ ଈରିତୋ ମଧୁରସମ୍ୱାଦୀ ମତଃ ପଞ୍ଚମଃ।

**ଆରୋହେ ତୁ ଧଗୌ ନ ସଂସ୍ପୃଶତି ସମ୍ପୂର୍ଣ୍ଣୋଽବରୋହେ ସଦା**
**ଗୀତୋଽବଶ୍ୟମସୌ ଦିନାନ୍ତ୍ୟସମୟେ ସଂଭୁକ୍ତି ମୁକ୍ତିପ୍ରଦଃ ॥ ୨୪୫ ॥**
**(କଳ୍ପଦ୍ରୁମାଙ୍କୁରେ)**

ଶ୍ରୀରାଗ ନିଜେ ଗୋଟିଏ ମେଳ ତାହା ଖମ୍ବାଜ ବା କାଫୋଜି ମେଳ ଅନ୍ତର୍ଗତ ଅଟେ। ଏଥିରେ କେବଳ ନି-ସ୍ୱର କୋମଳ ହୁଏ; ବାକି ସମସ୍ତ ସ୍ୱର ଶୁଦ୍ଧ ହୁଅନ୍ତି। ଆରୋହରେ ଗ-ଧ-ସ୍ୱର ବର୍ଜ୍ୟ। ଜାତି ଔଡବ ସମ୍ପୂର୍ଣ୍ଣ-ବାଦୀ-ସା-ସଂବାଦୀ-ପା-ସ୍ୱର ହୁଏ। ପୂର୍ବାଙ୍ଗ ଦିବା ଶେଷ ପ୍ରହର ସମୟ। ବୀର ଶୃଙ୍ଗାର ରସରେ ଗାନ ହୁଏ। ଆରୋହରେ ସ୍ୱଳ୍ପ ଶୁଦ୍ଧ-ନି ପ୍ରୟୋଗ ହେଲେ ସୌନ୍ଦର୍ଯ୍ୟ ବୃଦ୍ଧି ହୁଏ।

ପ୍ରଥମ ପ୍ରକାର
ଆରୋହ- ସ-ରି, ମପ, ନି-ସ
ଅବରୋହ- ସ-ନି, ଧ-ପ, ମ, ଗ, ରିସ
ଧରଣ- ରି. ରିରି. ପ-ମଗରି. ଗରିସ ନି ପ ନି. ସ

ଦ୍ୱିତୀୟ ପ୍ରକାର-
ଏଥିରେ ରି-ଧ-ସ୍ୱର କୋମଳ ଓ ମ-ସ୍ୱର ତୀବ୍ର ହୁଏ।
ଆରୋହରେ ଗ-ଧ-ସ୍ୱର ବର୍ଜିତ ଓ ଅପରୋହରେ ସମ୍ପୂର୍ଣ୍ଣ ହୁଏ।

ବାଦୀ-ରେ-ସଂବାଦୀ-ପା-ସ୍ୱର ହୁଏ। ଜାତି ଔଡ଼ବ ସମ୍ପୂର୍ଣ୍ଣ। ସମୟ ସୂର୍ଯ୍ୟାସ୍ତ-ପୂର୍ବାଙ୍ଗ। ଏହା ବରାଡି ବା ପୂର୍ବୀ ମେଳରୁ ଉତ୍ପନ୍ନ ହୁଏ। ଏହାକୁ ଉତ୍କଳରେ 'କରୁଣାଶ୍ରୀ' କୁହାଯାଇଅଛି।

ଆରୋହ-ସ, ରି, ରି, ସ, ରି, ମ, ପ, ନି, ସ
ଅବରୋହ-ସ, ନ, ଧ, ପ, ମଗର ଗ, ରି, ରି, ରି, ସ
ଧରଣ-ସ, ରି, ରି, ରି, ସ, ମ, ଗ, ରି ଗରିସ

## ରାଗ-ସାରଙ୍ଗ

ଅତି ତୀବ୍ରତମୋ ଗଃ ସ୍ୟାନ୍ମସ୍ତୁ ତୀବ୍ରତରୋ ମତଃ।
ଧସ୍ତୁ ତୀବ୍ରତରୋ ନିଃ ସ୍ୟାତ୍ତୀବ୍ରଃ ଷଡ୍ଜାଦି ମୂର୍ଚ୍ଛନେ।
ସନ୍ୟାସେ ମଧମାଂଶେ ଚ ରାଗୋ ସାରଙ୍ଗସଂଜ୍ଞକ।। ୨୪୬।।
(ସଂ-ପା- ୪୦୨ ଶ୍ଳୋ)

ଶୁଦ୍ଧସାରଙ୍ଗରାଗଃ ସ୍ୟାଦ୍ ଗାନ୍ଧାରସ୍ୱରବର୍ଜିତଃ।
ଋଷଭାଂଶଃ ଷାଡବଶ୍ଚ ସଂବାଦୀ ପଞ୍ଚମସ୍ୱରଃ।। ୨୪୭।।
ସଙ୍ଗୀତ ଶାସ୍ତ୍ର ମଧୁରଃ ସ୍ୟାଦ୍ ପଞ୍ଚମନିଷାଦୟୋଃ।
ମଧ୍ୟାହ୍ନସମୟେ ଚାସ୍ୟ ଗାନଂ ପରମରକ୍ତିଦମ୍।। ୨୪୮।।
ଋଷଭୋ ଧୈବତଶ୍ଚୈବ ତୀବ୍ରୌ ଦ୍ୱୌ ସମୁଦୀରିତୌ।
ମଧମଶ୍ଚ ନିଷାଦଶ୍ଚ କୋମଳୌ ଦ୍ୱୌ ସମୀରିତୌ।। ୨୪୯।।
(ସଂ ସୁଧାକରେ)

ସରଙ୍ଗ ରାଗ ଷଡ୍‌ଜ ମୂର୍ଚ୍ଛନା ଅର୍ଥାତ୍ ଧନାଶ୍ରୀ ବା କାଫି ମେଳରୁ ଉତ୍ପନ୍ନ ହୁଏ। ଗ ଓ ଧ ସ୍ୱର କ୍ରମରେ ତୀବ୍ରତମ ଓ ତୀବ୍ରତର ଯୋଗେ ଗ-ସ୍ୱର ଲୋପ ହୋଇ ମ-ସ୍ୱର ଶୁଦ୍ଧ ଓ ଧ-ସ୍ୱର ଲୋପ ହୋଇ ନି କୋମଳ ସ୍ୱର ହୋଇଅଛି ଓ ତୀବ୍ର- ମ ଓ ତୀବ୍ର ନି ବା ଶୁଦ୍ଧ ନି-ସ୍ୱର ପ୍ରୟୋଗ ହୁଏ; ଅର୍ଥାତ୍ ଦୁଇ ନିଷାଦ ଓ ଦୁଇ ମଧମସ୍ୱର ବ୍ୟବହାର ହୁଏ।

ଜାତି ଓଡ଼ବ ଓଡ଼ବ। ଏହାକୁ ସଙ୍ଗୀତସୁଧାକରରେ ଶୁଦ୍ଧ ସାରଙ୍ଗ ବୋଲି ବର୍ଣ୍ଣନା କରାଯାଇଅଛି। ଏହାର ବାଦୀ ସ୍ୱର-ରେ ସମ୍ବାଦୀ-ପା-ସ୍ୱର ହଏ। ମଧ-ମା ବାଦୀ ଓ ତାରା -ସ- ସଂବାଦୀ କରାଯାଇଥାଏ। ଗାନ ସମୟ ଦିବା ଦ୍ୱିତୀୟ ପ୍ରହର ଏହା ପୂର୍ବାଙ୍ଗ।

ଆରୋହ-ସ-ରି-ମ-ରି ପ ମ ପ ନି ସ।
ଅବରୋହ-ସ ନି ପ ମ ପ ମ ରି ରି ପ ମ ରି ସ।
ଧରଣ-ନି ପ ନ ସ ରି ମ ରି ସ।

ରାଗ- ସିନ୍ଧୁଡା (ସୈନ୍ଧବୀ)

ଶୁଦ୍ଧମେଳୋଦ୍ଭବପୂର୍ଣ୍ଣୋ ଧୈବତାଦିକମୂର୍ଚ୍ଛନା।
ଆରୋହେ ଗନିବର୍ଜ ସ୍ୟାଦ୍ରାଗସୈନ୍ଧବନାମକ।
ଆମ୍ରେଡ଼ିତ ସ୍ୱରୈର୍ଯୁକ୍ତଃ ସ୍ଫୁରିତେନ ଚ ଶୋଭିତଃ ।। ୨୫୦ ।।
(ସଂ ପା-୩୫୭ ଶ୍ଳୋ)

ସୈନ୍ଧବୀ ପଞ୍ଚମାକ୍ରାନ୍ତା ଗ୍ରହାଂଶନ୍ୟାସପଞ୍ଚମୀ।
ମଧ୍ୟାହ୍ନାଦୂର୍ଦ୍ଧ୍ୱତୋ ଗେୟା ଶୃଙ୍ଗାରେ କରୁଣେଽପିଚ।। ୨୫୧ ।।
(ଗୀତପ୍ରକାଶ- ଉତ୍କଳ)

କାଫିମେଳସମୁତ୍ପନ୍ନା ସୈନ୍ଧବୀ କୀର୍ତ୍ତ୍ୟତେ ଜନେ।
ଆରୋହଣେ ଗନି ତ୍ୟକ୍ତା ସମ୍ପୂର୍ଣ୍ଣାପ୍ୟବରୋହଣେ।। ୨୫୨ ।।
ସ ପୟୋରେବ ସଂବାଦଃ କୈଶ୍ଚିଦ୍‌ସରିଧୟୋର୍ମତଃ।
ଗାନମସ୍ୟା ସମାଦିଷ୍ଟଂ ପ୍ରାୟଶଃ ସାର୍ବକାଳିକମ୍।। ୨୫୩।।
(ଲଂସଂ)

ସିନ୍ଧୁଡ଼ା ରାଗମେଳ ଅର୍ଥାତ୍ ଧନାଶ୍ରୀ ବା କାଫି ମେଳରୁ ଉତ୍ପନ୍ନ ହୁଏ। ଏହାକୁ ଧୈବତ ସ୍ୱରର ଆଦି ମୂର୍ଚ୍ଛନା କହନ୍ତି। ଆରୋହରେ ଗ-ନି- ସ୍ୱର ବର୍ଜିତ ହୁଏ; ଅବରୋହ ସମ୍ପୂର୍ଣ୍ଣ ହୁଏ। ଜାତି ଔଡବ ସମ୍ପୂର୍ଣ୍ଣ ବାଦୀ- ପ ଓ ସ-ସ୍ୱର ସଂବାଦୀ ହୁଏ। କେହି କେହି ରି-ଧ-ସ୍ୱରକୁ ବାଦୀ ସମ୍ବାଦୀ କରିଥାନ୍ତି। ଉତ୍ତରାଙ୍ଗ ଶୃଙ୍ଗାର ଓ କରୁଣ ରସର ରାଗ ଆମ୍ରେଡିତ ସ୍ୱର, ଅର୍ଥାତ୍ କୌଣସି ସ୍ୱରକୁ ଦୁଇବାର ଉଚ୍ଚାରଣ କରିବାରେ ଦ୍ୱିତୀୟ ସ୍ୱରକୁ ଆମ୍ରେଡିତ କହନ୍ତି; ଏପରି ପ୍ରୟୋଗ ହୁଏ। ଗୀତପ୍ରକାଶ ମତରେ ପଞ୍ଚମ ମୂର୍ଚ୍ଛନା ଜାତ ହେତୁ ଏଥିରେ କୋମଳ ଓ ମଧ ଅଳ୍ପ ପ୍ରୟୋଗ ହୁଏ। ଗାଇବା ସମୟ ମଧ୍ୟାହ୍ନ ପର ଓ ସର୍ବକାଳୀନ। ଅବରୋହ ସମୟେ ସ ନି ଧ ପ ଧ ମପଧ ମପ ଗରିସ ଏହିପରି କୋମଳ-ଧ ବ୍ୟବହାର ହୁଏ।

ଆରୋହ- ସ ରି ମ ପ ଧ ସ
ଅବରୋହ- ସ ନି ଧ ପ ମ ଗ ରି ସ।
ଧରଣ- ମ ପ ଧ ସ ର ଗ ରି ସ ନି ଧ ପ ଧ
ମ ପ ଧ

### ରାଗ-ହୁସେନୀ

କାଫିମେଳେ ମତା ତଜ୍ଜ୍ଞୈ ହୁସେନୀ ରାଗିଣୀ ସ୍ୱୟମ୍।
ସାକ୍ଷାଦ୍ ଯାବନିକଂ ରୂପଂ ପ୍ରସିଦ୍ଧଂ ଲକ୍ଷ୍ୟବର୍ତ୍ତିନି॥ ୨୫୪॥

ତାରଷଡ୍‌ଜସ୍ୟ ବୈଚିତ୍ର୍ୟଂ ବହୁଷ୍ୱେତେଷୁ ଲକ୍ଷିତମ୍।
ପ୍ରାମାଣ୍ୟଂ ଗଧୟୋର୍ଯୁକ୍ତଂ କେବଳଂ ଭେଦଦର୍ଶକମ୍॥ ୨୫୫॥
(ଲକ୍ଷ୍ୟସଙ୍ଗୀତ-ପ୍ରଥମ ପ୍ରକାଶ-୧୭,୨୦ ଶ୍ଲୋକ)

ଅଧିକାରୀ ଖରହରପ୍ରିୟମେଳାଦ୍ ସୁନାମକଃ।
ହୁସେନୀ ରାଗ ଉତ୍ୟୁକ୍ତ ସନ୍ୟାସଂ ସାଂଶକଗ୍ରହମ୍॥
ଆରୋହେ ତୁ ସୁସମ୍ପୂର୍ଣ୍ଣମବରୋହେ ନିର୍ବର୍ଜିତମ୍॥ ୨୫୬॥
ସ ରି ଗ ମ ପ ଧ ନି ସା। ସ ଧ ପ ମ ଗ ରି ସ॥
(ଗ.ଚ)

ହୋସେନୀ ରାଗ ଖରହରପ୍ରିୟା ବା କାଫି ବା ଧନାଶ୍ରୀ ମେଳରୁ ଉତ୍ପନ୍ନ ହୁଏ। ଜାତି ସମ୍ପୂର୍ଣ୍ଣ ଓ ରାଗ ଲକ୍ଷଣ ଅନୁସାରେ ସମ୍ପୂର୍ଣ୍ଣ ଷାଡ଼ବ ହୁଏ। ଏହାର ସ-ବାଦୀ ପ-ସଂବାଦୀ। ଉତ୍ତରାଂଗ ସମୟ ମଧ୍ୟରାତ୍ର ଅବରୋହରେ ଗ-ସ୍ୱର ବକ୍ରଭାବେ ଲାଗି ଗ ମ ରେ ସା ହୁଏ।

ପ୍ରଥମ ପ୍ରକାର-
ଆରୋହ-ନି ସ ଗ ମ ରି ସ, ଗ୍ର ମ ପ ଧ ନ ସ
ଅବରୋହ-ସ ନ ନ ମ ପ ଗ ମ ରି ସ
ଧରଣ-ନ ସ ଗ ମ ରି ସ

ଦ୍ୱିତୀୟ ପ୍ରକାର- ରାଗ ଲକ୍ଷଣ ଅନୁସାରେ-
ଆରୋହ- ସ ରି ଗ ମ ପ ଧ ନ ସ।
ଅବରୋହ- ସ ଧ ପ ମ ଗ ରି।

— ୦ —

ତ୍ରିଭଙ୍ଗ ପ୍ରବନ୍ଧ କହନ୍ତି। ତାହା ପାଞ୍ଚ ପ୍ରକାରର। ତ୍ରିଭଙ୍ଗି ତାଳରେ ପ୍ରଥମ ତ୍ରିଭଙ୍ଗି ବୃତ୍ତରେ, ଦ୍ୱିତୀୟ ତିନି ତାଳ ତିନି ରାଗରେ ତ୍ରିଭଙ୍ଗିସଂଜ୍ଞର ତୃତୀୟ ଭେଦ, ତିନୋଟି ଛନ୍ଦରେ ଯୁକ୍ତ ହେଲେ ଚତୁର୍ଥ ଭେଦ, ତିନି ଦେବତାଙ୍କର ସ୍ତୁତିଯୁକ୍ତ ହେଲେ ପଞ୍ଚମ ଭେଦ ହୁଏ।

### କୈବାଡ଼ପ୍ରବନ୍ଧଃ

ପାଟାକ୍ଷରୈରାରଚିତାବୁଭାବୁଦ୍‌ଗ୍ରାହ
ଧ୍ରୁବୌ ଯତ୍ର ତୁ ସଂଭବେତାମ୍।
ଉଦ୍‌ଗ୍ରାହଖଣ୍ଡେ ପରିପୂର୍ତ୍ତିରେଷା କୈବାଡ଼
ନାମା କଥିତଃ ପ୍ରବନ୍ଧଃ ॥ ୬୫ ॥

ଉଦ୍‌ଗ୍ରାହ ଓ ଧ୍ରୁବ ଯେଉଁଠାରେ ପାଟାକ୍ଷରରେ ରଚିତ ହୁଏ ତାକୁ କୈବାଡ଼ ପ୍ରବନ୍ଧ କହନ୍ତି। ଉଦ୍‌ଗ୍ରାହ ଖଣ୍ଡରେ ତାର ଶେଷ ହୁଏ।

### ଧ୍ରୁବଲକ୍ଷଣମ୍

ଏକଧାତୁର୍ଦ୍ଦ୍ୱିଖଣ୍ଡଃ ସ୍ୟାଦ୍ୟତୋଦ୍‌ଗ୍ରାହସ୍ତତଃ ପରମ୍।
କିଂଚିଦୁଚ୍ଚଂ ଭବେତ୍ ଖଣ୍ଡେ ଦ୍ୱିରଭ୍ୟସ୍ତମିଦଂ ଦ୍ରୟମ୍ ॥ ୬୬ ॥
ତତୋ ଦ୍ୱିଖଣ୍ଡ ଆଭୋଗସ୍ତସ୍ୟ ସ୍ୟାଦ୍ ଖଣ୍ଡମାଦିମମ୍।
ଏକ ଧାତୁର୍ଦ୍ୱିଖଣ୍ଡଂ ଚ ଖଣ୍ଡମୁଚ୍ଚତରଂ ପରମ୍ ॥ ୯୭ ॥
ସ୍ତୁତ୍ୟନାମାଙ୍କିତଶ୍ଚାସୌ କ୍ୱଚିଦୁଚ୍ଚୈକଖଣ୍ଡକଃ
ଉଦ୍‌ଗ୍ରାହସ୍ୟାଦ୍ୟଖଣ୍ଡେ ଚ ନ୍ୟାସଃ ସ ଧ୍ରୁବକୋଭବେତ୍ ॥ ୬୮ ॥
(ସଂ.ର.)

**ଉଦ୍‌ଗ୍ରାହ ଏବ ଯତ୍ର ସ୍ୟାଦ୍ ଧ୍ରୁବଃ ସ ଧ୍ରୁବକୋ ମତଃ।**
**କିଂଚିଦୁଚ୍ଚୈକଖଣ୍ଡନ୍ତୁ ଦ୍ୱିର୍ଗେୟୋର୍ଭବେଦ୍। ଅନ୍ୟେ ଦ୍ୱିଧାତୁରଯଂ ଖଣ୍ଡଦ୍ୱୟମପି ଦ୍ୱିର୍ଗେୟମ୍। ପ୍ରଥମ ଖଣ୍ଡଂ ଗେୟମ୍ ଦ୍ୱିତୀୟ ଖଣ୍ଡ ଉଚ୍ଚୈର୍ଗେୟମ୍॥ ଦ୍ୱି-ତ୍ରିମାତ୍ରାଧିକଃ କାର୍ଯ୍ୟ ଇତି କେଚିତ୍, ପ୍ରଥମ ଖଣ୍ଡ ସମମାତ୍ର ଇତ୍ୟର୍ଥଃ (ଗୀତ-ପ୍ରକାଶ)**
**ସ ଏବ ଧ୍ରୁବଇକ୍ଷ୍ଣୋ ସ୍ୟାଦ୍ୟ ଯତ୍ରୋଦ୍‌ଗ୍ରାହୋ ଭବେଦ୍ ଧ୍ରୁବଃ।**
**ଉଚ୍ଚୈଃଖଣ୍ଡ ସ ଏବ ସ୍ୟାଦ୍ ଦ୍ୱିର୍ଗେୟୋ ଗୀତକୋବିଦୈଃ॥ ୬୯॥**
(ସଂ. ମୁକ୍ତାବଳୀ)

ଧାତୁ ଏକ ତାହା ଦୁଇ ଖଣ୍ଡ ହୁଏ। ଯେଉଁଥିରେ ପ୍ରଥମରେ ଉଦ୍‌ଗ୍ରାହ ବୋଲାଯିବ, ତାହାପରେ କିଞ୍ଚିତ୍ ଉଚ୍ଚରେ ଦୁଇଥର ବୋଲାଯାଇ ଖଣ୍ଡଟି ସମାପ୍ତ ହେବ। ତେଣୁ ଏହା ତିନିଗୋଟି। ତାହାପରେ ଦ୍ୱିଖଣ୍ଡ ହେଉଛି ଆଭୋଗ। ତହିଁରେ ଆଦିଖଣ୍ଡ ରହିବ, ତାହା ଏକ ଧାତୁ ଦ୍ୱିଖଣ୍ଡ ବିଶିଷ୍ଟ, ପର ଖଣ୍ଡଟି ଉଚ୍ଚତର ହେବ।
(ସା.ର)

**ପୁନଶ୍ଚ ଗୀତପ୍ରକାଶକାର କହିଅଛନ୍ତି:**

ଯେଉଁଠାରେ ଉଦ୍‌ଗ୍ରାହ ଥାଏ, ତାହାକୁ ଧ୍ରୁବ କହନ୍ତି। କିଛି ଉଚ୍ଚରେ ଏକ ଖଣ୍ଡଟି ଦୁଇଥର ଗାନ କରାଯାଏ। ଅନ୍ୟମାନେ ଦ୍ୱିଧାତୁବିଶିଷ୍ଟ ଦୁଇଖଣ୍ଡ ମଧ ଦୁଇ ଥର ଗାନ କରାଯିବା କହନ୍ତି। ପ୍ରଥମ ଖଣ୍ଡ ଗାଇବ, ଦ୍ୱିତୀୟ ଖଣ୍ଡଟି ଉଚ୍ଚରେ ଗାଇବ। କେତେକ ସଙ୍ଗୀତଜ୍ଞ କହନ୍ତି, ଦୁଇ ତିନି ମାତ୍ରା ଅଧିକ କରାଯିବ, ପ୍ରଥମ ଖଣ୍ଡ ସମମାତ୍ରକ ହେବ।

ସଂଗୀତ ମୁକ୍ତାବଳୀମତେ ଯେଉଁଠାରେ ଉଦ୍‌ଗ୍ରାହ ଧ୍ରୁବ ହୁଏ, ସେହି ଏକା ଧ୍ରୁବ ଲକ୍ଷଣ ହୁଏ, ସେହି କେବଳ ଉଚ୍ଚ ଖଣ୍ଡ ହୁଏ, ଯାହା ଦୁଇଥର ଗାନ କରାଯାଏ ।

ତାତ୍ପର୍ଯ୍ୟ-ଉକ୍ତ ଲକ୍ଷଣ ସହିତ ପ୍ରଥମ ପଦ ଅର୍ଥାତ୍ ଧ୍ରୁବର ରଚନା ଖଣ୍ଡର ଏକ ବା ଗୋଟିଏ ଧାଡ଼ିକୁ ଗାଇବା ଆରମ୍ଭରୁ ସମଲୟରେ ଦୁଇଥର ଗାଇବା ପରେ ଅନ୍ୟ ଏକ ଖଣ୍ଡ ଗାଇ ଧ୍ରୁବ ଖଣ୍ଡ ଗାଇବା ଶେଷ କରିବ ଓ ଅନ୍ୟପଦମାନଙ୍କୁ ସେହିପରି ସମଲୟରେ ଗାଇବାକୁ ହେବ । ଏହିପରି ଗାଇବା ଧ୍ରୁବ ଅର୍ଥାତ୍ ସ୍ଥିର ବା ସ୍ଥାୟୀ ଅନୁସାରେ ହୁଏ ।

### ମଣ୍ଠ-ଲକ୍ଷଣମ୍

ଦ୍ୱିଯତ୍ୟେକବିରାମଂ ବା ଯସ୍ୟୌଦ୍‌ଗ୍ରାହାଖ୍ୟଖଣ୍ଡମ୍ ।
ତତଃ ଖଣ୍ଡଂ ଧ୍ରୁବାଖ୍ୟଂଦ୍ୱିସ୍ତତୋ ବୈକଲ୍ପିକୋଽନ୍ତରଃ ।। ୭୦ ।।
ତଂ ଗୀତ୍ୱା ଧ୍ରୁବମାଗତ୍ୟ ବାଽଽଭୋଗୋ ଗୀୟତେ ସକୃତ୍ ।
ଧ୍ରୁବେ ନ୍ୟାସସ୍ତତଃ ପ୍ରୋକ୍ତଃ ସମଣ୍ଠୋ ମଣ୍ଠତାଳତଃ ।। ୭୧ ।।

(ସଂ.ର.)

ସାମ୍ୟଂ ଯତ୍ର ତୁ ମାତ୍ରାୟା ଉଦ୍‌ଗ୍ରାହୋଭୋଗୟୋରଥ ।
ଧ୍ରୁବତୋ ଦ୍ୱିଗୁଣା ବା ସାର୍ଦ୍ଧୈକଗୁଣା ସମଣ୍ଠକଃ ।। ୭୨ ।।

(ଗୀତ-ପ୍ରକାଶ)

ଦୁଇ ଯତି ବା ଏକ ବିରାମ ଯାହାର ତାହା ଉଦ୍‌ଗ୍ରାହ ଖଣ୍ଡ । ତାହାପରେ ଧ୍ରୁବ ନାମକ ଖଣ୍ଡ ଦୁଇ ବାର ହେବ, ତତ୍‌ପରେ

ମଦଟି ବିକଳ୍ପଯୁକ୍ତ ହେବ ଅର୍ଥାତ୍ ଇଚ୍ଛାନୁଯାୟୀ କରାଯିବ। ତାହା ଗାଇ ଧ୍ରୁବକୁ ଆସିବ ବା ଆଭୋଗକୁ ଥରେ ଗାଇବ। ତାହାପରେ ଧ୍ରୁବରେ ନ୍ୟାସ ହେବ। ତାହା ମଣ୍ଠତାଳରୁ ହୁଏ ବୋଲି ମଣ୍ଠ ବୋଲାଯାଏ।

ଯେଉଁଠାରେ ଉଦ୍‌ଗ୍ରାହ ଓ ଆଭୋଗ ମାତ୍ରାର ସମତା ଥାଏ ଓ ଧ୍ରୁବରେ ମାତ୍ରାର ଦ୍ୱିଗୁଣ ବା ଦେଢ଼ଗୁଣ ଥାଏ, ସେଠାରେ ମଣ୍ଠ ହୁଏ। (ଗା:ପ୍ର:)

### ଅନିବଦ୍ଧଲକ୍ଷଣମ୍

ଧାତୁମାତୁବିହୀନଂ ଯତ୍‌ତାଳାଦିରହିତଂ ଚ ଯତ୍।
ଲାଳିତ୍ୟମାତ୍ରଂ ଯତ୍ରାସ୍ତେ ତଦନିବଦ୍ଧମୁଚ୍ୟତେ ॥ ୭୩ ॥

(ସଂ: ମୁକ୍ତାବଳୀ)

ଧାତୁ ଅର୍ଥାତ୍ ଗୀତର ପଦ ମାତୁ ଅର୍ଥାତ୍ ଗୁଣ ଅଳଙ୍କାରମୟ ବାକ୍ୟ ଓ ତାଳ ନ ଥିବ, କେବଳ ରାଗର ସ୍ୱରଦ୍ୱାରା ଲାଳିତ୍ୟ ଥିବ, ତାହାକୁ ଅନିବଦ୍ଧ ବା ଆଳାପ କହନ୍ତି।

### ଗାନଭେଦାଃ

ଯଦ୍ୟପ୍ୟଥୋ ଗାନମଶେଷ ଜନ୍ତୁ
ହର୍ଷପ୍ରହର୍ଷାଦିମହେତୁଭୂତମ୍।
ତଥାପି କେଷାଂଚନ କିଂଚିଦେବ
ଗାନଂ ପ୍ରିୟଂ ଭିନ୍ନରୁଚିର୍ହି ଲୋକଃ ॥ ୭୪ ॥

ପ୍ରକାରଭେଦଂ ଜନରଂଜନାନାଂ
ସ୍ପଷ୍ଟଂ ସମାଚଷ୍ଟ ସ ପାର୍ଶ୍ୱଦେବଃ ।
ଯଦୁଚ୍ଚସ୍ୱରସଂଯୁତଃ ସ୍ୟା
ଦ୍ୟନ୍ନ ଦ୍ରୁତଂ ଚୈବ ବିଳମ୍ବିତଂ ଚ ॥ ୭୫ ॥
ତାଳାନୁରୂପଂ ସମନାମଗାନ
ମାଚାର୍ଯ୍ୟବର୍ଯ୍ୟପ୍ରିୟମାମନନ୍ତି ।
ଗାନଂ କ୍ରିୟା କାରଣ ଶବ୍ଦଯୁକ୍ତଂ
ଯତ୍‌ସନ୍ଧିଦୋଷେଣ ବିବର୍ଜିତଂ ଚ ॥ ୭୬ ॥
ବ୍ୟକ୍ତସ୍ୱରଂ ବ୍ୟକ୍ତପଦଂ ତଦେତ
ଦବ୍ୟକ୍ତାଭିଧଂ ପଣ୍ଡିତରଞ୍ଜକଂ ତତ୍ ।
ଯଦକ୍ଷରୈଃ ସ୍ୟାଲ୍ଲଳିତୈରୁପେତଂ
ଶୃଙ୍ଗାରନାମ୍ନା ସହିତଂ ରସେନ ॥ ୭୭ ॥
ବେ୍ୟଣ ନାଦେନ ଯୁତଂଚ଼ ଗାନଂ
ପ୍ରିୟଂ ଚ ଯୂନାଂ ମଧୁରାଭିଧାନମ୍ ।
ଗାନସ୍ୱରୈରୁଚ୍ଚତରୈରୁପେତଂ
ତଥା ପ୍ରୟୋଗେ ବହୁଳୀକୃତଂ ଚ଼ ॥ ୭୮ ॥
ବିକୃଷ୍ଟସଂଜ୍ଞଂ ପୁନରେତଦେବ
ପ୍ରିୟଂ ପରେଷାଂ କଥିତଂ ଜନାନାମ୍ ।
ବୃତ୍ତ୍ୟାରଭଟ୍ୟା ସହିତଂ ଯଦେବ
ପ୍ରବୀର ସଂଗ୍ରାମ କଥୋଦ୍‌ଭଟଂ ଚ ॥ ୭୮ ॥
ସ୍ୟାଦୁଚ୍ଚନୀଚସ୍ୱରସଂଯୁତଂ ଚ
ସୋତ୍ସାହଗାନଂ ଖଳୁ ଶୂରହୃଦ୍ୟମ୍ ।
ପ୍ରମୋଦକଂ ଦୀପ୍ତପଦୈଃ ସମଗ୍ରଂ
ଶୃଙ୍ଗାରସଂଜ୍ଞେନ ରସେନ ଯୁକ୍ତମ୍ ॥ ୮୦ ॥

କୃପାରସଜ୍ଞାପକ କାକୁଯୁକ୍ତଂ
 ବିବିକ୍ତହୃଦ୍ୟଂ କରୁଣାଖ୍ୟଗାନମ୍ ।
ପଦୈଃ ପରୀତଂ ବିପରୀତରୂପୈଃ
 ସମନ୍ୱିତଂ ଯତ୍ ସ୍ୱରଭଙ୍ଗିଭେଦୈଃ ॥ ୮୧ ॥
ଯୁକ୍ତଂ ପୁନର୍ହାସ୍ୟରସେନ ଗାଢ଼ଂ
 ବିଟପ୍ରିୟଂ ସ୍ୟାତ୍ ପରିହାସଗାନମ୍ ।
ଗୂଢ଼ାଭିଧେୟୈଶ୍ଚ ପ୍ରକଟ୍ୟମାନ
 ସଂସାର ସମ୍ଭାବିତ ସୌଖ୍ୟମୁଖ୍ୟୈଃ ॥ ୮୨ ॥
ପଦୈରୁପେତଂ ଯଦୁଦାହାରେୟୁ
 ରଧ୍ୟାମ୍ମଗାନଂ ଖଲୁ ଯୋଗିହୃଦ୍ୟମ୍ ।
ଶୁଭୈଶ୍ଚ ବାକ୍ୟୈ ବହୁଳୈରୁପେତଂ
 ସ୍ୱରେଣ ଶୁଦ୍ଧେନ ଚ ପଞ୍ଚମେନ ॥ ୮୩ ॥
ଗେୟଂ ବିବାହାଦି ମହୋତ୍ସବେଷୁ
 ବଧୂପ୍ରିୟଂ ମଙ୍ଗଳଗାନମେତତ୍ ।
ଯଦ୍ଦେବତାୟାଃସହିତଂ ସ୍ତବେନ
 ତସ୍ୟା ପ୍ରଭାବ ପ୍ରତିବୋଧନଂଚ ॥ ୮୪ ॥
ଆସ୍ତିକ୍ୟ ସମ୍ପାଦକମାତ୍ରରମ୍ୟଂ
 ଗାନଂ ବିଦୁର୍ଭକ୍ତଜନାଦିହୃଦ୍ୟମ୍ ।
ଅଭ୍ୟୁନ୍ନତସ୍ଥାନସମନ୍ୱିତଂ ଚ
 ଯଦା କିଳ ସ୍ୟାଦ୍ରୁତତାଳପାଦୈ ॥ ୮୫ ॥

**ରୂକ୍ଷ ପ୍ରୟୋଗୈର୍ବହୁଳୈରୁପେତଂ**
**ବାଦୀପ୍ରିୟଂ ତଦ୍ବିକ୍ଷମାଖ୍ୟଗାନମ୍ ।**
**ଇତ୍ଥଂ ଜନାନାମିହ ରଞ୍ଜନାନି**
**ନାନାବିଧାନ୍ୟାହ ସ ପାର୍ଶ୍ୱଦେବ ॥ ୮୬ ॥**

**(ସଂଃସୁଃ)**

ଯଦ୍ୟପି କାରଣ ନଥାଇ ଗାନ ଅଶେଷ ପ୍ରାଣୀମାନଙ୍କର ହର୍ଷ ଓ ଆମୋଦଜନକ ହୁଏ, ତଥାପି କେତେକଙ୍କ ମନୋରଞ୍ଜକ ହୁଏ ନାହିଁ। କାରଣ ଲୋକଙ୍କର ରୁଚି ଭିନ୍ନ ଅଟେ। ପାର୍ଶ୍ୱଦେବ କହିଅଛନ୍ତି ଯେ ଜନରଞ୍ଜନକାରୀ ଗାନମାନଙ୍କର ପ୍ରକାରଭେଦ ଅଛି। ତାହା ଉଚ୍ଚ ଓ ନୀଚ ସ୍ୱରସଂଯୁକ୍ତ ହୋଇ ଦ୍ରୁତ ହେବ ନାହିଁ ବା ବିଲମ୍ବିତ ହେବ ନାହିଁ। ତାଳ ଅନୁସାରେ ସମଭାବରେ ଗାନ ହେବାକୁ ସଙ୍ଗୀତ ଆଚାର୍ଯ୍ୟମାନେ ପ୍ରୀତିକର ବୋଲି କହନ୍ତି। ଗାନ ହେବାକୁ ସଙ୍ଗୀତ ଆଚାର୍ଯ୍ୟମାନେ ପ୍ରୀତିକର ବୋଲି କହନ୍ତି। କ୍ରିୟା-କାରକ-ଶବ୍ଦଯୁକ୍ତ ହୋଇ ସନ୍ଧିଦୋଷରହିତ, ସ୍ୱର ସ୍ପଷ୍ଟ, ପଦ ସ୍ପଷ୍ଟ ହେଲେ ତାହା ସ୍ପଷ୍ଟ ନାମ ଗୀତ ହୋଇ ପଣ୍ଡିତଙ୍କ ମନର ପ୍ରୀତିକର ହୁଏ। ଯାହା କୋମଳ ଅକ୍ଷରଯୁକ୍ତ ଶୃଙ୍ଗାର ରସ ଯୁକ୍ତ ହୋଇ କର୍ଣ୍ଣସୁଖକର ନାଦ ହୁଏ ସେହି ଗାନ ମଧୁର ଓ ଯୁବକଙ୍କ ପ୍ରିୟ ଅଟେ। ଉଚ୍ଚତର ଗାନ ସ୍ୱରଯୁକ୍ତ ଓ ପ୍ରୟୋଗରେ ବାରମ୍ବାର ବ୍ୟବହୃତ ହେଲେ ବିକୃଷ୍ଟ ନାମକ (ବିସ୍ତୃତନାମା) ଗାନ ହୁଏ ତାହା ଅନ୍ୟ ଲୋକଙ୍କର ପ୍ରିୟ ବୋଲି କଥିତ। ଆରଭଟୀ ବୃତ୍ତିସହ ତାହା ବୀରଙ୍କ ଯୁଦ୍ଧ ବିଷୟକ କଥାମୟ। ଉଚ୍ଚ ଓ ନୀଚସ୍ୱର

ମିଶ୍ରିତ ଓ ଉତ୍ସାହପୂର୍ବକ ଗାନ ତାହା ବୀରଙ୍କ ମନର ପ୍ରୀତିକର ଅଟେ।

ଆନନ୍ଦଦାୟକ ସମସ୍ତ ସାର୍ଥକ ପଦମୟ ଶୃଙ୍ଗାରରସଯୁକ୍ତ କରୁଣରସବୋଧକ (ସ୍ୱରର ଭିନ୍ନତାରୁ ଭିନ୍ନାର୍ଥ ବୋଧଯୁକ୍ତ) କାକୁଯୁକ୍ତ ବିଶୁଦ୍ଧ ତଥା ମନୋରଞ୍ଜକ ହେଲେ କରୁଣନାମକ ଗାନ ହୁଏ। ବିପରୀତାର୍ଥକ ପଦଯୁକ୍ତ ସ୍ୱରଭଙ୍ଗି ଭେଦ ସହିତ, ହାସ୍ୟରସମୟ ରସିକ ବା ଲମ୍ପଟପ୍ରିୟ ଗାନମାନଙ୍କୁ ପରିହାସ ଗାନ କହନ୍ତି। ସଂସାର ଭାବନାର ସୁଖମାନଙ୍କୁ ଗୂଢ଼ାର୍ଥବୋଧକ ପଦରେ ପ୍ରକାଶ କଲେ ତାହା ଅଧ୍ୟାତ୍ମ ଗାନ ହୁଏ ଓ ତାହା ଯୋଗୀମାନଙ୍କ ମନର ପ୍ରୀତିକର ଅଟେ। ବହୁ ମଙ୍ଗଳଜନକ ବାକ୍ୟଯୁକ୍ତ ଶୁଦ୍ଧ ପଞ୍ଚମ ସ୍ୱରରେ ବିବାହ ଉତ୍ସବାଦିରେ ଗାନ କରାଯିବା ବଧୂଙ୍କ ପ୍ରୀତିକର ଗାନକୁ ମଙ୍ଗଳଗାନ କହନ୍ତି, ଯାହା ଦେବତାଙ୍କ ସ୍ତବଯୁକ୍ତ ଏବଂ ଦେବତାଙ୍କ ପ୍ରଭାବଜ୍ଞାପକ। ଈଶ୍ୱର-ବିଶ୍ୱାସସଂସ୍ଥାପକ ଓ ସୁନ୍ଦର ଗାନ ଭକ୍ତଜନଙ୍କର ମନର ପ୍ରୀତିକର ଅଟେ। ଅତି ଉଚ୍ଚ ସ୍ଥାନଯୁକ୍ତ ତାଳ ପାଦ ସହିତ ବହୁଳ ରୁକ୍ଷଶବ୍ଦମୟ ସାଧାରଣ ଲୋକଙ୍କର ପ୍ରିୟ।

## ଗଦ୍ୟଲକ୍ଷ୍ୟଣମ୍

ଗଦ୍ୟଂ ନିଗଦ୍ୟତେ ଛନ୍ଦୋହୀନଂ ପଦକଦମ୍ବକମ୍।
ତତ୍‌ଷୋଢ଼ୋତ୍କଳିକାଚୂର୍ଣ୍ଣଂ ଲଳିତଂ ବୃତ୍ତଗନ୍ଧି ଚ॥ ୮୭॥
ଖଣ୍ଡଂ ଚିତ୍ରଂ ଚ ତେଷାଂ ଚ ପ୍ରଭବଃ ସାମବେଦତଃ।
ବେଣୀମିଶ୍ରମିତି ପ୍ରାହୁରନ୍ୟେ ଭେଦଦ୍ୱୟଂ ପରମ୍॥ ୮୮॥

ଦ୍ରୁତା ବିଲମ୍ବିତା ମଧ୍ୟା ଦ୍ରୁତମଧ୍ୟା ତଥାପରା ।
ଗତିର୍ଦ୍ରୁତବିଳମ୍ବା ସ୍ୟାଦ୍ ଷଷ୍ଠୀ ମଧ୍ୟବିଳମ୍ବିତା ।। ୮୯ ।।
ଇତି ଗଦ୍ୟସ୍ୟ ଷଟ୍‌ପ୍ରୋକ୍ତା ଗତୟଃ ପୂର୍ବସୁରିଭିଃ ।
ପ୍ରତ୍ୟେକଂ ଗତିଷଟ୍‌କେନ ଷଟ୍‌ତ୍ରିଂଶଦ୍ ଗଦ୍ୟକାଭିଦାଃ ।
ପ୍ରବନ୍ଧାଙ୍ଗଂ ସତାଳଂ ଚ ପଦଦ୍ୱନ୍ଦ୍ୱଂ ପୃଥକ୍ ତତଃ ।। ୯୦ ।।

ସଂସ୍କୃତ-ସାହିତ୍ୟର ଅଳଂକାର-ଶାସ୍ତ୍ର ମତରେ ଗଦ୍ୟ ଛନ୍ଦହୀନ ପଦସମୂହ। ଏହା ଛଅ ଭାଗରେ ବିଭକ୍ତ; ଯଥା-ଉତ୍କଳିକା ଚୂର୍ଣ୍ଣ, ଲଳିତ, ବୃତ୍ତଗନ୍ଧି, ଖଣ୍ଡ, ଚିତ୍ର ଏମାନଙ୍କର ପ୍ରତ୍ୟେକରେ ରସ, ବୃତ୍ତି, ରୀତି ଅଛି ଓ ଦେବତା ମଦ ଅଛି। ଅନ୍ୟ କେତେକଙ୍କ ମତରେ ବେଣୀ ଓ ମିଶ୍ର ଭେଦରେ ଦ୍ୱିବିଧ, ପୂର୍ବପଣ୍ଡିତମାନେ ଗଦ୍ୟର ଛଅଗୋଟି ଗତି ନିର୍ଣ୍ଣୟ କରିଅଛନ୍ତି; ଯଥା-ଦ୍ରୁତ, ବିଳମ୍ବିତ, ମଧ୍ୟ, ଦ୍ରୁତ ମଧ୍ୟ, ଦ୍ରୁତ ବିଳମ୍ବିତ, ଓ ମଧ୍ୟ ବିଳମ୍ବିତ ପ୍ରତ୍ୟେକ ଭେଦର ଗତି ଅନୁଯାୟୀ ୩୬ ପ୍ରକାର ଅଟେ। ଏହା ସାଧାରଣତଃ ତାଳହୀନ; କିନ୍ତୁ ପ୍ରବନ୍ଧାତ୍ମକ ଗଦ୍ୟରେ ଇଚ୍ଛାନୁସାରେ ତାଳ ଗାନ କରାଯାଇପାରେ ।

## ଉତ୍କଳୀୟପ୍ରବନ୍ଧ

ପ୍ରସଙ୍ଗତଃ ଏହି ଗ୍ରନ୍ଥ ସଂକଳନରେ ଅଦ୍ୟାବଧି ଓଡ଼ିଆ ଭାଷାରେ ଲିଖିତ ଓଡ଼ିଆ କବିମାନଙ୍କ ରଚିତ ପ୍ରଚଳିତ ସଂଗୀତ ସମ୍ବନ୍ଧୀୟ ବିଷୟମାନଙ୍କର ପରିଚୟ ଦିଆହୋଇଅଛି ।

ଜୟଦେବଙ୍କ ଗୀତ-ଗୋବିନ୍ଦ ଲେଖା ପୂର୍ବରୁ ବୌଦ୍ଧ ଗାନ ଓ ଦୋହାରେ ଓଡ଼ିଆ ଭାଷାରେ କେତେକ ଗୀତ ରାଗ ନାମ

ସହିତ ଲେଖାଥିବାର ଦେଖାଯାଏ; କିନ୍ତୁ ସେଗୁଡିକ ମଧରେ ବହୁ ଗୀତ ବହୁ ପଦ ବିଶିଷ୍ଟ ଅଟେ। ପ୍ରାଚୀନହେତୁ ତାହାର ଭାଷା ବର୍ତ୍ତମାନ ଭାଷାଠାରୁ କେତେକାଂଶରେ ପୃଥକ୍। ତାହା ଉତ୍କୃଷ୍ଟ ଜାତୀୟ ଗାନପକ୍ଷେ ଅନୁକୂଳ ନୁହେଁ। ତାହା କ୍ଷୁଦ୍ର ଗୀତ ଓ ପାଞ୍ଚାଳୀ ମଧରେ ଗଣ୍ୟ।

ପଞ୍ଚଦଶ- ଷୋଡ଼ଶ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡ଼ିଶାରେ ଶାସ୍ତ୍ରୀୟ ଲକ୍ଷଣଯୁକ୍ତ ରୀତିରେ ସଂଗୀତ ଗାନ କରିବା ବହୁତ ଚଳନ ଥିଲା, ଯାହାର ନାମ ଶୁଦ୍ଧ ଓ ଛାୟାଲଗ କ୍ଷୁଦ୍ର କୁହାଯାଉଥିଲା। ଶୁଦ୍ଧଗୀତ ଓ ସାଲଗ ଗାନ ଅତି ଉଚ୍ଚ ଜାତୀୟ, ତହିଁରେ ସଂଗୀତକଳାର ସମସ୍ତ ଲକ୍ଷଣ ଯୁକ୍ତ କରି ଗାଇବାକୁ ହୁଏ। ଏହା କଷ୍ଟ ସାଧ ହେଲେହେଁ ଅଭୀଷ୍ଟ ସିଦ୍ଧି ଓ ଭକ୍ତିଦାୟକ ହୁଏ। ଓଡ଼ିଶାରେ ପ୍ରଚଳିତ ସେହି ସର୍ବୋତ୍କୃଷ୍ଟ ସଂଗୀତ। ଏହି ଗ୍ରନ୍ଥ ଅନୁସାରେ ଗାନ କରିବା ସହଜ ହେବ। କ୍ଷୁଦ୍ର ଗାନମାନଙ୍କ ମଧରେ କେବଳ ଧ୍ରୁବପଦା ଗାନରେ ଶୁଦ୍ଧ ଗାନର ଅଧିକାଂଶ ଲକ୍ଷଣ ଦେଖାଯାଏ। ତେଣୁ ଧ୍ରୁବପଦାକୁ ଉଚ୍ଚାଙ୍ଗ ସଂଗୀତମଧ୍ୟରେ ସଂଗୀତ-ପଣ୍ଡିତମାନେ ଗ୍ରହଣ କରିଥାନ୍ତି ଏବଂ ଚିତ୍ରକଳା, ଚିତ୍ରପଦା ଓ ପାଞ୍ଚାଳୀ ଗାନକୁ ଶାସ୍ତ୍ରୀୟମତେ କରାଯାଉଥିଲା। ଶାସ୍ତ୍ରୀୟ ଲକ୍ଷଣଯୁକ୍ତ ସଂଗୀତ ବ୍ୟତୀତ ଅନ୍ୟପ୍ରକାର ଗୀତକୁ ସଭ୍ୟ, ଶିକ୍ଷିତ, ଗୃହସ୍ଥ ଓ ସମାଜ ପକ୍ଷରୁ ପରିତ୍ୟାଗ କରାଯାଇଥିଲା। ତାହା ଇତର ସର୍ବସାଧାରଣରେ ଓ ଅନ୍ୟାନ୍ୟ ସ୍ଥାନରେ ଚଳୁଥିବା ଶାସ୍ତ୍ରରୁ ପ୍ରମାଣ ମିଳେ।

ଜୟଦେବ କବିଙ୍କ ଗୀତ ଗୋବିନ୍ଦର ୨୪ଗୋଟି ଗାଥାର ଗୀତ ପ୍ରତ୍ୟେକ ଆଠ ପଦବିଶିଷ୍ଟ। ସେହି ଗୀତଗୋବିନ୍ଦ ଲେଖା

ପ୍ରାୟ ୧୨୦୦ ଖ୍ରୀଷ୍ଟାବ୍ଦ ମଧ୍ୟଭାଗରେ ଶାସ୍ତ୍ରୀୟ ଓଡ଼ିଆ ଭାଷାରେ ରାଗତାଳ ସହିତ ଲେଖା ହୋଇଥିଲା । ମାତ୍ର ତାହା ବହୁ ପଦ ବିଶିଷ୍ଟ ହୋଇଥିବାରୁ କେବଳ ରାଗତାଳକୁ ଠିକ୍ ରଖି ଏକପ୍ରକାର ଆବୃତ୍ତି ଅନୁସାରେ ଗାନ କରାଯାଏ । କିନ୍ତୁ ଉତ୍କୃଷ୍ଟ ପ୍ରକାର ଶାସ୍ତ୍ରୀୟ ଉଚ୍ଚାଙ୍ଗମତେ ଗାନ କରାଯିବା ସ୍ୱୀକୃତ ନୁହେଁ । ତାହା କ୍ଷୁଦ୍ର ଗୀତ ଚିତ୍ରକଳାରୂପେ ଗଣ୍ୟ ହୋଇପାରେ । ତେଣୁ ଚିତ୍ରକଳା ଅନୁସାରେ ଗାନ କରାଯିବା ଉଚିତ୍ ।

ଜୟଦେବଙ୍କ ପୂର୍ବରୁ ଓ ଓଡ଼ିଶାର ସ୍ୱାଧୀନତା ଲୋପ ହେବା (୧୬୦୦ ଖ୍ରୀଷ୍ଟାବ୍ଦ) ପର୍ଯ୍ୟନ୍ତ ଓଡ଼ିଶାର ସଂଗୀତ-କ୍ଷେତ୍ରରେ ଯେ ଗୀତ ଓ ଗାନ ପ୍ରଚଳିତ ଥିଲା, ସେଗୁଡିକର ଭାଷା ସେହି ସମୟର ଗୀତଗୋବିନ୍ଦ ଗୀତ ଭାଷା ସହିତ ପ୍ରାୟ ସମାନ ଅଟେ ଓ କେତେକ ଗୀତରେ 'ବ୍ରଜ ବୋଲି' ମିଶିଲାପରି ଦେଖାଯାଏ । ସେସବୁ ରାଗ ତାଳ ଅନୁସାରେ ତାନଗମକ ଅଳଂକାର ଆଳାପ ସହିତ, ବିଳମ୍ବିତ, ମଧ ଓ ଦ୍ରୁତ ଲୟରେ ଉଚ୍ଚାଙ୍ଗ ଲକ୍ଷଣ ଯୁକ୍ତରେ ଗାନ ହେବା ନିମିତ୍ତ ରଚିତ ହୋଇଥିଲା । ଶାସ୍ତ୍ରୀୟ ରୀତିରେ ଅତି ଉଚ୍ଚାଙ୍ଗ ଗାନକୁ ଶୁଦ୍ଧ ଓ ଛାୟାଲଗ କୁହାଯାଉଥିଲା । କ୍ଷୁଦ୍ର ଜାତି ଗାନ ମଧ୍ୟରେ ଧ୍ରୁବପଦା ଗାନକୁ ଉଚ୍ଚ ଜାତୀୟ ଗାନସ୍ୱରୂପ ଗ୍ରହଣ କରାଯାଉଥିଲା । ତାହା ବିଜ୍ଞ, ସଭ୍ୟ ସମାଜ ଓ ଉଚ୍ଚପାହିଆ ଗୃହସ୍ଥ ଲୋକଙ୍କ ବୈଠକରେ ଓ ରାଷ୍ଟ୍ରୀୟ ବା ଦରବାର ବା ବୈଠକରେ କଳାର ଶ୍ରୀବୃଦ୍ଧି, ଆଧ୍ୟାତ୍ମିକ ଭାବରସ, ଶାନ୍ତି, ବୁଦ୍ଧି, ବଳ, ପ୍ରଫୁଲ୍ଲତା ଅଭୀଷ୍ଟ ସିଦ୍ଧି ଓ ପ୍ରେରଣା ପାଇବା ନିମନ୍ତେ ଗାନ ଓ ଚର୍ଚ୍ଚା କରିବା ନିତ୍ୟ ଓ ନୈମିତ୍ତିକ କର୍ତ୍ତବ୍ୟ ଥିଲା । ଜଗତରେ ଆଦୃତ ଅନ୍ୟାନ୍ୟ ଜାତୀୟ କ୍ଷୁଦ୍ର ଗୀତମାନ ରାଗତାଳ

ସହିତ ଗାନ କରାଯାଉଥିଲେ ମଧ୍ୟ ତାହା ଉଚ୍ଚାଙ୍ଗ ଶ୍ରେଣୀମଧ୍ୟରେ ଗ୍ରହଣ କରାଯାଉ ନ ଥିଲା ବା ସେପରି ସମ୍ମାନ ଦିଆଯାଉ ନଥିଲା। ସେହି ଶୁଦ୍ଧ, ସାଲଗ, କ୍ଷୁଦ୍ର ଗୀତମାନଙ୍କର ପରିଚୟ ଓ ଲକ୍ଷଣ ଏହି ଗ୍ରନ୍ଥରେ ସଂକ୍ଷେପରେ ଲେଖାଯାଇଅଛି। ସେଥିରୁ କେତୋଟି ସ୍ୱରୂପ ନମୁନା ଉଦାହରଣ ଦିଆଗଲା। ପୂର୍ବେ ଏରୂପ ଉଚ୍ଚ ଜାତୀୟ ଲକ୍ଷଣଯୁକ୍ତ ସଙ୍ଗୀତର ଗାୟକ ଓ ଯନ୍ତ୍ରବାଦକମାନଙ୍କୁ ରାଷ୍ଟ୍ରୀୟ ରାଜଦରବାର ଓ ବିଜ୍ଞ ସଭ୍ୟ-ସମାଜର ଲୋକମାନେ ସମ୍ମାନିତ କରୁଥିଲେ ଓ କର୍ତ୍ତବ୍ୟ ଭାବେ ଅତି ଉଚ୍ଚ ଆସନ ଦେଉଥିଲେ। ଏପରି ସଙ୍ଗୀତ ରାଷ୍ଟ୍ରକୁ ଓ ଲୋକ-ସମାଜକୁ ଏକତାବଦ୍ଧ କରେ ଏବଂ ସଭ୍ୟତା ଓ ସଂସ୍କୃତିକୁ ଉତ୍ତରୋତ୍ତର ବୃଦ୍ଧି କରାଏ। ଏହି ସଙ୍ଗୀତକୁ ଓ ତାହାର ସାଧକଙ୍କୁ ରାଜା, ଧନୀ ଓ ମହାଜନମାନେ ସବୁମତେ ସାହାଯ୍ୟ-ସହାନୁଭୂତି ଦେଉଥିଲେ।ତେଣୁ ସଙ୍ଗୀତଜ୍ଞମାନେ ବହୁ ଧନ ମାନ ପ୍ରାପ୍ତ ହେଉଥିଲେ, ସମୃଦ୍ଧି ଲାଭ କରୁଥିଲେ ଏବଂ ଦେଶ, ଜାତି ଓ ସମାଜ ସମୃଦ୍ଧି ଲାଭ କରୁଥିଲା।

କୌଣସି ନିୟମ, ରୀତି ବା ମାର୍ଗ ଅନୁସରଣ କରୁ ନଥିବା ଅନ୍ୟପ୍ରକାର ଗାଇବାସବୁକୁ ଓ ତାହାର ବ୍ୟବସାୟକୁ ଗ୍ରହଣ କରାଯାଉ ନ ଥିଲା। କାରଣ ସେସବୁ କେବଳ ପଦ୍ୟାବୃତ୍ତି ଧରଣର। ତାହା ସଙ୍ଗୀତ ନ ଜାଣିବା ଲୋକେ ନିଜ ମନ ଖୁସିରେ ଗାଉଥିଲେ, ଗାଆନ୍ତି ଓ ଗାଉଛନ୍ତି ମଧ୍ୟ। ବିଶେଷତଃ ଏହା ନାଟ, ତାମସା ଓ ଭିକାରୀ ପ୍ରଭୃତିଙ୍କ ମୁଖରୁ ଶୁଣାଯାଏ। ନାଟ ଆଖଡ଼ାରେ ଓ ତାମସା ଆଦିରେ ତାହାକୁ ନାଟାଙ୍ଗୀ ବୋଲି କୁହାଯାଏ। ତାହାକୁ ଶାସ୍ତ୍ରରେ ପରିତ୍ୟାଗ କରାହୋଇଛି।

## ପ୍ରବନ୍ଧ-ଶୁଦ୍ଧଗୀତ

### ନଟରାଗେଣ-ଏକତାଳେନ-ଯଥା ମମ

ଥୋଦିକ୍ ଦାଂ ଦାଂ କିଟ କିଟ ଦ୍ରିଂଣ ଝେଂ ଥୋଦିକ୍ ଥାରିତ୍ରୁ ଆରେ। ଆଧାରି ଥାରିତ୍ରୁ ଥରିଦିକ୍ ଦ୍ରିକ୍ ଦିତା।। ତାଣ୍ଡା ଭାଧିତାତ ଭାତା ଦିମିକିଟା ଧାଦିଦା ଧୋ ଦିକ୍ ଦାଦିକାଦିକ୍। ଦିକ୍ ରଟ କଟମଟ କଟଦମି କିଟା କିଦ୍ଧୁ ଗିଡ଼ତଧା କ୍ରିଡ଼ ଗିଡ଼ଧା ଗିଡ଼ି ଗଡ଼ି।। ଧୋ କାକୁ ରେକାକୁ ରେନ୍ଦ୍ର ଝେଂନ୍ଦ୍ର ଝଂ ଦ୍ରାଂ ଦ୍ରାଂ ଝେଂ ଥାରିଟେ। ଥାରି ରି ମଟ କିଟ ଦ୍ରିଣଂ।। (ଇତି ପ୍ରଥମ ଖଣ୍ଡ)

ଅଥୋଚ୍ଚ ଖଣ୍ଡ

ଧା ଧା ଦୁକ୍ ଦୁକ୍ ଦୁକ୍ ଦୁକ୍ ଦୁକ୍ ଦୁକ୍ ଦ୍ରାହ ଦ୍ରାଂ ଦ୍ରାଂ ଦ୍ରିମିଠ। ଡଂଣ ଡଂଣ ଡଂଣ ଡଂଣ ଙଂଣ ଣଡ଼ଂ ଣିଷାଂ ଣିଡ଼ାଂ ଣିଡ଼ାଂ ଭୁଭୁ ଭୁଭୁକ ତୋକିଟି ତୁଂ ତୁଂ ତୁଂ କିଡ଼ଣିତା। ଗୁଡୁ ଗୁଡୁ ଦ୍ରାଂ ଗୁଡୁ ଧେକ୍ ଧେକ୍ ଧେକ୍ ଧେକ୍ ଧେକ୍ ଧେକ୍ ଧେକ୍ ଧେକ୍ ଧେକ୍ କିରିଟ କିରିଟ କିଡ଼ ଗିଡ଼ କିରତାଙ୍ଗୀ ତାଂଗିତା ତା ଦିମ୍ମି ଦିମ୍ମିଯଟ ଭା ଭା କିରରିଣା। (ଖଣ୍ଡ ୨ ଧ୍ରୁ)

ଗୋପୀପତି ସ୍ତୁତି ନିବନ୍ଧଂ ପାଟାଦି ପ୍ରବନ୍ଧଂ କୃଷ୍ଣଦାସ କବି ରଚୟତି ଆ। ବାକ୍ୟମ୍। ଅଞ୍ଜନ ରୁଚି ନିରଞ୍ଜନ ରଞ୍ଜନ ସୁବଳୟଶୋଭିତ ଖଞ୍ଜନ ଗଞ୍ଜନ ଶୋଭନ ଲୋଚନ ତପନ ତନୁଜାତଟ ନଟ-ଆ।

ଗୋବର୍ଦ୍ଧନ ଧର ଗୋକୁଳ-ମନ୍ଦିର ଗୋପକୁମାରୀ ମୀନ ମନ୍ଥର। ଗଙ୍ଗାଧର ଗୁରୁଭକ୍ତି ବଶୀକୃତ ଗୋବିନ୍ଦତ୍ୱୟି ରତିରାସ୍ତାମ୍।

ଏହି ଗୀତଟି କେବଳ ବାଦ୍ୟାକ୍ଷର ଓ ପଦ ଏହି ଦୁଇ ଅଙ୍ଗରେ ଅର୍ଥାତ୍ ତାରାବଳୀ ଅନୁସାରେ ରଚିତ। ଏହା ଛଡ଼ା ଅନ୍ୟାନ୍ୟ ଅଙ୍ଗରେ ଗୀତମାନ ସେମାନଙ୍କର ଲକ୍ଷଣ ଅନୁସାରେ ଅଟେ।

## ଅଥ ଛାୟାଲଗ

**(ଏହା ଶୁଦ୍ଧ ପ୍ରବନ୍ଧ ଗାନପରି ହୁଏ)**
**ମହ୍ଲାର ରାଗେଣ-ଆଦିତାଳେନ ଚ**
**ଜୟ ଜୟ ଶଙ୍କର କିଂକର ଜନମନ**
**ଭବଭଞ୍ଜନ ଜନ ରଞ୍ଜନ । ଆ ।**
**ନବ ଶଶିଣ୍ଡ ଶିଖଣଡ ଚଣ୍ଡକର**
**ଶଶଧର ବହ୍ନି ବିଲୋଚନ ଆରେ**

**(ଇତି ପ୍ରଥମ ଖଣ୍ଡ)**

**ପରଶୁକପାଳକୁରଙ୍ଗ ଡମରୁଧର**
**ହର ହର ଦୁରିତ ଦୁରନ୍ତ ଭୟମ୍।**
**ସୁରତଟିନୀଯୁତମୁକୁଟ ମହାନଟ ଗୌରୀ ଲମ୍ପଟ ।**

**ଆଇ ଆରେ (ଇତ୍ୟୁଚଖଣ୍ଡଃ ଧ୍ରୁବପଦମ୍)**

**ନମଃ ଅମରେଶ କିରୀଟ-ମଞ୍ଜୁମଣିମାର୍ଜିତ**
**ପଦନଖ-ଚନ୍ଦ୍ର ବିଭୋ ।**
**ଭବ ଭବ ଶରଣ ଭୂତିବିଭୂଷିତ କୃଷ୍ଣଦାସ**
**ଇତି ଗାୟତି ଅରେ। ।।**

ଏଥିରେ ତି-ଆ-ଇ-ଆ-ରେ- ଇତ୍ୟାଦିର ଅର୍ଥ ନାହିଁ। କେବଳ୍ ତାଳ ସ୍ୱର ସହିତ ଗୀତ ଲାଳିତ୍ୟ ସକାଶ ପ୍ରୟୋଗ କରିବା ବିଧିହେତୁ କରାଯାଇଅଛି।

ଏହାଛଡ଼ା ଆହୁରି ବହୁତ ଗୀତ ଅଛି। ଏହି ପ୍ରବନ୍ଧ ଗାନ ସମ୍ବନ୍ଧେ ଅନ୍ୟାନ୍ୟ ତତ୍ତ୍ୱ ଶାର୍ଙ୍ଗଦେବ ଆଦି ସଙ୍ଗୀତ-ପଣ୍ଡିତମାନଙ୍କ ଲିଖିତ ସଙ୍ଗୀତ ରତ୍ନାକରାଦି ଗ୍ରନ୍ଥମାନଙ୍କରୁ ଅନ୍ୟାନ୍ୟ ସମସ୍ତ ବିଷୟ ଜ୍ଞାତ ହେବ। ଏହା ଗୀତପ୍ରକାଶରେ କୃଷ୍ଣଦାସ ଲେଖିଅଛନ୍ତି।

ବହୁତ ଲଘୁ ଅକ୍ଷରମାନଙ୍କରେ ପଦ ରଚିତ ହେଲେ ଏବଂ ଉପରିଲିଖିତ ଗୀତ ତୁଲ୍ୟ ଯେଉଁ ସ୍ଥାନରେ ଥିବ। ତାହା ପୃଥୁଳା ଲକ୍ଷଣ ବିଶିଷ୍ଟ କିନ୍ତୁ ମାଗଧୀ, ଅର୍ଦ୍ଧମାଗଧୀ ସମ୍ଭାବିତାମାନଙ୍କର ଗୀତମାନଙ୍କୁ ସଂଗ୍ରହ ବା ରଚନା କରି ଗାଇବା ଉଚିତ୍।

## କ୍ଷୁଦ୍ର ଗୀତର ଉଦାହରଣ

## ଧ୍ରୁବପଦ।

(ଏହା ତିନି ପଦ ବିଶିଷ୍ଟ)

ଗୌରୀ-ରାଗେଣ

ଚୌୟା ଚନ୍ଦନ ଅନୁ-ଅଙ୍ଗେଚଢ଼ା।

ଅବଡ଼ଭାରେ ବଚନେ ଆଜୁ ହେ ବନ୍ଦେ।

ଆଜୁ କୋକିଳ ଧ୍ୱନି ପୁନଃ ପୁନଃ ସୁନ ବିମଳ।

ପବନ ବହୁ ମନ୍ଦ ମନ୍ଦ॥ ୧ ॥

ଆଜୁ ଗୋବିନ୍ଦ ମିଳିତ ମେରେ ମନ୍ଦିର।

ଶୁନତ ପୁଲକ ପୂରିତ ସବ ଅଙ୍ଗ।

ହେରତ ନୟନ ଅମୃତ ରସ ସିଞ୍ଚତ।

କୁସୁମ ସେଜୁକର କରତ ଅତି ରଙ୍ଗ॥ ଧ୍ରୁ ॥

ବିରହୀ ଯୁବତି-ଜନମାରଣ କାରଣ।

କାମକୁଟିଳ ଅବ କାକରତ ଦୂରତ ॥
କୃଷ୍ଣଦାସ ପ୍ରଭୁ ଓହି କରୁଣାମୟ ।
ଅବହିଁ କରତ ମେରେ ଦୁଃଖ ଅନ୍ତ ॥

## ଚିତ୍ରପଦା

### ଉଦାହରଣ- ଗୁଣ୍ଡକିରୀରାଗଃ

କଳୟତି ନୟନଂ ଦିଶି ଦିଶି ବଳିତମ୍ ।
ପଙ୍କଜମିବମୃଦୁ ମାରୁତ ଲଳିତମ୍ ॥ ୧ ॥
କେଳି ବିପିନଂ ପ୍ରବିଶତି ରାଧା ।
ପ୍ରତିପଦସମୁଦିତ ମନସିଜ- ବାଧା- ଧ୍ରୁ
ଜନୟତୁ ରୁଦ୍ର ଗଜେଶମୁଦିତମ୍ ।
ରାମାନନ୍ଦ ରାୟ କବି ଗଦିତମ୍ ॥

## ଚିତ୍ରକଳା

### ଉଦାହରଣଂ- ମହ୍ଲାରରାଗେଣ

ଅନାଦୃତ ବିଷୟୋପଭୂକୋ ମମ ଦିନାନୀଶ ଗତାନି ବୃଥା ।
ମନାଗପି ନ ସ୍ମରତି ମନୋ ମେ ଜନାର୍ଦ୍ଦନ ତବ ଚରଣକଥା ॥
କା ଗତିରଚ୍ୟୁତ ମେ ଆଗତମନ୍ତକଭୟମତ୍ୟୁଗ୍ରମ୍ ॥ ଧ୍ରୁ ॥
ଦୈବୀ ତବ ମାୟା ଦନୁଜାନ୍ତକ ଦେବତୟା ମୋହିତହୃଦୟମ୍ ।
ପାବୟ ଦାସଂ ପରମପଦାଧିପ ଶ୍ରୀଧର ଧର୍ମପୁରୁଷ ସଦା ॥

## ପାଞ୍ଚାଳୀ

ଉଦାହରଣ- କୃଷ୍ଣବିଜୟ, ବାଳଚରିତ, ଯଜ୍ଞ ଗୀତାଦି ଏହା ପ୍ରଚୀନ; ଅଧୁନା ଅପ୍ରାପ୍ୟ । ଘୋଷାସହିତ ପଦାବଳୀ; ଘୋଷାରହିତ

ପଦାବଳୀ ଯଥା ଓଡ଼ିଆ ଭାଷାରେ ଇକ୍ଷିତ ଛାନ୍ଦ ଓ ଘୋଷାସହିତ ବହୁ ପଦବିଶିଷ୍ଟ ଗୀତ ଏହା ଆଦିତାଳ, ନିସାରି ମଠତାଳ ଛାଡି ସାଲଗୋଚ୍ଛିରେ ସବୁ ତାଳ ବାଜିବ। ଏହି କ୍ଷୁଦ୍ର ଗୀତରେ ଅନ୍ୟାନ୍ୟ ପ୍ରକାର ବହୁତ ଭେଦ ସମ୍ଭବ ହୋଇଥାଏ। ଏହା ସ୍ୱଦେଶ ଭାଷାରେ ରଚିତ ହୁଏ। ଓଡ଼ିଶାର ସ୍ୱାଧୀନତା ଲୋପପରେ ତାହାର ପ୍ରଚୀନ ଭାଷା ଓ ସେଥିର ସଙ୍ଗୀତର ଚର୍ଚ୍ଚା ପ୍ରତି ଲୋକଙ୍କ ଦୃଷ୍ଟି ପଡିବାରେ ନାନା ବାଧାବିଘ୍ନ ଘଟିଲା। ଲୋକେ କରିବାକୁ ସୁବିଧା ପାଇଲେ ନାହିଁ। ତତ୍‌ପରେ ଆଜି ସୁଦ୍ଧା କ୍ରମଶଃ ଚଳିଆସୁଥିବା ଭାଷାରେ ଲିଖିତ ପୁରାଣ, ଶାସ୍ତ୍ର, ପଦ୍ୟ, ଗଦ୍ୟ, କାବ୍ୟ, କବିତା, ଅମିତ୍ରାକ୍ଷର ଛନ୍ଦ, ଚୌତିଶା, ଚୌପଦୀ, ଛନ୍ଦ, ଚମ୍ପୁ, ଭଜନ ଜଣାଣ, ଢଗଢ଼ମାଳି, ପ୍ରବାଦକାବ୍ୟ ପ୍ରଭୃତି ଲକ୍ଷଣମାନ ଏହି ଗ୍ରନ୍ଥରେ ଦିଆଗଲା। ତାହା ସବୁ ଓଡ଼ିଶା ଦେଶ ପ୍ରଚଳିତ ସାଧାରଣ ବ୍ୟବହାରୀୟ ଭାଷାରେ ରଚିତ।

## ଛନ୍ଦ

ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଅଛି ଯେ, ପ୍ରଥମେ ନାଦ ଜାତ ହୁଏ। ସେହି ନାଦ ଓଁ କାରରୂପୀ ପ୍ରଥମ ସ୍ୱରରୂପରେ ଗୃହୀତ ହୁଏ। ସେହି ସ୍ୱରରୁ ଶ୍ରୁତି ଜାତ ହୁଏ। ତାହାର ଆଭାସ ଆମ୍ଭେମାନେ ଶିଶୁର ମୁଖରୁ ଶୁଣିବାକୁ ପାଉଁ। ତାହା-ମା-ବା-ପା ରୂପରେ ପ୍ରକାଶ ପାଏ। କ୍ରମଶଃ ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ପ୍ରକୃତ ଶବ୍ଦ-ଶିକ୍ଷାରୁ ଉଚ୍ଚାରଣ କରେ। ସେହି ନାଦ ପ୍ରଥମତଃ ଅନାହତ, ପରେ ଆହତରୂପରେ ପ୍ରକାଶ ପାଏ। ଆହତ ସ୍ୱର କଣ୍ଠ ତାଳୁ ଆଦି ଆଘାତ ଯୋଗୁ ନାନା ରୂପ ଧାରଣ କରେ। ସେହି

**ପ୍ରାଥମିକ ସ୍ୱର ଧ୍ୱନିରୂପରେ ସ୍ୱରବର୍ଣ୍ଣ ପ୍ରଧାନ, କାରଣ ବିନା ସ୍ୱରବର୍ଣ୍ଣସାହାଯ୍ୟରେ ବ୍ୟଞ୍ଜନବର୍ଣ୍ଣ ସ୍ପଷ୍ଟ ଉଚ୍ଚାରିତ ହୁଏ ନାହିଁ। ସେହି ନାଦ ବା ପ୍ରାଥମିକ ସ୍ୱର ପ୍ରଥମରେ ଶୁଣାଗଲେ ତାହା ଶ୍ରୁତିରୂପ ଧାରଣ କରେ।**

ଏହି ସ୍ୱର-ବିଞ୍ଜନ ଅକ୍ଷରସଂଯୋଗରେ ପଦ ବା ବାକ୍ୟ ଓ ଭାଷାର ସୃଷ୍ଟି। ପୁଣି ତାହା ସହିତ ପ୍ରତ୍ୟେକ ଅକ୍ଷର ଉଚ୍ଚାରଣ ସମୟକୁ ମାତ୍ର ବା କଳା ନାମରେ ବୁଝାଯାଏ। ଯେଉଁଠାରେ ବାକ୍ୟ ଅନିୟମିତ ସମୟମଧ୍ୟରେ ପ୍ରକାଶ କରାଯାଏ ଯାହା ଛନ୍ଦହୀନ ତାହାକୁ ଗଦ୍ୟ କୁହାଯାଏ ଏବଂ ଯାହା ନିୟମିତ ସମୟ ମଧ୍ୟରେ ଯତିପାତ ସହିତ ମନର ଭାବ ପ୍ରକାଶ କରିବାନିମନ୍ତେ ପଦମାନଙ୍କୁ ଛନ୍ଦି ବାକ୍ୟ ରଚନା କରାଯାଏ ତହିଁରୁ ଛନ୍ଦ ବା ପଦ୍ୟର ଉତ୍ପନ୍ନ ହୁଏ। ଏହି ଛନ୍ଦ ଓ ପଦ୍ୟରୁ ନାନାପ୍ରକାର ଗୀତ ଓ ଛନ୍ଦର ସୃଷ୍ଟି ଏବଂ ଏହି ଛନ୍ଦରୁ ବିଭିନ୍ନ ପ୍ରକାର ତାଳ ହୁଏ। ଏହି ଛନ୍ଦ ଓ ଗୀତମାନଙ୍କରେ ବ୍ୟକ୍ତ କରାଯାଇ ଥିବା ମନର ଭାବ ଅନୁସାରେ ଭାଷାକୁ ସ୍ୱର-ତାଳ ସଂଯୋଗରେ ପ୍ରାକୃତିକ ରୀତିକୁ ଲକ୍ଷ୍ୟ ଓ ମେଳ ରଖିପ୍ରକାଶ କରି ରସଭାବୋଦ୍ରେକ କରାଇ ଫଳପ୍ରଦ କରାଇବାରୁ ନାନାପ୍ରକାର ରାଗ ସ୍ୱତଃ ଉଦ୍ଭବ ହୋଇଥାନ୍ତି। ତାତ୍ପର୍ଯ୍ୟ ଅନୁସାରେ ରାଗ ନାମ ଓ ସମୟ ଇତ୍ୟାଦି ସ୍ଥିର. କରାଯାଇଥିବା ଉପଲବ୍ଧି ହୁଏ। ଏହି ନିୟମକୁ ରକ୍ଷା କରି ମିଳାଇ ଗାନବାଦନ କରିବା ପ୍ରାକୃତିକ। ଏହାଦ୍ୱାରା ସର୍ବସିଦ୍ଧି ହୁଏ। ଏହାର ବିପରୀତ୍ ଅପ୍ରାକୃତିକ ଓ ଲକ୍ଷଣ ହାନିକାରକ। ତାହାକୁ ତ୍ୟାଗ କରିବ।

ସଂସ୍କୃତ ଛନ୍ଦ ଛାନ୍ଦ ଅନୁକରଣରେ ଓଡ଼ିଆ ଭାଷାର ସାହିତ୍ୟ କବିଙ୍କର ଇଚ୍ଛାନୁସାରେ ବହୁ ଅକ୍ଷର ବହୁ ପଦ ସଂଯୋଗରେ ରଚିତ, ଯାହାର ଘୋଷା ବାଧ୍ୟବପଦ ନାହିଁ, ତାହାକୁ ଛାନ୍ଦ କହନ୍ତି। ଏହାର ପ୍ରଥମ ପଦକୁ ଯେପରି ଗାଇବ, ସେହିପରି ସମସ୍ତ ପଦକୁ ଗାଇବାକୁ ହେବ। ଏହା ଅଧ୍ରୁବାପାଞ୍ଚାଳୀ ଅଟେ। ଛାନ୍ଦକୁ ଗାୟକଙ୍କ ଇଚ୍ଛାନୁସାରେ ଗାଇଲେ ତାହା ସମ୍ପୂର୍ଣ୍ଣ ରସଭାବ ବ୍ୟଞ୍ଜକ ହେବ ନାହିଁ। ତାହା କେବଳ ପଦ୍ୟାବୃତ୍ତି ହେବ; କିନ୍ତୁ ଛାନ୍ଦ ସମର୍ଥୀୟ ରାଗ ତାଳସହିତ ଗାଇଲେ ସର୍ବତୋଭାବେ ରସଭାବବ୍ୟଞ୍ଜକ ହୁଏ।

ଛାନ୍ଦକୁ ରାଗ-ତାଳ-ବିସ୍ତାରସଂଯୋଗରେ କେହି ଗାଇବାର ଦେଖାଯାଏ ନାହିଁ। ମଧ୍ୟ ଏହା ତାହାର ରୀତି ନୁହେଁ। ମାତ୍ର ଗାଇବ ସମୟରେ ସ୍ୱର, ରାଗ ଓ ତାଳକୁ ରକ୍ଷା କରି ଅକ୍ଷର ସହିତ ସ୍ୱର ବିସ୍ତାର କରିଥାନ୍ତି। କିନ୍ତୁ ରାଗ-ତାଳରେ ଗାଇଲେ ପ୍ରଥମେ ରାଗକୁ ଅଳ୍ପ ଆଳାପ କରି ଗାଇବା ଉଚିତ। ଏହି ଛାନ୍ଦମାନଙ୍କରେ ଅନେକ ସ୍ଥାନରେ ରାଗର ନାମ ଲେଖାଅଛି; କିନ୍ତୁ ତାଳର ନାମ ଲେଖାଥିବା ବହୁତ କମ୍ ଦେଖାଯାଏ। କେତେକ ଛାନ୍ଦରେ ଉତ୍କଳ ପ୍ରଚଳିତ ବୃତ୍ତ ବାଣୀରେ ଗାଇବାର ଲେଖାଅଛି ଓ ଅନେକ ଛାନ୍ଦରେ ବୃତ୍ତ ବା ବାଣୀର ନାମ ଓ ବୃତ୍ତ ଓ ରାଗନାମ ଉଭୟ ଲେଖାଅଛି। ବୃତ୍ତ ଯଥା- କାଳି, ଗଡ଼ମାଳିଆ, ଚକ୍ରକେଳି; ଚୋଖୀ, ଢ଼ୁମ୍ପା, ଧୀପା, ରଣବିଜେ, ମୁନିବରବାଣୀ, ପୋଇ, କୋଇଲି, ସଙ୍ଗମଟିଆରି, କଳସା, ସଜନୀ ଚୌତିଶା, ଆଷାଢ଼ଶୁକ୍ଳ- ଏହିପରି ଆହୁରି କେତେକ ବାଣୀଅଛି। ଏହି

ବାଣୀମଧ୍ୟରେ କେତେ ବାଣୀ ସହିତ ରାଗନାମ ଲେଖାଅଛି। ଛାନ୍ଦକୁ ରାଗ-ତାଳ ସହିତ ନ ଗାଇଲେ ତାହାକୁ ପଦ୍ୟାବୃତ୍ତି କୁହାଯିବ। ଏହା ଅଧୁବା ପଞ୍ଚାଳୀମଧ୍ୟରେ ଗଣ୍ୟ। ଏହି ଛାନ୍ଦ ସଂସ୍କୃତ ଛନ୍ଦରୁ ଆସି କେତେକ ଛନ୍ଦର ନାମ ଓଡ଼ିଆରେ ନାମ କରାଯାଇଅଛି ଓ କେତେକ ଛାନ୍ଦର ଓଡ଼ିଆ ନାମ ଦିଆହୋଇ ନାହିଁ। ତାହାକୁ ଯେଉଁ ରାଗରେ ଗାଇବ, ତାର ନାମ ଲେଖାଅଛି। ଯେଉଁ ସଂସ୍କୃତ ଛନ୍ଦର ଓଡ଼ିଆ ନାମ ନାହିଁ, ତାହାର ସଂସ୍କୃତ ବୃତ୍ତି ନାମ ଓଡ଼ିଆରେ କୁହାଯିବ ତହୁଁରୁ କେତେଗୋଟି ଲେଖାଗଲା।

| ସଂସ୍କୃତ ଛନ୍ଦର ନାମ | | ଓଡ଼ିଆ ନାମ | | ଗାଇବା ରାଗ ନାମ |
|---|---|---|---|---|
| ୧. କମଳିନୀ | ବୃତ୍ତ | କମଳିନୀ | ବୃତ୍ତ | ମଙ୍ଗଳଗୁର୍ଜରୀ |
| ୨. ସେଫାଳିକା | '' | ସେଫାଳିକା | '' | ଶଙ୍କରାଭରଣ |
| ୩. ନବମାଳିକା | '' | ନବମାଳିକା | '' | ଚିନ୍ତାଭୈରବ |
| ୪. କୁନ୍ଦ | '' | କୁନ୍ଦ | '' | ରାମକେରି |
| ୫. ଇନ୍ଦିବର | '' | ଇନ୍ଦିବର | '' | କୁମ୍ଭକାମୋଦି |
| ୬. ମାଳତୀଗୁଛ | '' | ପୋଇବାପାଣି | '' | ଛାନ୍ଦର ରସଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |
| ୭. ଚମ୍ପକମାଳା | '' | ଚମ୍ପକମାଳା | '' | କାମୋଦୀ |
| ୮. ଦେବବଲ୍ଲଭ | '' | ଦେବବଲ୍ଲଭ | '' | ବଙ୍ଗଳାଶ୍ରୀ |
| ୯. ଅଶୋକ | '' | ଅଶୋକ | '' | କଲ୍ୟାଣ ଆହାରି |

| | | | | |
|---|---|---|---|---|
| ୧୦. ବୈଜୟନ୍ତି | ” | ଚୋଖି | ” | ରସଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |
| ୧୧. ମଲ୍ଲିଗୁଚ୍ଛ | ” | ମଲ୍ଲିଗୁଚ୍ଛ | ” | କେଦାର କାମୋଦି |
| ୧୨. ରଙ୍ଗିଣୀ | ” | ସଙ୍ଗମତୀ ଥାରି | ” | ରସ-ଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |
| ୧୩. ଯୂଥିକା | ” | ଯୂଥିକା | ” | ଘଣ୍ଟାରବ |
| ୧୪. ଯାତୀମାଳା | ” | ଆଷାଢ଼ ଶୁକ୍ଲବାଣି | ” | ରସ-ଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |
| ୧୫. ମାଳତୀ ମାଳା | ” | ରସକୁଲ୍ୟା | ” | ସର-ଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |
| ୧୬. କମଳମାଳା | ” | କମଳମାଳା | ” | ପାହାଡ଼ିଆ କେଦାର |
| ୧୮. ଶିରିଷ | ” | ଶିରିଷ | ” | ସିନ୍ଦୂରା |
| ୧୯. କରବୀର ମାଳା | ” | କରବୀରମାଳା | ” | କନଡ଼ା |
| ୨୦. କୁବଳୟ | ” | ମୁନିବର | ” | ରସ-ଭାବ ଅନୁସାରେ |
| ୨୧. ପାରିଜାତ | ” | ପାରିଜାତ | ” | ପଞ୍ଚମ ବରାଡି |
| ୨୨. ଜବା | ” | କାଳୀ | ” | ରସ-ଭାବ ଅନୁସାରେ ରାଗ ନିର୍ଣ୍ଣୟ କରିବ |

ଏହି ଛାନ୍ଦମାନଙ୍କରେ କବିଙ୍କ ଲିଖିତ ନିର୍ଦ୍ଦିଷ୍ଟ ରାଗ ଓ ବାଣୀକୁ ଠିକ୍ ରଖି ଗାଇବା ଉଚିତ୍। ତହିଁରେ ରାଗତାଳ ସହିତ ରସଭାବ ଉତ୍ତମରୂପେ ପ୍ରକାଶ ହେବ। ଛାନ୍ଦ ଗାଇବା ରାଗତାଳ ନିୟମରେ ହୁଏ। ତାହା କରିବା ନିତାନ୍ତ ଆବଶ୍ୟକ। ଯେଉଁଥିରେ ରାଗ ନାମ ଲେଖା ନାହିଁ, ବାଣୀ ବା ବୃତ୍ତ ଲେଖାଅଛି, କିମ୍ବା କୌଣସି ସ୍ଥାନରେ ବୃତ୍ତର ନାମ ଯଦି ଲେଖା ନଥାଏ ତେବେ ଜ୍ଞାନୀ ଗାୟକ ଭାଷାର ଭାବ, ରସ ଓ ଛନ୍ଦକୁ ଲକ୍ଷ୍ୟ ରଖି ରାଗ ତାଳ ଆଦି ସଂଯୋଗ ସହିତ ଗାନ କରିବା ଉଚିତ୍। ତାହା ନ କରି ମନଇଚ୍ଛା ଭାଷା ବ୍ୟକ୍ତ କରି କୌଣସି ଗୋଟିଏ ତାଳ ସହିତ ସ୍ୱର ପ୍ରୟୋଗ କରି ସାଧାରଣମାନେ ଯାହା ଅନାୟାସରେ ଗାନ କରନ୍ତି, ତାହା ପ୍ରକୃତ ଛାନ୍ଦ ଗାଇବାର ସମ୍ପୂର୍ଣ୍ଣ ରୂପ ନୁହେଁ। ତାହା ପଦ୍ୟାବୃତ୍ତି ମଧ୍ୟରେ ଗଣ୍ୟ। ଆହୁରି ମଧ୍ୟ କେତେକ ବୃତ୍ତ ଓଡ଼ିଆରେ ଲିଖିତ କୌଣସି ଏକ ଛାନ୍ଦଗୀତର ବୃତ୍ତକୁ ସେହି ଛାନ୍ଦର ପ୍ରଥମ ପାଦର ପ୍ରଥମ ଧାଡ଼ି ଅଥବା କେତେକାଂଶ ଉଲ୍ଲେଖ କରାଯାଇଅଛି। ତାହାକୁ ଅନୁସରଣ କରି ଗାଇବାକୁ ହୁଏ। ତାହା ଯେଉଁ ଗୀତବୃତ୍ତକୁ ଅନୁସରଣ କରୁଅଛି, ସେହି ଛାନ୍ଦକୁ ବୁଝି ଗାଇବା ଉଚିତ୍। ଏପରି ଉକ୍ତିରେ ମଧ୍ୟ ଭ୍ରମର ସମ୍ଭାବନା ଅଛି। ଏହା ପାଞ୍ଚାଳୀ ମଧ୍ୟରେ ଗଣ୍ୟ। ଏଥିରେ ରାଗ ଶୁଦ୍ଧ ରହିପାରେ ନାହିଁ। ଏହାକୁ ଲୋକେ ଆଠତାଳ ତ୍ରିପଟା, ଝୂଲା ବା ତାଳ ଓ କେହି କେହି ଝମ୍ପ ତାଳମାନଙ୍କରେ ଗାଇବାର ବିଶେଷ ଦେଖାଯାଏ। ସଙ୍ଗୀତଜ୍ଞ ଓ ସାଧକ ବ୍ୟତୀତ ରାଗ-ତାଳ ଅନୁସାରେ ଅନ୍ୟ କେହି ଗାଇପାରନ୍ତି ନାହିଁ।

## ଚୌପଦୀ

ଏହା ସଙ୍ଗୀତ-ଶାସ୍ତ୍ର-ନିୟମସିଦ୍ଧ ଗୀତ। ଏହା ଶୁଦ୍ଧ ଗୀତ ଓ ଛାୟାଲଗ ଓ କ୍ଷୁଦ୍ର ଗୀତରେ ହୁଏ। ଏହା ଶାସ୍ତ୍ରାନୁସାରେ ଦୁଇପଦ, ତିନି ପଦ ଓ ଚାରି ପଦ ବା ଧାତୁ ହୁଏ। ଚାରିପଦରୁ ଅଧିକ ହୁଏ ନାହିଁ। ଯେଉଁଠାରେ ଦୁଇପଦ ହୁଏ, ସେଠାରେ ପ୍ରଥମ ପଦକୁ ସ୍ଥାୟୀ ବା ଧ୍ରୁବ ବା ଘୋଷା କୁହାଯାଏ। ଦ୍ୱିତୀୟ ପଦକୁ ପ୍ରଥମ ପଦ ବା ଖଣ୍ଡକୁ ଉଦ୍‌ଗ୍ରାହ ଓ ଦ୍ୱିତୀୟ ପଦ ବା ଖଣ୍ଡକୁ ଉଚ୍ଛଖଣ୍ଡ ବା ଧ୍ରୁବ ଓ ତୃତୀୟ ପଦ ବା ଖଣ୍ଡକୁ ଭଣିତା ବା ଆଭୋଗ କହନ୍ତି ଏବଂ ଯେଉଁଠାରେ ଚାରିପଦ ଥାଏ ସେଠାରେ ପ୍ରଥମ ପଦକୁ ସ୍ଥାୟୀ ବା ଧ୍ରୁବ ବା ଘୋଷା, ଦ୍ୱିତୀୟ ପଦକୁ ଅନ୍ତରା, ତୃତୀୟ ପଦକୁ ସଞ୍ଚାରୀ ଓ ଚତୁର୍ଥ ପଦକୁ ଆଭୋଗ କହନ୍ତି। ଏହି ଗୀତ ପ୍ରବନ୍ଧ ଓ ଛାୟାଲଗ ଓ କ୍ଷୁଦ୍ର ଗୀତ ପ୍ରକାରମାନଙ୍କ ମଧ୍ୟରେ ଯେ ଯେଉଁ ପ୍ରକାରରେ ରଚନା ହୋଇଅଛି, ତାହାକୁ ସେହି ସେହି ଲକ୍ଷଣ ଅନୁସାରେ ଗାଇବା ଉଚିତ୍। ଯଦି ସେପରି ଲକ୍ଷଣ ଯୁକ୍ତରେ ରଚନା ହୋଇ ନଥାଏ, ସେ ଗୀତ କେବଳ କ୍ଷୁଦ୍ର ଗୀତ ପାଞ୍ଚାଳୀ ଲକ୍ଷଣ ଅନୁସାରେ ଗାଇବା ଉଚିତ୍। ଲକ୍ଷଣ ଯୁକ୍ତରେ ଚୌପଦୀକୁ ନ ଗାଇଲେ ତାହା ପଦ୍ୟାବୃତ୍ତି ଗାଇବା ହୋଇଯାଏ। ସଙ୍ଗୀତଲକ୍ଷଣଯୁକ୍ତ ଗାଇବା ସାଧକ ବ୍ୟତୀତ ଅନ୍ୟ କେହି ଗାଇପାରନ୍ତି ନାହିଁ।

## ଚୌତିଶା

ଓଡ଼ିଆ ଭାଷାରେ ବର୍ଣ୍ଣମାଳା ଅନୁସାରେ 'କ' ଅକ୍ଷରଠାରୁ 'କ୍ଷ' ଅକ୍ଷର ପର୍ଯ୍ୟନ୍ତ ଚୌତ୍ରିଂଶ ଗୋଟି ଅକ୍ଷର ଉପରେ କବିଙ୍କର

ଛାନ୍ଦ ରଚନାକୁ ଚୌତିଶା କହନ୍ତି।ତାହାର ଗାଇବା ଛାନ୍ଦ ସମାନ ଅଟେ। ଚୌତିଶା 'କ୍ଷ'ଠାରୁ 'କ' ଅକ୍ଷରପର୍ଯ୍ୟନ୍ତ ମଧ୍ୟ ଅଛି। ଏହା ଅଧ୍ରୁବା ପାଞ୍ଚାଳୀ କ୍ଷୁଦ୍ରଗୀତ ଅନ୍ତର୍ଗତ ଅଟେ। ଏହି ରୀତିରେ 'ଅ' ଅକ୍ଷରଠାରୁ 'କ୍ଷ' ପର୍ଯ୍ୟନ୍ତ ପଦ୍ୟାବଳୀ ଅଛି। ତାହାକୁ ଚୌତିଶା କୁହାଯାଏ ନାହିଁ। ତାହାକୁ ଅକ୍ଷମୟୀ କହିବା ଉଚିତ ଅଟେ। ଏହାର ଚଳନ ବହୁତ କମ୍ ଦେଖାଯାଏ।

## ଚମ୍ପୂ

ଓଡ଼ିଆରେ ଚମ୍ପୂ ନାହିଁ। ଯାହା ଚମ୍ପୂ ନାମରେ କୁହାଯାଉଛି, ତାହା ସାଧାରଣ ଗୀତ। ଗଦ୍ୟ ଓ ପଦ୍ୟ ମିଶ୍ରଣରେ ଚମ୍ପୂ ହୁଏ। ବଳଦେବ କବିସୂର୍ଯ୍ୟ ସଂସ୍କୃତରେ ଚମ୍ପୂ ଲେଖି ତାହା ସଙ୍ଗେ ଓଡ଼ିଆରେ ଗୀତ ଆକାରରେ ପଦ୍ୟାବଳୀ ବସାଇଅଛନ୍ତି। ତାହା ମଧ୍ୟରେ କେତେକ ଅଧ୍ରୁବା ଓ ଅଧିକାଂଶ ଧ୍ରୁବା ପାଞ୍ଚାଳୀ। ଏହା କ୍ଷୁଦ୍ର ଗୀତ ଅନୁସାରେ ରଚନା ଅଟେ। ଏହି ଗୀତ ଗୁଡ଼ିକର ରଚିତ ପୁସ୍ତକର ନାମ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ହେତୁ ଓ ଏଥିରେ ଯେ ସଂସ୍କୃତ ଗଦ୍ୟ ପଦ୍ୟ ଅଛି ସେହି କାରଣରୁ ଏହାର ନାମ ଚମ୍ପୂ। ଏହା ମଧ୍ୟ 'କ'ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣମାଳାକ୍ରମରେ ରଚିତ ହୋଇଅଛି।

## ଭଜନ ଓ ଜଣାଣ

ଓଡ଼ିଆ ଭାଷାରେ ବହୁତ ଭଜନ, ଜଣାଣ ଓ ଗୀତ ଲେଖାଅଛି। ତହିଁରେ କେତକରେ ରାଗ ଓ ତାଳର ନାମ ଲେଖାଅଛି, କେତେକରେ ଲେଖାନାହିଁ। ସେସବୁ ମଧ୍ୟରେ କେତେକ ଅଧ୍ରୁବା ଅର୍ଥାତ୍ ଛାନ୍ଦ

ଆକାରରେ ଓ କେତେକ ଘୋଷା ଓ ପଦ ଅନୁସାରେ ଚାରି ପଦରୁ ଅଧିକା ପଦରେ ମଧ ବହୁତ ଲେଖାଥିବା ଦେଖାଯାଏ। ତାହାକୁ ଲୋକେ ଯଥେଚ୍ଛଭାବେ ଗାନ କରନ୍ତି; ମାତ୍ର ତାହା ଠିକ୍ ନୁହେଁ। ସେପରି ଗାଇବାରେ ତାତ୍ପର୍ଯ୍ୟ କିଛି ନ ଥାଏ। କିନ୍ତୁ ସାଧକ, ଗାୟକ, ସାଙ୍ଗୀତିକ ନିୟମରେ ଧ୍ୟାନ କଲେ ସମ୍ପୂର୍ଣ୍ଣ ଭକ୍ତିଭାବ ପ୍ରକାଶ ହୋଇଥାଏ। ଏହା ଦ୍ରୁତ ଗତିରେ ଏକ ତାଳ, ଯତିତାଳ, ଆଠତାଳ ଝୁଲା, ତ୍ରିପୁଟା ଇତ୍ୟାଦି ତାଳମାନଙ୍କରେ ବିଶେଷ ଗାଇଥାନ୍ତି; କିନ୍ତୁ ତାହାକୁ ମଧୁର ସ୍ୱର, ରାଗ ଓ ତାଳ ସଂଯୋଗରେ ଭକ୍ତିରସରେ ଗାନ କରାଗଲେ ଅତି ସୁନ୍ଦର ଓ ହୃଦୟସ୍ପର୍ଶୀ ହୋଇଥାଏ। ଝୁଲା ତାଳ ବୀରରସ ଜାତୀୟ; ସେଥିରେ ଗାନ କଲେ ଭଜନର ଯଥାର୍ଥତା ରହେ ନାହିଁ। ଭଜନ, ଜଣାଣ ଭିକାରୀଠାରୁ ଲଗାଇ ନାନାବିଧ ଲୋକେ ନାନା ପ୍ରକାରରେ ଗାଇଥାନ୍ତି ଓ ସଭାମାନଙ୍କରେ ଗାନ ହୁଏ। ସାଧାରଣ ଲୋକେ ଯେପରି ଏହାକୁ ଗାଆନ୍ତି, ତାହା କ୍ଷୁଦ୍ର ଗୀତ ନିୟମର କିଛି ଅଂଶରେ ସୁଦ୍ଧା ହୁଏ ନାହିଁ। ତାହା ଅନିୟମ କେବଳ ପଦ୍ୟାବୃତ୍ତି ନିଶାଗାଇବା ଜାତୀୟ ଭାଷା-ଗୀତମାତ୍ର। ସେହିପରି ବର୍ତ୍ତମାନ ହେଉଥିବା ଆଧୁନିକ ଗୀତ ଓ ଅନ୍ୟାନ୍ୟ କେତେକ ଗୀତ ଦେଖାଯାଏ। ଏହିପରି ଅନିୟମ ଅଲକ୍ଷଣ ଗାଇବା-ରୀତି ପଦ୍ୟାବୃତ୍ତି ଗାନ ମଧ୍ୟରେ ଗଣ୍ୟ।

## ପୁରାଣ, ଶାସ୍ତ୍ର, ଗଦ୍ୟ ଓ କାବ୍ୟ-କବିତା

ଓଡ଼ିଆ ଭାଷାରେ ପୁରାଣମାନ ଛାନ୍ଦ ନିୟମାନୁସାରେ କେହି ନଅ ଅକ୍ଷର, ଏଗାର ଅକ୍ଷର, ତେର, ଚଉଦ ବା ତତୋଽଧିକାକ୍ଷର

ସଂଯୋଗ ହୋଇ ଛାନ୍ଦ ବା ପଦ୍ୟ ଆକାରରେ ଅଧ୍ୟାୟବିଶିଷ୍ଟ ହୋଇ ବର୍ଣ୍ଣନା କରାଯାଇଅଛି। ପ୍ରତ୍ୟେକ ଅଧ୍ୟାୟରେ ଏକଶତ ପଦରୁ ଅଧିକ ପଦ ବିଶିଷ୍ଟ ହେଲେ ହେଁ ତାହା ଦୋଷଯୁକ୍ତ ନୁହେଁ। ସେହି ପୁରାଣ, ଯଥା-ରାମାୟଣ, ମହାଭାରତ, ଭାଗବତ, ଅଗ୍ନିପୁରାଣ, ପଦ୍ମପୁରାଣ, ହରିବଂଶ, ନୃସିଂହପୁରାଣ ପ୍ରଭୃତି ପଦ୍ୟମାନଙ୍କୁ ପାଠ କରିବା ବକ୍ତା ସାଧାରଣତଃ ଯତିପାତ ସହିତ କଥା କହିବା କିମ୍ବା ବକ୍ତୃତା ଦେବାତୁଲ୍ୟ ବଖାଣିଥାନ୍ତି। ଅନିୟମିତ ଅକ୍ଷରବିଶିଷ୍ଟ ଥିବା ପଦ୍ୟାବଳିକୁ ଦାଣ୍ଡିବୃତ୍ତ କହନ୍ତି। ଏସବୁରେ ରାଗ କି ତାଳକୁ ଆଦୌ ଦୃଷ୍ଟି ଦିଆଯାଏ ନାହିଁ। କ୍ୱଚିତ୍ ଉକ୍ତ ତାଳ ପ୍ରୟୋଗ କରି ଖୋଳ-କରତାଳ ସହିତ ଭାଗବତ ଗାଇବାର ଦେଖାଯାଏ। ଏହା ଗୀତମଧ୍ୟରେ ଗଣ୍ୟ ନୁହେଁ। ଏହା ପଦ୍ୟାବଳୀ ଅଟେ। କିନ୍ତୁ କେତେକ ଗ୍ରନ୍ଥକାର ତାକୁ ଗୀତ ଆଖ୍ୟା ଦେଇଥିବା ଦେଖାଯାଏ। ଏହା ଛଡ଼ା କେତେକ ଶାସ୍ତ୍ର ଯଥା ଚିକିତ୍ସା, ଜ୍ୟୋତିଷ ଓ ଆହୁରି ଅନେକ କଳା-ଶାସ୍ତ୍ର ଓ କାବ୍ୟ-କବିତା ଓଡ଼ିଆ ଭାଷାରେ ଯାହା ପଦ୍ୟରେ ଲେଖାଅଛି, ତାହା ଯେପରି ସଂସ୍କୃତ ଶ୍ଳୋକଦ୍ୱାରା ବିଦ୍ୟାକୁ ମୁଖସ୍ଥ କରିବାକୁ ହୁଏ ସେହିପରି ବିଦ୍ୟାଭ୍ୟାସ ମୁଖସ୍ଥ ରଖିବାକୁ ବିଦ୍ୟାର୍ଥୀପକ୍ଷେ ସହଜ ହେବାଭଳି ପଦ୍ୟାକାରରେ ରଚନା କରାଯାଇଅଛି। ତାହା କୌଣସି ପ୍ରକାରରେ ଗାନ ହୁଏ ନାହିଁ। ଏହାଛଡ଼ା ଓଡ଼ିଶାରେ ବର୍ଷର ବାରମାସରେ ପ୍ରଚଳିତ କେତେକ ଓଷା, ବ୍ରତ, ପୂଜାମାନଙ୍କର କଥାମାନ ପଦ୍ୟାକାରରେ ରଚିତ ହୋଇଅଛି। ତାହା ମଧ୍ୟ ବକ୍ତୃତା ଦେଲାଭଳି ପାଠ କରାଯାଏ। କେହି ସ୍ୱର, ତାଳ ପ୍ରୟୋଗ ସହିତ ଗାଇପାରନ୍ତି; ମାତ୍ର ତାହା

ଦରକାର ନୁହେଁ। ଏହା ଛଡ଼ା ଚଷା, ଶଗଡ଼ିଆ, ନାଉରି ଓ ଅନ୍ୟାନ୍ୟ ପାଟକ ଜାତିଆଣ ଗୀତ ଅନ୍ୟାନ୍ୟ କେତେକ ପଦ୍ୟାବଳି ଶ୍ରମିକମାନେ ଗାଇଥାନ୍ତି। ମାତ୍ର ତହିଁରେ ପ୍ରାୟ ନିୟମିତ ଛନ୍ଦ କି ତାଳ ନ ଥାଏ। ମଧ୍ୟଲୟର ବୈଷମ୍ୟ ଥାଏ ଏବଂ ଭିକ୍ଷା ପାଇବା ନିମନ୍ତେ ଓ ପଶୁ ନଚାଇବା, ସାପ ଖେଳାଇବା ଓ ଗାନ ଗାଇବା ଏହିପରି ଅନେକ ପ୍ରକାରରେ ଗାଇବା ଓ କେଳା-କେଳୁଣୀ ନାଚ ଗୀତ ଓ ପକ୍ଷୀ ପଢ଼ାଇବା ଓ ମାତା ତାର ଶିଶୁ ପୁତ୍ର-କନ୍ୟାମାନଙ୍କୁ ଶୁଆଇବା ନିମନ୍ତେ ଗାଇବା ଗୀତମାନ ଗୀତ ନୁହେଁ। ସେସବୁ ପଦ୍ୟାବୃତ୍ତି ମଧ୍ୟରେ ଗଣ୍ୟ। ମାତ୍ର ଏହାର ରଚନା ପାଞ୍ଚାଳୀ ଅନ୍ତର୍ଗତ କୁହାଯିବା ଉଚିତ୍।

## ଗଦ୍ୟ

ଛନ୍ଦହୀନ ପଦସମୂହକୁ ଗଦ୍ୟ କହନ୍ତି। ଗଦ୍ୟ ବିଷୟରେ ଏହି ଗ୍ରନ୍ଥରେ ପ୍ରାମାଣିକଭାବେ ବର୍ଣ୍ଣନା କରାଯାଇଅଛି। ସେହି ଅନୁସାରେ ଗଦ୍ୟ-ପଠନ-ବିଧିର ବର୍ତ୍ତମାନ ଓଡ଼ିଆ ଭାଷାରେ ପ୍ରଚଳନ ଦେଖାଯାଏ ନାହିଁ ଏବଂ ମନଖୁସିଭାବେ ପଢ଼ାଯାଉଅଛି। ଦୁଃଖର କଥା, ସଂସ୍କୃତରେ ମଧ୍ୟ ଶାସ୍ତ୍ରୋକ୍ତ ରୀତି ଅନୁସୃତ ହେବାର କ୍ୱଚିତ୍ ଦେଖାଯାଏ।

## ଅମିତ୍ରାକ୍ଷର

ଯେ ପଦ୍ୟରେ ପଦମାନଙ୍କର, ପାଦମାନଙ୍କରେ ବର୍ଣ୍ଣର ସମତା ନଥାଏ ଶେଷ ଅକ୍ଷର ମେଳ ନଥାଏ ଏବଂ ଦାଣ୍ଡିତୁଲ୍ୟ ଅକ୍ଷରର ସମତା ନଥାଏ ତାହାକୁ ଅମିତ୍ରାକ୍ଷର ଛନ୍ଦ କହନ୍ତି।

ଏପରି ଲେଖା କାବ୍ୟ ଓ ନାଟକରେ ଥିବାର ଦେଖାଯାଏ । ଏହା ଗୀତ ନୁହେଁ ।

## ଢଗଢମାଳି, ପହଳି, ପ୍ରବାଦବାକ୍ୟ

ଓଡ଼ିଆ ଭାଷାରେ ଏହା ପଦ୍ୟାକାରରେ ଯତିପାତ ସହିତ ଲେଖା ଅଟେ । ଏଥିରେ ପ୍ରବାଦବାକ୍ୟ ଉପଦେଶସୂଚକ ଓ ନାୟକ ନାୟିକାଙ୍କ ପ୍ରେମଭାବର ଗୂଢ଼ବିଷୟକ ଶୃଙ୍ଗାର, ହାସ୍ୟ ରସର ବର୍ଣ୍ଣନା ଅଟେ । ଏହା ମଧ୍ୟ ଗୀତ ନୁହେଁ ।

ଏହିପରି ଓଡିଆ ଭାଷାରେ ଗଦ୍ୟ ଓ ପଦ୍ୟରେ ରଚନାମାନ ଅଛି । ତାହାମଧ୍ୟରେ ଯେଉଁ ଗୀତ ସଂଗୀତ-ଲକ୍ଷଣଯୁକ୍ତ, ସେଗୁଡିକ ପୂର୍ବୋକ୍ତ ପ୍ରକାରରେ ଅତି ଉଚ୍ଚାଂଗରେ ଶୁଦ୍ଧ ଓ ଛାୟାଲଗ ଓ ତାହାପରେ କ୍ଷୁଦ୍ର ବିଭାଗ ଅଟେ । ସେହି କ୍ଷୁଦ୍ର ଗୀତ ଚାରି ପ୍ରକାରର; ଯଥା:-ଧ୍ରୁବପଦା, ଚିତ୍ରପଦା, ଚିତ୍ରକଳା, ପାଞ୍ଚାଳୀ । ଏଥିମଧ୍ୟରୁ ପାଞ୍ଚାଳୀ ଦୁଇ ପ୍ରକାରର ହୁଏ; ଯଥା:- ସଧ୍ରୁବା ଓ ଅଧ୍ରୁବା ।

ଏହି ପ୍ରକାର ଗୀତମାନଙ୍କୁ ଶାସ୍ତ୍ର-ଲକ୍ଷଣ ଅନୁସାରେ ଗାଇବା ଉଚିତ । ତାହା ନ କରି ଯଥେଷ୍ଟଭାବେ ଗାଇଲେ ତାହା ପଦ୍ୟାବୃତ୍ତି ହୋଇଯାଏ । ତାହା ସଂଗୀତ ହୁଏ ନାହିଁ ।

ଗୀତକୁ ସଂଗୀତ-ଲକ୍ଷଣ ଅନୁସାରେ ଗାଇଲେ ରସଭାବ ସହିତ ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ଓ ସୌନ୍ଦର୍ଯ୍ୟକୁ ବଢାଏ । ଏହା ଯେଉଁ ଗୀତରେ ଯେପରି ଅନୁପାତରେ ସଂଗୀତ ଲକ୍ଷଣ ଥିବ, ସେହି ଅନୁସାରେ ପ୍ରକାରଭେଦମତେ କମ୍ ବେଶି ହୁଏ; କିନ୍ତୁ

ପଦ୍ୟାବୃତ୍ତି ଗାଇବାରେ କେବଳ ଭାଷାର ମାଧୁରୀରେ ଯେ ରଞ୍ଜକ ହୁଏ ତାହା ତାମସିକ ପ୍ରବୃତ୍ତି ବୃଦ୍ଧି ବ୍ୟତୀତ ମନକୁ ବଶ କରିପାରେ ନାହିଁ।

ଗୀତ ଗାଇବାରେ ପ୍ରଧାନତଃ ଭାଷା, ଭାବ, ରସ, ରାଗ, ସ୍ୱର, ଲୟ, ଗାମ୍ଭିର୍ଯ୍ୟ, ବିଶ୍ଳେଷଣ ଆଦି ସଂଗୀତ ଲକ୍ଷଣ ରହିବା ଦରକାର। ତାହା ସାଧନାଦ୍ୱାରା ନିଃଶ୍ୱା ସନିୟନ୍ତ୍ରିତ ହୋଇ ଯୋଗ-ପ୍ରାଣାୟାମର ଫଳ ଦିଏ। ଏଥିମଧ୍ୟରୁ ଯେଉଁ ଗୀତ ଗାଇବାରେ ଯହିଁରୁ ଯେତେ ଅଧିକ ପ୍ରୟୋଗ ହେବ, ସେତିକି ମୂଲ୍ୟବାନ ଓ ଉତ୍କୃଷ୍ଟ ଫଳପ୍ରଦ ହେବ ଏବଂ ରୋଗ ଆରୋଗ୍ୟ କରିବ। ସ୍ୱାସ୍ଥ୍ୟବାନ୍ ଦୀର୍ଘଜୀବୀ ଲାଭ କରାଇବ।

ସେହି ସଂଗୀତ-ଲକ୍ଷଣଯୁକ୍ତ ଗୀତମାନଙ୍କର ପ୍ରକାରଭେଦ ଅନୁସାରେ ଲକ୍ଷଣ; ଯଥା-ପ୍ରବନ୍ଧ, ଏହା ଶୁଦ୍ଧ ଛାୟାଲଗ, କ୍ଷୁଦ୍ର ତିନି ପ୍ରକାରରେ ହୁଏ। ଶୁଦ୍ଧ ଗୀତ, ଏହା ଉଚାଙ୍ଗ, ଏହା ଓଡ଼ିଶୀ ସଂଗୀତର ଓ ସଂଗୀତର ମୌଳିକ ଓ ସଂଗୀତ-ଶାସ୍ତ୍ରର ନିୟମ ଅନ୍ତର୍ଗତ ଅଟେ। ଏହା ସଂଗୀତ ଶାସ୍ତ୍ରାନୁସାରେ ସମ୍ପୂର୍ଣ୍ଣ ଲକ୍ଷଣ ଯୁକ୍ତରେ ଗାନ ହୁଏ। ଏହାର ଧାତୁ ବା ପଦ ଦୁଇ କିମ୍ବା ତିନି ଓ ଚାରି ପଦପର୍ଯ୍ୟନ୍ତ ହୋଇଥାଏ। ଏହାକୁ ଯେକୌଣସି ରାଗରେ ନବତାଳ ମଧ୍ୟରୁ କୌଣସି ଗୋଟିଏ, ତାଳରେ ବିଳମ୍ବିତ, ମଧ୍ୟ, ଦ୍ରୁତ, ଲୟ ସଂଯୋଗରେ ପ୍ରଥମେ ରାଗାଳାପ କରି ସମଭାବେ ସ୍ଥିର ଲୟରେ ଗାଇବ। ତାହାପରେ ଲୟ ଓ ତାଳ ଅନୁସାରେ ଦ୍ୱିଗୁଣ, ଦେଡଗୁଣ ଅନୁସାରେ ପଦାକ୍ଷରମାନଙ୍କୁ ରାଗ, ସ୍ୱର

ଉପରେ ବିଭାଗ ବଣ୍ଟନ କରି ସ୍ପଷ୍ଟଭାବରେ ଗାଇବାକୁ ହୁଏ ଓ ତାନ, ଗମକ, ଅଳଙ୍କାରାଦି କଳ୍ପନାମତେ କ୍ରମଶଃ ପ୍ରୟୋଗ କରି ସ୍ରୋତବହା ଗୋପୁଚ୍ଛିକାରୀତିରେ ବିସ୍ତାର ବିଶ୍ଳେଷଣ କରି ଗାଇବା ଉଚିତ୍। ଏହାକୁ ପ୍ରଥମେ ଆଦିତାଳ କିମ୍ବା ଏହି ଜାତୀୟ ତାଳରେ ଗାଇବା ବିଧି ଓ ସର୍ବୋଚ୍ଚଭାବେ ଉତ୍କୃଷ୍ଟ ଅଟେ। ଏହି ନବତାଳମାନଙ୍କ କ୍ରମରେ ନଅଗୋଟି ଗୀତ, ଅନ୍ୟମତରେ ଆଠଗୋଟି ଗୀତ ଅର୍ଥାତ୍ ତାଳର କ୍ରମରେ ଏକ ରାଗରେ କିମ୍ବା ବହୁ ରାଗରେ ପୃଥକ୍ ପୃଥକ୍ ଗୀତ ଗାଇବାକୁ ହୁଏ। ଅଥବା ପ୍ରଥମେ ଯେଉଁ ରାଗ ଓ ତାଳରେ ଗୀତ ଆରମ୍ଭ କରିପାରିବ, ତାହାପରେ ଆଉସବୁ ତାଳରେ ନ ଗାଇ ମଧ୍ୟ ସଂକ୍ଷେପରେ ଶେଷରେ ଏକତାଳୀ ବା ଦ୍ରୁତ ତ୍ରିତାଳରେ ଆରମ୍ଭ କରିଥିବା ରାଗରେ ଗୀତ ଗାଇ ଶେଷ କଲେ ତାହା ସୂଡ଼ରୀତି ଅନୁସାରେ ପୂର୍ଣ୍ଣାଙ୍ଗ ତଥା ସର୍ବାଙ୍ଗ ସୁନ୍ଦର ହେଲାବୋଲି ଧରାଯିବ। ତାହା ମଧ୍ୟ ସୂଡ଼ ଅର୍ଥାତ୍ ତାଳକ୍ରମରେ ଗୀତବିଶେଷ ସମୂହମଧ୍ୟରେ ଗଣ୍ୟ ହୋଇଥାଏ।

ସଂଗୀତପଣ୍ଡିମାନଙ୍କର ଏହା ଆଗ୍ରାହ୍ୟ ନୁହେଁ। କେହି କେହି ଗୋଟିଏ ରାଗରେ ଗୋଟିଏ ଗୀତକୁ ସୂଡ ନିୟମରେ ଗାଇବାର ମଧ୍ୟ ଶୁଣାଯାଏ। ଏହା ସଂଗୀତ ପଣ୍ଡିତମାନଙ୍କର ଅଗ୍ରାହ୍ୟ ନୁହେଁ। ଏହା ସତ୍ତ୍ୱ-ରଜୋଗୁଣବିଶିଷ୍ଟ। ସାଧାରଣ ଲୋକେ ତାହାର ମହତ୍ତ୍ୱ ନ ବୁଝିଲେହେଁ ତାକୁ ଉଚ୍ଚ ସଂଗୀତ ବୋଲି ମାନନ୍ତି ଓ ଗ୍ରହଣ କରିନ୍ତି। ଏହା ବିନା ସାଧନାରେ ଆୟତ୍ତ ହୁଏ ନାହିଁ। ଏହି ସାଧନାନିମନ୍ତେ ରାଜା, ଧନୀ, ଶାସକ, କ୍ଷମତାଶାଳୀ ଲୋକମାନଙ୍କର ସ୍ୱତନ୍ତ୍ରଭାବେ ବିଶେଷ ସାହାଯ୍ୟ-ସହାନୁଭୂତି ସର୍ବଦା ପାଇଆସୁଥିଲା

ଓ ଆବଶ୍ୟକ, ତାହା ନ ହେଲେ ଏହା ସମୂଳେ ଲୋପ ହୁଏ। ଏହାର ପ୍ରଚାର ବର୍ତ୍ତମାନ କ୍ରମଶଃ କମିଯାଇଛି। ଏହି ପ୍ରବନ୍ଧର ଭାଷା-ରଚନାରେ ପରମେଶ୍ବରଙ୍କ ପ୍ରାର୍ଥନା, ତ୍ୟାଗ, ସୌଭାଗ୍ୟ, ସୌନ୍ଦର୍ଯ୍ୟ, ଶୌର୍ଯ୍ୟ, ଧୈର୍ଯ୍ୟ, ସ୍ତବ ଓ ଗୁଣ ବର୍ଣ୍ଣନାଦି କରାଯାଇଥାଏ। ଏଥିରେ ରାଗ, ତାଳ ଓ ସ୍ୱର ଆଦି ଯାବତୀୟ ସଂଗୀତର ଲକ୍ଷଣ ଶୁଦ୍ଧ ରହେ। ଏହାର ସର୍ବାଦୌ ବହୁଳ ସାଧନ ଓ ପ୍ରଚାର ହେବା ଆବଶ୍ୟକ ଏବଂ ଏହି ଗୀତ ତାହାର ଅଂଗ ଅନୁସାରେ ଲକ୍ଷଣରେ ସଂଗୀତସାଧକ-ପଣ୍ଡିତଙ୍କ ବ୍ୟତୀତ ସାହିତ୍ୟ ପଣ୍ଡିତମାନେ ଗୀତ ରଚନା କରିପାରିବା ଅସମ୍ଭବ।

## ଛାୟାଲଗ

ଏଥିରେ ଶୁଦ୍ଧ ପ୍ରବନ୍ଧ ଗୀତର ଛାୟା ଥାଏ। ଅର୍ଥାତ୍ ଶୁଦ୍ଧ ପ୍ରବନ୍ଧ ଗୀତ ପରି ଗାନ ହୁଏ। ଶୁଦ୍ଧ ପ୍ରବନ୍ଧରେ ଯେପରି ଗାଇବାକୁ ହୁଏ, ଏହାକୁ ସେହିପରି ଗାଇବ; ମାତ୍ର ଏଥିରେ ଧ୍ରୁବ ସ୍ଥାୟୀ ବା ଘୋଷା ଧାତୁ ବା ପଦ ଗୋଟିଏ ଓ ଅନ୍ୟପଦ ୧ ଗୋଟି ଅନ୍ତରା ହୁଏ। ଏହାର ୨ଗୋଟି ଧାତୁରୁ ଅଧିକ ହୁଏ ନାହିଁ। ଶୁଦ୍ଧ ପ୍ରବନ୍ଧ ତୁଲ୍ୟ ସାଧନା ଓ ଗୁଣ ଆଦି ଅଛେ। ଏହା ମଧ୍ୟ ତିନି ପଦ ହୁଏ। ମାତ୍ର ତାହାର ବର୍ତ୍ତମାନ ପ୍ରଚଳନ ଦେଖାଯାଏ ନାହିଁ।

ଯେଉଁ ଗାନ ପ୍ରବନ୍ଧ ଶୁଦ୍ଧ ଗୀତ ଛାୟାଲଗପରି ସମ୍ପୂର୍ଣ୍ଣ ଲକ୍ଷଣରେ ଗାନ ହୁଏ ନାହିଁ, କିନ୍ତୁ ଧ୍ରୁବ ବା ଘୋଷା ବା ସ୍ଥାୟୀ ଅନ୍ତରା ପ୍ରଭୃତି ଧାତୁ ବା ପଦ ଗ୍ରହଣ କରେ ଓ ରାଗତାଳସହ ଭାଷାକୁ

ବିଶେଷଭାବେ ନିର୍ଭର କରେ ଏବଂ ତେନା ପ୍ରଭୃତି ଆଳାପ ସଂଯୋଗ ହୋଇଥାଏ। ମାତ୍ର ଧ୍ରୁବ କଣ୍ଠଲକ୍ଷଣ ଯେପରି କୁହାଯାଇଅଛି ସେହିପରି ଲକ୍ଷଣ ଅନୁସାରେ ଶୁଦ୍ଧଗୀତ ଶୁଦ୍ଧଗୀତ ନିୟମର ଅଂଶ ସହ ନାନାପ୍ରକାର ଗାନ କରାଯିବାକୁ କ୍ଷୁଦ୍ରଗୀତ କହନ୍ତି। ସେହି ଗୀତର ଶୁଦ୍ଧ ଗୀତପରି ସଂପୂର୍ଣ୍ଣ ସଂଗୀତ-ଲକ୍ଷଣ ନ ଥାଏ। ତଥାପି ଶୁଦ୍ଧ ଗୀତ ଲକ୍ଷଣକୁ ଲକ୍ଷ୍ୟ ରଖି ଅଧିକାଂଶରେ ଅନୁସରଣ ଓ ପ୍ରୟୋଗ ଶୁଦ୍ଧ କରି ଗାନ କରାଯାଏ। ତାହା ଚାରି ପ୍ରକାରର; ଯଥା:-ଧ୍ରୁବପଦା, ଚିତ୍ରପଦା, ଚିତ୍ରକଳା, ପାଞ୍ଚାଳୀ ବୋଲି କୁହାଯାଇଅଛି। ତହିଁର ବ୍ୟବହାରର ସରଳ ନିୟମ ଲେଖାଗଲା; ମାତ୍ର ଶାସ୍ତ୍ରରେ ଚିତ୍ରକଳା, ଧ୍ରୁବକଳା, ଚିତ୍ରପଦା, ପାଞ୍ଚାଳୀ ଏହି କ୍ରମ ଲେଖାଥିଲେ-ହେଁ ବର୍ତ୍ତମାନ ପ୍ରଚଳିତ ଅନୁସାରେ ପ୍ରଥମେ ଧ୍ରୁବପଦା, ତାପରେ ଚିତ୍ରପଦା, ଚିତ୍ରକଳା, ପାଞ୍ଚାଳୀ ବିଷୟରେ ବର୍ଣ୍ଣନା କରାଗଲା।

## ଧ୍ରୁବପଦା (ଧ୍ରୁପଦ)

ଏହା ଦୁଇ ପ୍ରକାରରେ ରଚନା ହୁଏ। ମଧଗାନ କରାଯିବା ଚଳନ କରାଯାଏ।

ପ୍ରଥମ ପ୍ରକାର-ଏଥିରେ ରାଗ, ତାଳ, ଧାତୁ ବା ପଦ ଓ ସ୍ୱର ଗମକ ପ୍ରୟୋଗ ଆଦିର ଯେତେ ଦୂର ସମ୍ଭବ ଶୁଦ୍ଧ ଓ ନିଶ୍ଚିତ ଥାଇ ପ୍ରାଧାନ୍ୟ ରହେ ଏବଂ ତାନ ଅଳଂକାର ଦେଇ ଶୁଦ୍ଧ ପ୍ରବନ୍ଧ ଗାଇବା ତୁଲ୍ୟ ଗାନ କରାଯାଏ। ଏହା ଶୁଦ୍ଧ, ସାଲଗ, ଓ ସଂକୀର୍ଣ୍ଣ ରୂପେ ସମସ୍ତ ପ୍ରକାର ରାଗରେ ବିଶେଷଭାବେ

ଆଳାପ କରାଯାଇ ଶାସ୍ତ୍ରୀୟ-ରୀତିରେ ଆଳାପକୁ ଭିତ୍ତି କରି ଗାନ କରାଯାଏ। ଏହା ଦୁଇ ପଦ, ତିନି ପଦ କିମ୍ବା ଚାରି ପଦ ବା ଧାତୁ ହୁଏ ଏବଂ ତାଳର ବିଶେଷତ୍ୱ ବହୁତ ଥାଏ। ଏହାର ପ୍ରଥମେ ସମଗ୍ରହରେ ଗାନ ଆରମ୍ଭ କରି ଦୁଇ ଗୁଣ; ଦେଢ ଗୁଣ ଓ ବିଳମ୍ବିତ, ମଧ୍ୟ, ଦ୍ରୁତଲୟ ସହିତ ବଣ୍ଟନ ବିସ୍ତାର କରାଯାଏ ଓ ବିଳମ୍ବିତ ମଧ୍ୟ, ଦ୍ରୁତ ଲୟ ସହିତ ସ୍ରୋତବହା, ଗୋପୁଚ୍ଛିକା ପ୍ରକାରରେ ଗାନ କରାଯାଏ ଏବଂ ଅତୀତ, ଅନାଗତ ଲୟର ମଧ୍ୟ ପ୍ରୟୋଗ କରାଯାଇଥାଏ। ଏଥିରେ ତାନ, ପଲ୍ଲବ ଓ ସୂକ୍ଷ୍ମ ତାନ ସ୍ୱର ପ୍ରୟୋଗ କରାଯିବାର ପ୍ରଚଳନ ଦେଖାଯାଏ ନାହିଁ। କେବଳ ଅକ୍ଷର ଉଚ୍ଚାରଣ ସହ ଲୟ-ବଣ୍ଟନରେ ପଦାକ୍ଷର ସହିତ ସ୍ୱର ବିସ୍ତାର କରାଯାଇଥାଏ; ମାତ୍ର ତାହାକୁ ତାନମଧ୍ୟରେ ଗଣ୍ୟ କରାଯାଏ ନାହିଁ ଏବଂ ଅନ୍ୟାନ୍ୟ ଗମକ ସଂଯୋଗରେ ବିସ୍ତାର ସହିତ ଗାନ କରାଯାଏ। ଏହା ଶୁଦ୍ଧଗୀତ ଓ ଛାୟାଲଗର ନିକଟତମ ଓ ଉଚ୍ଚଜାତୀୟ। ଏହା ପ୍ରଧାନତଃ ବାରମାତ୍ରା ଗୁତୁକ ବା ଚୌତାଳ, ଶୌଦ ମାତ୍ର ଅଟେ ବା ଧମାର ତାଳସଂଯୋଗରେ ଗାନ ହେବା ପ୍ରସିଦ୍ଧ ଏବଂ ଶୁଦ୍ଧଗାନର ଅଧିକାଂଶ ରସ, ଗାମ୍ଭୀର୍ଯ୍ୟ ଇତ୍ୟାଦିକୁ ପ୍ରକାଶ କରେ, ଗାୟନ ଫଳପ୍ରଦ ହୁଏ। ଏହାକୁ ବିନା ସାଧନାରେ ଆୟତ୍ତ କରି ହୁଏ ନାହିଁ। ଏହା ଉତ୍କୃଷ୍ଟ, ଓ ନିଶ୍ଚିତଭାବେ ଗାନବିଧିସମ୍ପନ୍ନ କରାଯିବା କାରଣରୁ ଏହାକୁ ଧ୍ରୁବପଦା ବା ଧ୍ରୁପଦ କୁହାଯାଏ।

ଦ୍ୱିତୀୟ ପ୍ରକାର-ଏହାକୁ ପ୍ରଥମେ ନିର୍ଦ୍ଦିଷ୍ଟ ରାଗରାଗିଣୀରେ ସୂକ୍ଷ୍ମସ୍ୱର ସହିତ ଦୀର୍ଘ ସ୍ୱରରେ ଆଳାପ କରି ପରେ ଗୀତାକ୍ଷର ଓ ଶବ୍ଦକୁ ମଧ୍ୟ ସେହିପରି ସ୍ୱର ସଂଯୋଗରେ ସମଗ୍ରହ ଓ

ସମଲୟରେ ଗାଇବାକୁ ହୁଏ। ଏହାକୁ ମଧ ବିଲମ୍ବିତ, ମଧ ଓ ଦ୍ରୁତ ଲୟ ସଂଯୋଗରେ ସ୍ରୋତବହା ଓ ଗୋପୁଚ୍ଛିକା-ରୀତିରେ ଗାଇବା ଉଚିତ୍ ଏବଂ ତାନ, ପଲ୍ଲବ ଓ ସ୍ୱର କଳ୍ପନା ଅନୁସାରେ ବିସ୍ତାର କରାଯାଇ ସୌନ୍ଦର୍ଯ୍ୟାନ୍ୱିତ କରାଯାଇପାରେ ତାନ ଓ ରାଗର ଲକ୍ଷଣ ଅନୁସାରେ ସରଗମ ଆଦିସ୍ୱରାକ୍ଷରମାନଙ୍କୁ ମଧ ଗାଇବାରେ ପ୍ରକାଶ କରାଯାଇପାରେ ଏବଂ ଗୀତାକ୍ଷର ତାନ ଆଦିକୁ ଦ୍ୱିଗୁଣ, ଦେଢ଼ଗୁଣ ପ୍ରଥମ ପ୍ରକାର ଧ୍ରୁବପଦା ପରି କରାଯାଏ। ଏଥିରେ ତାନ ଓ ସୂକ୍ଷ୍ମସ୍ୱରର ପ୍ରବଳତାହେତୁ ରାଗ ଶୁଦ୍ଧ ରହିବାପରେ ବାଧା ପାଇଲେହେଁ ତାହା ଦୋଷରୂପେ ଧରାଯାଏ ନାହିଁ। ଏଥିରେ ଶୁଦ୍ଧ ସାଲଗ ଓ ସଂକୀର୍ଣ୍ଣ ସମସ୍ତ ପ୍ରକାର ରାଗର ଗାନ ହୁଏ। ଏହା ଶୃଙ୍ଗାର ରସ ପ୍ରଧାନ। ଏହା ପ୍ରଥମ ପ୍ରକାର ଧ୍ରୁବପଦା ଅପେକ୍ଷା ଲଘୁ ଅଟେ। ଏହା ୧୬ ଓ ୧୪ ମାତ୍ରା ଆଦିତାଳ ଓ ୧୪ ମାତ୍ର ନିସାରୁ ତାଳ ଓ ୧୨ ମାତ୍ରା ଅଢତାଳ ଓ ତ୍ରିତାଳରେ ବିଶେଷ ଭାବେ ଗାନ ହୁଏ। ଏହା ମଧ ଛାୟାଲଗ ଗାନ ପଦ୍ଧତି ପ୍ରଥମେ ଉକ୍ତ ତାଳଗାଇବା ଉଚିତ୍। ପରେ ଏକତାଳି କିମ୍ବା ଦ୍ରୁତ ତ୍ରିତାଳରେ ଗାଉଥିବା ରାଗର ପୃଥକ୍ ଗୀତ ତାନ ସ ରି ଗ ମ ସହିତ ଗାନ କରି ସମାପ୍ତି କଲେ ଏହା ସର୍ବାଙ୍ଗସୁନ୍ଦର ହୁଏ ଓ ସୃତକୁ ଆଶ୍ରା କରାଯାଏ। ପୁନଶ୍ଚ ଏହାକୁ ମଧ ସାଧାରଣତଃ ବିଶେଷଭାବେ ତ୍ରିତାଳ ବା ଆଦିତାଳର ଗାୟକମାନେ ଗାଇଥାନ୍ତି। ଏହି ଧ୍ରୁବପଦାର ଗାଇବା-ରୀତି ହିନ୍ଦୁସ୍ଥାନୀ ପ୍ରଚଳିତ ଗାନରୀତିସହ ସମାନ ବୋଲି ଓଡ଼ିଶାର ପ୍ରାଚୀନ ସଂଗୀତ ପଣ୍ଡିତ କୃଷ୍ଣଦାସ ତାଙ୍କ କୃତ 'ଗୀତ ପ୍ରକାଶ' ଗ୍ରନ୍ଥରେ ଲେଖିଅଛନ୍ତି। ଏଥିରେ ସାଲଗ ଗୀତ ପରି ସ୍ଥାୟୀ ଓ ଅନ୍ତରା ୨ ଗୋଟିପଦ ହେବା ଉଚିତ।

ଏହାକୁ କୁଶଳୀ ଗାୟକ ତାଙ୍କର କଳ୍ପନା ଅନୁସାରେ ରାଗ, ତାଳ, ଲୟ ସଂଯୋଗରେ ତାନ, ଅଳଙ୍କାର, ସ୍ୱର ସହିତ ନାନାପ୍ରକାର ବିସ୍ତାରସହ ସୁନ୍ଦରରୂପେ ନାନାଭାବେ ଚିତ୍ରଣ କରି ଗାନ କରିବା ହେତୁ ଏହାକୁ କଳ୍ପନା ଗାନ କୁହାଯାଇଅଛି। ଏହି ଧ୍ରୁବପଦାଗୁ ହିନ୍ଦୁସ୍ଥାନୀରେ ଚଳୁଥିବା ଧ୍ରୁପଦ, ଧମାର, ଖେୟାଲ ସୃଷ୍ଟି ହୋଇଥିବା ଅନୁମିତ ହୁଏ ଏବଂ ଏଥିରେ ଚନ୍ଦ୍ରପଦା ଓ ଚିତ୍ରକଳା ଏ ଦୁହିଁଙ୍କର ଲକ୍ଷଣ ଥାଏ।

## ଚିତ୍ରପଦା

ଏହି ଜାତୀୟ ଗୀତରେ ସ୍ୱର-ଲକ୍ଷଣ ଅନୁଯାୟୀ ପଦମାତ୍ରର ବିଚିତ୍ରତା ଅଥାତ୍ କୋମଳ ପଦ ଓ ସ୍ୱର ଅଳଙ୍କାର ଥାଏ। ଧାତୁ ଅର୍ଥାତ୍ ପଦ ଓ ତାନ ବିଶେଷରେ ଲକ୍ଷଣ ଅନୁଯାୟୀ ବ୍ୟବହାର ହୁଏ ନାହିଁ। ତେଣୁ ସ୍ଥାୟୀ ବା ଧ୍ରୁବ ଗୋଟିଏ ଓ ଅନ୍ତରା ଗୋଟିଏ- ଏପରି ଦୁଇ ପଦ ହେବା ଉଚିତ୍। ତିନିଗୋଟି କିମ୍ୱା ଚାରିଗୋଟି ପଦର ବିଶେଷତ୍ୱ କିମ୍ୱା ଆବଶ୍ୟକତା ନ ଥାଏ; ମାତ୍ର କେହି କେହି ତିନିଗୋଟି ପଦ ଗାଇଥାନ୍ତି; କିନ୍ତୁ ତାହାର ଚଳନ କମ୍ ଅଟେ। ଏଥିରେ ବିଶେଷଭାବେ ନାନା ପ୍ରକାର ଦୀର୍ଘତାନ ବିସ୍ତାର କରିବା ଉଚିତ ନୁହେଁ। ଗୀତାକ୍ଷର ବାକ୍ୟ ଓ ଶବ୍ଦକୁ ନାନାପ୍ରକାର ସୂକ୍ଷ୍ମ ତାନ ଓ ସ୍ୱରଦ୍ୱାରା ପଦର ବିଚିତ୍ରତା ସମ୍ପାଦନ କରିବା ଉଚିତ; ମାତ୍ର କେହି କେହି ସ୍ୱଳ୍ପ ତାନ ମଧ୍ୟ ପ୍ରୟୋଗ କରିଥାଆନ୍ତି। ଏହାକୁ ପ୍ରଥମେ ନିର୍ଦ୍ଦିଷ୍ଟ ରାଗିଣୀରେ ଆଳାପର ରୂପ ପ୍ରକାଶପୂର୍ବକ ନିର୍ଦ୍ଦିଷ୍ଟ ତାଳ ସହିତ ଗାଇବ। କେବଳ ପଦକୁ ବିସ୍ତାରଦ୍ୱାରା ଚିତ୍ରଣ କରି ମଧୁର କରିବା ନିମନ୍ତେ ଗୀତାକ୍ଷର ସହିତ ନାନାପ୍ରକାର ସୂକ୍ଷ୍ମସ୍ୱର ଓ

କ୍ଷୁଦ୍ରତାନ ସଂଯୋଗରେ ଲୟ ଅନୁସାରେ ଦ୍ୱିଗୁଣ, ଦେଢଗୁଣ କରିବା ଉଚିତ୍। ଅନ୍ୟ ରାଗର ମିଶ୍ରଣ ହେଲେ ମଧ ଦୋଷଯୁକ୍ତ ନୁହେଁ। ଏପରି ଦୁଇ ବା ତତୋଽଧିକ ରାଗର ମିଶ୍ରଣ ହେଲେ ମଧ ପ୍ରଥମେ ନିର୍ଦ୍ଦିଷ୍ଟ ରାଗକୁ ନ ଛାଡ଼ି ତାହାର ପ୍ରାଧାନ୍ୟ ରଖିବ ଓ ତହିଁରେ ଗାନକୁ ଶେଷ କରିବ। କେବଳ ଗୋଟିଏ ରାଗରେ ମଧ ଗାନ ହୋଇପାରେ।

ଏଥିରେ ରାଗ ଶୁଦ୍ଧ ରହିପାରେ ନାହିଁ। ତାଳକୁ କେବଳ ଅବଲମ୍ବନ କରିବ; ମାତ୍ର ତାଳ ଓ ଲୟର ବିଶେଷତ୍ୱ ନ ଥାଏ। ଏହା ସଂକୀର୍ଣ୍ଣ ଜାତୀୟ, ଦ୍ୱିତୀୟ ପ୍ରକାର ପଦାକ୍ଷରଠାରୁ ଲଘୁ ଅଟେ। ଏହାକୁ ଅଳ୍ପ ସାଧନାରେ ଆୟତ୍ତ କରି ଗାଇପାରନ୍ତି। ତେଣୁ ଏହାକୁ ସ୍ତ୍ରୀ ଲୋକମାନଙ୍କର ଗାନ କୁହାଯାଇପାରେ। ଏଥିରେ ତ୍ରିତାଳ, ଏକତାଳି, ଖେମଟା, ଜହରବା, ପଡ଼ିତାଳ, ବିଶେଷଭାବେ ବ୍ୟବହାର ହୁଏ। ଏହା କେବଳ ମାଧୁର୍ଯ୍ୟ ବ୍ୟତୀତ ସଂଗୀତର ଅନ୍ୟାନ୍ୟ ଲକ୍ଷଣ ଭାବରସ ପ୍ରକାଶ କରିପାରେ ନାହିଁ। ଏହା ଶୃଙ୍ଗାରରସ ବିଶିଷ୍ଟ ଏବଂ ଦରବାରରେ ଉଚ୍ଚ ସ୍ଥାନ ପାଏ ନାହିଁ। ଏଥିରୁ ହିନ୍ଦୁସ୍ଥାନୀ ପ୍ରଚଳିତ ଠୁମ୍‌ରିର ସୃଷ୍ଟି ହୋଇଥିବା ଅନୁମିତ ହୁଏ। ଅନ୍ୟ ପ୍ରକାରେ ଗାଇବା ସଂଗେ ସଂଗେ ଦ୍ରୁତତାନ ସଂଯୋଗରେ ଚିତ୍ରଣ କରି ଗାନ କରାଯାଉଥିବା ଶୁଣାଯାଏ, ଏଥିରୁ ଉତ୍ତର-ଭାରତର ଟପ୍‌ପାର ସୃଷ୍ଟି ହୋଇଥିବା ଅନୁମିତ ହୁଏ।

## ଚିତ୍ରକଳା

ଏହି ଗୀତ ଲକ୍ଷଣ ଅନୁସାରେ ତିନି, ଚାରିଠାରୁ ଆଠ ପଦ ହୁଏ। ତହିଁରୁ ଅଧିକ ହୁଏ ନାହିଁ। ଏହା ସଂଗୀତର ସଂପୂର୍ଣ୍ଣ

ଲକ୍ଷଣଯୁକ୍ତ ଧାତୁ ବା ପଦ ନିୟମ ଅନୁସାରେ ଶୁଦ୍ଧଭାବେ ଗାଇବାପକ୍ଷେ ଅନୁକୂଳ ନୁହେଁ। କିନ୍ତୁ କେହି ଗାଇପାରନ୍ତି, ମାତ୍ର ତାହା ରୀତି ନୁହେଁ। ଏହି ଗୀତ ଗାଇବା ସମୟରେ ନିର୍ଦ୍ଦିଷ୍ଟ ରାଗକୁ ସୂଚାଇ ଅଳ୍ପ ଆଳାପ କରି ସେହି ରାଗ ଓ ନିର୍ଦ୍ଦିଷ୍ଟ ତାଳରେ ଭାଷାକୁ ଶୁଦ୍ଧ ରଖି ଗାଇବା ଉଚିତ୍। ଏଥିରେ ସୂକ୍ଷ୍ମସ୍ୱର ଓ ତାନ ଗୀତର ଶୁଦ୍ଧାକ୍ଷର ସହିତରେ ପ୍ରୟୋଗ କରାଯାଇପାରେ। ଏଥିରେ ତାଳର ଅବଲମ୍ବନମାତ୍ର ହୁଏ; କିନ୍ତୁ ତାଳର କି ତାନର ବିଶେଷତ୍ୱ ନଥାଏ, ଏହାର ଗାଇବା ରାଗ ଲକ୍ଷଣ ଅନୁସାରେ ହେବା ଉଚିତ୍। ତଥାପି ତାହା ଲକ୍ଷଣଯୁକ୍ତ ନ ହେଲେ ଦୂଷଣୀୟ ହେବ ନାହିଁ। ଏହା ଶୃଙ୍ଗାର-ରସରେ ବିଶେଷ ବ୍ୟବହୃତ ହୁଏ। ଜୟଦେବଙ୍କ ଗୀତଗୋବିନ୍ଦ ଅଷ୍ଟପଦୀ। ତେଣୁ ତାହା ଏହି ଚିତ୍ରକଳାର ଅନ୍ତର୍ଗତ କୁହାଯାଇପାରେ। ଏହା ମଧ୍ୟ ଦ୍ରୁତ ଓ ଲୟ ତାଳରେ ଗାନ ହୁଏ। ଏହା ଦରବାରରେ ଉଚ୍ଚସ୍ଥାନର ଗାନ ମଧ୍ୟରେ ଗଣ୍ୟ ହୁଏ ନାହିଁ।

## ପାଞ୍ଚାଳୀ

ଏହା ଆଠପଦରୁ ଅଧିକ ଏବଂ ଯାହା ଧ୍ରୁବପଦା, ଚିତ୍ରପଦା, ଚିତ୍ରକଳା, ନିୟମରେ ରଚିତ ନୁହେଁ ଏବଂ ତାହା ଆଠ ପଦରୁ କମ୍ ଦୁଇ, ତିନି, ଚାରି ପଦରୁ ଆଠ ପଦପର୍ଯ୍ୟନ୍ତ ହେଲେ ମଧ୍ୟ ତାହା ପାଞ୍ଚାଳୀ ଅନ୍ତର୍ଗତ ବୋଲି କହିବା ଉଚିତ୍। ଏହି ପାଞ୍ଚାଳୀ ଦୁଇ ପ୍ରକାରର; ଯଥା:- ସଧ୍ରୁବା ଓ ଅଧ୍ରୁବା। ଏହା ବହୁ ପ୍ରକାରରେ ଓ ବହୁ ପଦରେ ରଚିତ ହୋଇଥାଏ। ସଧ୍ରୁବା ପାଞ୍ଚାଳୀରେ ଧ୍ରୁବପଦ ବା ଘୋଷା ରହେ ନାହିଁ। ତାହାକୁ ଉତ୍କଳରେ ଛାନ୍ଦ କହନ୍ତି। ଏହି ପାଞ୍ଚାଳୀ ଗୀତ ଗାଇବାର ଲକ୍ଷଣ ନିମ୍ନରେ ଲେଖାଗଲା। ଅଧ୍ରୁବା ପାଞ୍ଚାଳୀ ଅନୁସାରେ ସର୍ବ ପ୍ରକାର ପଦ୍ୟକାବ୍ୟ,

ଶାସ୍ତ୍ରପୁରାଣ, କବିତା, ଢଗଢମାଳି, ପହଲି ରଚନା ଅଟେ। ପାଞ୍ଚାଳୀ ନିଜର ଦେଶ ଭାଷା ନିମନ୍ତେ ପ୍ରସିଦ୍ଧ। ପାଞ୍ଚାଳୀ ଭିନ୍ନ ଅନ୍ୟପ୍ରକାର ଗୀତ ଦେଶଭାଷାରେ ରଚନା ହେବା ଉଚିତ। ତେଣୁ ପାଞ୍ଚାଳୀ କ୍ଷୁଦ୍ରଗୀତ ମଧ୍ୟରେ ଅତି କ୍ଷୁଦ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ। ଏଥିରେ ଓଡ଼ିଆ ଭାଷାରେ ଅଧିକାଂଶ ରଚିତ ଗୀତ ଓ ଛାନ୍ଦମାନ ବିଶେଷଭାବେ ଆଦି. ବା ଶୃଙ୍ଗାରରସରେ ଲେଖା ହୋଇଥିବା ଦେଖାଯାଏ। ତଦ୍ ଅନ୍ତର୍ଗତ ପୁରାତନ କବି ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସମାନ୍ତସିଂହାର, ଦୀନକୃଷ୍ଣ, ବନମାଳୀ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ବ୍ରହ୍ମା ଗୌରହରି, କେତେକ ରାଜା ଓ ଆହୁରି ବହୁତ କବିମାନଙ୍କ ରଚିତ ଓଡ଼ିଆ ଛାନ୍ଦ, ଗୀତ ଓ ବର୍ତ୍ତମାନ ସୁଦ୍ଧା ସାହିତ୍ୟ ପଣ୍ଡିତମାନେ ରଚନା କରିଥିବା ଓ କରୁଥିବା ଛାନ୍ଦ ଓ ଗୀତମାନ ଏବଂ ଉତ୍ତର-ଭାରତର ପ୍ରସିଦ୍ଧ କବି ତୁଳସୀ ଦାସ, ସୁରଦାସ, ମିରାବାଈ, କବିର, ବ୍ରହ୍ମାନନ୍ଦଙ୍କ ଭଜନ ଇତ୍ୟାଦି ଓ ବଙ୍ଗ ଦେଶର କବି-ଚଣ୍ଡୀଦାସ, ବିଦ୍ୟାପତି, ରାମପ୍ରସାଦ, ବାଉଳ, କମଳାକାନ୍ତ,ପଦ୍ୟାବଳୀ, ବିଶ୍ୱକବି ରବୀନ୍ଦ୍ରନାଥ, ଦ୍ୱିଜେନ୍ଦ୍ରଲାଲ୍ ରାୟ, କାଜି ନଜରୁଲ ଓ ଦକ୍ଷିଣ-ଭାରତ ପ୍ରଚଳିତ ଭାଷାର ଗୀତ ଓ ଛନ୍ଦ ଇତ୍ୟାଦି ଓ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ରଚିତ ଛନ୍ଦ ଓ ଗୀତ ସେହିପରି ସ୍ୱଦେଶ ଭାଷାର ଛନ୍ଦ ଓ ଗୀତ ଅଟେ। ଯାହା ପାଞ୍ଚପଦ ଓ ବହୁପଦ, ତାହାକୁ ପାଞ୍ଚାଳୀ କହନ୍ତି।

## ସଧ୍ରୁବା ପାଞ୍ଚାଳୀ

ଏହାକୁ ନିର୍ଦ୍ଦିଷ୍ଟ ରାଗରେ ଘୋଷା ଓ ପଦ ଗାନର ନିୟମାନୁସାରେ ଗାଇବାକୁ ହୁଏ। ପ୍ରଥମେ ନିର୍ଦ୍ଦିଷ୍ଟ ରାଗକୁ ସୂଚାଇ

ଅଳ୍ପ ଆଳାପ କରି ତା'ପରେ ରଚିତ ଗୀତ ନିୟମକୁ ଅନୁସରଣ କରିବ ଓ ନିର୍ଦ୍ଦିଷ୍ଟ ତାଳରେ ଗାନର ନିୟମ ଓ ଲକ୍ଷଣକୁ ଦୃଷ୍ଟି ଦେବ। ଯେ କୌଣସି ଲୟରେ ଗୀତ-ଶବ୍ଦାକ୍ଷର ସହିତ ସୁବିଧାକ୍ରମେ ସ୍ୱର ସଂଯୋଗ କରି ସୂକ୍ଷ୍ମ ସ୍ୱର ପ୍ରୟୋଗରେ ଗୀତାକ୍ଷର ସହିତ କ୍ଷୁଦ୍ର ତାନ କରାଯାଇପାରେ ଓ ତାହା ସହିତ ରାଗର ସରଗମ ସ୍ୱରାକ୍ଷର ଗାନ କରାଯାଇପାରେ; ମାତ୍ର ସ୍ୱତନ୍ତ୍ର ତାନର ପ୍ରାଧାନ୍ୟ ନ ଥାଏ। ତଥାପି କେହି କେହି ସ୍ୱଳ୍ପତାନ ପ୍ରୟୋଗ କରିଥାନ୍ତି। ଏହା ବହୁ ପଦ, ବହୁ ପ୍ରକାରହେତୁ ଧାତୁବିଚାର ଅନୁସାରେ ଗାନ ହୋଇପାରେ ନାହିଁ। ଗୀତ-ଶବ୍ଦାକ୍ଷର, ଭାଷା ଓ ବାକ୍ୟର ଓ ବହୁ ପଦର ପ୍ରାଧାନ୍ୟ ହେତୁ ଏଥିରେ ରାଗ ଶୁଦ୍ଧ ରହିବା ଅସମ୍ଭବ ହୋଇଥାଏ; କିନ୍ତୁ ରାଗର ପ୍ରାଧାନ୍ୟ ଥାଏ। ଏ ଗୀତ ମଧ୍ୟ ଓ ଦ୍ରୁତ ଲୟବିଶିଷ୍ଟ ତାଳରେ ବିଶେଷତଃ ଗାନ କରାଯାଇଥାଏ। ଏହାର ରଚନା ଶୃଙ୍ଗାରରସରେ ଅଧିକ ହୋଇଥାଏ। ଘୋଷାପରେ ଅନ୍ୟପଦ ଯେପରି ଗାଇବ, ସେହିପରି ଅନ୍ୟାନ୍ୟ ପଦମାନ ଗାଇବାକୁ ହୁଏ। ଏହି ଗାନ ଏକଧରଣର ହେଲେ ମଧ୍ୟ ଗୀତର ରଚନାକୁ ଲକ୍ଷ୍ୟ ରଖି ଗାଇବାକୁ ହୁଏ। ଏହାର ଧାତୁ ବା ପଦକୁ ସଂଗୀତ-ଲକ୍ଷଣ ଅନୁସାରେ ଗାନ କରା ନ ଯାଇ ନାନାପ୍ରକାରରେ ଗାନ କରାଯାଇପାରେ।

## ଅଧ୍ରୁବା ପାଞ୍ଚାଳୀ(ଛାନ୍ଦ)

ଏହା ସରାଗ ଓ ଅରାଗରେ ରଚିତ ଅଟେ; ମାତ୍ର ଏଥିରେ ନିର୍ଦ୍ଦିଷ୍ଟ ତାଳର ନାମ କ୍ୱଚିତ୍ ଲେଖାଥିବା ଦେଖାଯାଏ। ସରାଗ ଛାନ୍ଦକୁ ନିର୍ଦ୍ଦିଷ୍ଟ ରାଗରେ ପ୍ରଥମେ ଅଳ୍ପ ଆଳାପସହ ତାନ-ଯୋଜନା-କ୍ରମେ କିମ୍ବା ନିର୍ଦ୍ଦିଷ୍ଟ ତାଳରେ ଗାଇବାକୁ ହୁଏ।

ପ୍ରଥମ ପଦ ଯେପରି ଗାନ କରାଯାଏ ସେପରି ଅନ୍ୟ ପଦମାନ ଗାଇବାକୁ ହଏ। ଏଥିରେ ଧାତୁ ବା ପଦର ବିଚାର ନ ଥାଏ କି ତାଳର ପ୍ରାଧାନ୍ୟ ନ ଥାଏ-ତାଳ କେବଳ ଅବଲମ୍ବନ ହୋଇଥାଏ। କେବଳ ଛାନ୍ଦର ପଦାକ୍ଷର ସହ ସ୍ୱର ଓ ଅଙ୍ଗ ତାନ ସଂଯୋଗ ହୋଇ ବିସ୍ତାର ହୋଇଥାଏ। ଅରାଗ ଛାନ୍ଦକୁ ତାହାର ରସଭାବ ଅନୁସାରେ ମଧ୍ୟ ରାଗ ଓ ତାଳ ଯୋଜନା କରି ଉଚ୍ଚାରଣ ଶୁଦ୍ଧ ରଖି ଗାଇବା ଉଚିତ। ଭାଷାର ପ୍ରାବଲ୍ୟ ହେତୁ ଏଥିରେ ରାଗର ଶୁଦ୍ଧତା ରହିବା ଅସମ୍ଭବ ନ ଥାଏ। ଏହା ଶୃଙ୍ଗାର ରସ ପ୍ରାଧାନ୍ୟରେ ବିଶେଷତଃ ରଚିତ। ଏହା ଅଙ୍ଗ ସାଧନାରେ ଆୟତ୍ତ ହୋଇଥାଏ ଏବଂ ଦରବାରରେ ଉଚ୍ଚ ସ୍ଥାନ ପାଏ ନାହିଁ।

ପୂର୍ବୋକ୍ତ ପ୍ରକାର ନିୟମଯୁକ୍ତ ଗୀତ ଓ ଛାନ୍ଦମାନଙ୍କରେ ଗାଇବା-ପ୍ରଣାଳୀ ଭିନ୍ନ। ସେ ସବୁକୁ ଲୋକେ ଅନ୍ୟ ପ୍ରକାରରେ ସଦାସର୍ବଦା ଅନାୟାସରେ ଯଥେଚ୍ଛାଭାବେ ବିନା ସାଧନାରେ ଗାଇଥାନ୍ତି। ତାହା ପଦ୍ୟାବୃତ୍ତି କରିବା ଅନୁସାରେ କେବଳ ପ୍ରଧାନତଃ ଭାଷା ବ୍ୟକ୍ତ ଦ୍ୱାରା ଯେ କୌଣସି ପ୍ରକାରେ ନାମମାତ୍ର ସ୍ୱର-ତାଳ ସଂଯୋଗେରେ ସାଧାରଣ ଲୋକଙ୍କୁ ବୁଝାଇବା ପାଇଁ ଗାଉଥିବାରୁ ତାହାକୁ ପଦ୍ୟାବୃତ୍ତି ବା ପଦ୍ୟାବଳୀ ଗାଇବା କୁହାଯିବା ଉଚିତ୍ ଏବଂ ତାହାକୁ ମଧ୍ୟ ଭାଷାଗୀତ ଓ ଲୋକଗୀତ କୁହାଯାଇପାରେ। ସେହି ପଦ୍ୟାବୃତ୍ତି ବିଷୟ ନିମ୍ନରେ ଲେଖାଗଲା।

ପ୍ରଥମେ ଚାଟ ଅକ୍ଷର ଚିହ୍ନିଲାପରେ ପଦ୍ୟାବୃତ୍ତି କରେ। ଚାଟକୁ ଶିକ୍ଷକ ସ୍ୱ-ଇଚ୍ଛାରେ ଯଥାଯଥ ସ୍ୱତଃ ଉପୁଜିବା ସ୍ୱର ସହିତ ଦିଶ ଓ ବୃତ୍ତଦ୍ୱାରା ପଦ୍ୟାବୃତ୍ତି କରାନ୍ତି। ପ୍ରାଥମିକ ଶିକ୍ଷା

ସମୟରେ ଛାନ୍ଦ ଓ ଗୀତକୁ ଗାଇବାର ଶିକ୍ଷା ଦେଇଥାଚି; ମାତ୍ର ସ୍ୱର, ରାଗ, ତାଳକୁ ଆଦୌ ଲକ୍ଷ୍ୟ କରି ଶିକ୍ଷା ଦିଅନ୍ତ ନାହିଁ। ସେହିପରି ଯାବତୀୟ ଗୀତ ଓ ଛାନ୍ଦମାନଙ୍କୁ ସଂଗୀତ ଲକ୍ଷଣ ନ ଜାଣି ପଦ୍ୟାବୃତ୍ତି କରି ଯଥେଚ୍ଛାଭାବେ ଅଜଣା ନାନା ସ୍ୱର ସଂଯୋଗ ସହିତ ଗାଆନ୍ତି। ତାହା ପଦ୍ୟାବୃତ୍ତି ମଧ୍ୟରେ ଗଣ୍ୟ ଅଟେ। ଏଥିରେ ତ୍ରିପୁଟା, ଆଠତାଳ, ପଡ଼ିତାଳ, ଝୁଲା ବା କ୍ରୀଡ଼ାଚଣ୍ଡ, ନିସାରୁତାଳ, କହରବା, ଏକତାଳି, ଖେମଟା ଇତ୍ୟାଦି ତାଳ ହୋଇଥାଏ। ଏହି ପଦ୍ୟାବୃତ୍ତିକୁ ଲୋକେ ପରସ୍ପର ମଧ୍ୟରେ ଶୁଣାଶୁଣି ଦ୍ୱାରା ଅନାୟାସରେ ଯଥେଚ୍ଛାଭାବେ ତତ୍‌କ୍ଷଣାତ୍ ରଚନା ଓ ଅନୁକରଣ କରି ଗାଇଥାଆନ୍ତି। ଏହା ଲୋକମାନେ ନିଜର ଆମୋଦପ୍ରମୋଦ ମନମଉଜରେ ବିବାହ, ପର୍ବପର୍ବାଣି ଇତ୍ୟାଦିରେ ଜନସମାଗମ ନିମନ୍ତେ ପ୍ରଚାର-କାର୍ଯ୍ୟରେ, ନାଟତାମସା, ଯାତ୍ରାଦଳ, ରଙ୍ଗ, ରଙ୍ଗିଆ, ଥିଏଟର, ଚଳଚ୍ଚିତ୍ର ବହୁ ଲୋକ ଏକତ୍ର ଗାନରେ ଭାବୁକର ଆଧୁନିକ ଗୀତ, ଭଜନ, କୀର୍ତ୍ତନ, ପାଲା, ଦାସକାଠିଆ, ଖଞ୍ଜଣି ଓ ନାଉଧୁଡ଼କିଗାନ, ପଲ୍ଲୀଗୀତ, ଲୋକଗୀତ, ଆଦିବାସୀ-ଗୀତ, ଚାଷୀଗୀତ ଓ ଜାତିଆଣ ସାମାଜିକ ଗୀତ, ଭାଟର ଗାଇବା ଏହିପରି ନାନା ସ୍ଥାନରେ ନାନାପ୍ରକାର ଗାଉଥିବା ଗୀତ ଢଗଢମାଳି, ପହଲି, ପ୍ରବାଦ-ବାକ୍ୟ, ଶାସ୍ତ୍ର, ପୁରାଣ ଇତ୍ୟାଦି ନାନାପ୍ରକାର ଗୀତ ଗାଇବାର ଶୁଣାଯାଏ। ଏହା ନିୟମସିଦ୍ଧ ଗାଇବା ନୁହେଁ। ଯେଉଁ ଗାନରେ ରାଗ, ତାଳ ଓ ସଂଗୀତର ନିୟମ ନ ଥାଏ ଏବଂ କେତେକାଂଶରେ ସ୍ୱରଲୟ ନାନାପ୍ରକାରେ ସଂଯୋଗ ଥିଲେ ମଧ୍ୟ ତାହା ଅଲକ୍ଷଣ ଓ ଭାଷାଗୀତ ବା ପଦ୍ୟାବୃତ୍ତି ବା ପଦ୍ୟାବଳୀ ଅନ୍ତର୍ଗତ କହିବା ଉଚିତ। ଏହା କ୍ଷଣିକ ଉତ୍ତେଜକ,

ତାମସିକ। ଏହାର କୌଣସି ଭିତ୍ତି ନାହିଁ କିମ୍ବା ନିଶ୍ଚୟତା ନାହିଁ। ଏଥିରେ ବିଶେଷରେ ଏକ, ଦୁଇ, ତିନି, ଚାରି, ସ୍ୱର ଜାତୀୟ ଅର୍ଥାତ୍ ଆର୍ଚ୍ଚିକ, ଗାଥିକ, ସାମିକ ଓ ସ୍ୱରାନ୍ତରା ଅନୁସାରେ ପ୍ରୟୋଗ ସ୍ୱର ଥାଏ ଏବଂ ଅର୍ଦ୍ଧ-ସପ୍ତକ ଅଥବା କୌଣସି ଦ୍ୱିତୀୟ ସପ୍ତକରୁ ଅଳ୍ପସଂଖ୍ୟକ ସ୍ୱର କ୍ୱଚିତ୍ ଲୋକ ତିନିଗୋଟି ସପ୍ତକସ୍ୱର ମଧ୍ୟରୁ ଅନିୟମରେ ଅଳ୍ପସଂଖ୍ୟକ ସ୍ୱରକରି ଗାଇବାର ଶୁଣାଯାଏ। ରାଗ ଜାଣିଥିବା ଲୋକେ କେହି କେହି ଏକ ରାଗ ବା ତତୋଽଧିକ ରାଗର ସଂଯୋଗରେ ମଧ୍ୟ ଗାଇବାର ଶୁଣାଯାଏ; କିନ୍ତୁ ପଦ୍ୟକୁ ରାଗ, ତାଳ ନିୟମରେ ପ୍ରକାଶ କରି ଲକ୍ଷଣରେ ଗାଇଲେ ତାହାକୁ ପଦ୍ୟାବୃତ୍ତି କହିବା ଉଚିତ ହେବ ନାହିଁ। ତହା ପାଞ୍ଚାଳୀ ଆଶ୍ରୟ କରିବ।

ଅବଶ୍ୟ ଲୋକମାନେ ଏହାର ଭାଷାଚାତୁରୀକୁ ହଠାତ୍ ବୁଝିପାରି ବିଶେଷ ଆଗ୍ରହୀ ହେଲେ ମଧ୍ୟ ତାହାକୁ କର୍ତ୍ତବ୍ୟମଧ୍ୟରେ ଗ୍ରହଣ କରନ୍ତି ନାହିଁ। ତାହା ଅସତ୍ୟ, ଭାବୀ ଅମଙ୍ଗଳପ୍ରଦ, ଏହା ବ୍ୟକ୍ତିଗତ ସୀମାବଦ୍ଧ, ଏହା ଉଚ୍ଚ ସ୍ଥାନ ପାଏ ନାହିଁ କିମ୍ବା ଲୋକମାନେ ଉଚ୍ଚ ସଙ୍ଗୀତ ମଧରେ ଗ୍ରହଣ କରନ୍ତି ନାହିଁ। ଉପଯୁକ୍ତ ସାଧନାର ଲକ୍ଷଣଯୁକ୍ତ ସଙ୍ଗୀତ ଗାନ-ବାଦନ ସର୍ବବ୍ୟାପୀ, ଆଦର୍ଶସ୍ଥାନୀୟ ଓ ସର୍ବତ୍ର ଉଚ୍ଚ ଆସନ ପାଏ ଏବଂ ଯୋଗ-ପ୍ରାଣାୟାମର ଫଳପ୍ରାପ୍ତ କରାଏ। ଶ୍ରୋତା ଓ ଗାୟକ, ବାଦକ ଓ ସାଧକମାନଙ୍କୁ ଦୀର୍ଘଜୀବୀ, କର୍ମଠ, ବଳିଷ୍ଠ କରାଏ ଓ ଶାନ୍ତି ଦାୟକ ହୁଏ। ଧର୍ମ, ଅର୍ଥ, କାମ, ମୋକ୍ଷକୁ ଦିଏ ଓ ଏହାର ବିପରୀତରେ ବିପରୀତ ଫଳ ହୁଏ। ବ୍ୟଭିଚାରକୁ ବଢାଏ, ଜୀବନ ପ୍ରତି କ୍ଷତି ଘଟାଏ। ନିଶା ସେବନ ଓ ତାହାର

ଅନୁସଙ୍ଗିକ କାର୍ଯ୍ୟକୁ ବଢ଼ାଏ। ଏହାରି ଅନ୍ତର୍ଗତ ଉତ୍ତର-ଭାରତ ପ୍ରଚଳିତ ଗଜଲ, କଜରୀ, ଲାଉନି, ରେଖତା, କବାଲି, ଦୋହା, ଚୌପାହି ଓ ମୁସଲମାନ ସମାଜର ମର୍ଶିୟା ଏବଂ ଦକ୍ଷିଣ-ଭାରତର କୀର୍ତ୍ତନ ଇତ୍ୟାଦି ଥିବାର ଅନୁମାନ କରାଯାଏ। ଏହାକୁ ଅନୁସରି ଲୋକମାନେ ଯନ୍ତ୍ରମାନ ବଜାନ୍ତି। ଏହା ସଙ୍ଗୀତ ନୁହେଁ। ଏଥିରେ ତାଳ ନିୟମପ୍ରତି ବିଶେଷ ଲକ୍ଷ୍ୟ ଦିଆଯିବାର ଦେଖାଯାଏ ନାହିଁ। କିନ୍ତୁ ଖୋଳ (ମୃଦଙ୍ଗ) ବଜାଇବା ଲୋକମାନେ କେବଳ ତାଳ ମାତ୍ରା ବ୍ୟକ୍ତ କରିବାର ଦେଖାଯାଏ। ଏହିପରି ଗାଇବାରେ ଲୟ ଓ ତାଳର ଗତି ଅନୁସାରେ ଉପରୋକ୍ତ ତାଳକୁ ଅନୁସରଣ କରିଥାନ୍ତି ଏବଂ ତାହା ସହିତ ବାଦ୍ୟଯନ୍ତ୍ର, ଖଞ୍ଜଣୀ, ଚାଙ୍ଗୁ, ଡେମ୍ପ, ଢୋଲକି ଦୁଇ ପାଖ କିରଣଦିଆ ପାଖୋଜ, ଖୋଳ ବା ମୃଦଙ୍ଗ, ରାମତାଳୀ, କାଠତାଳୀ ଝୁମୁକା କନସି ନାଉଧୁଡ଼କି ଗୋପୀଯନ୍ତ୍ର ଏକତାରା ମନ୍ଦିରା ବଜାଇଥାନ୍ତି। କେତେକ ଲୋକ ମୃଦଙ୍ଗ ବଜାଇ ପଦ୍ୟାବୃତ୍ତି କରି ନାନାପ୍ରକାର ତାଳର ତାତ୍ପର୍ଯ୍ୟ ଦେଖାଇଥାନ୍ତି ଏବଂ ଭିକାରୀମାନେ କେନ୍ଦେରା ତିନି ସ୍ୱରର ବଂଶୀ ବଜାଇଥାନ୍ତି ଓ କେତେକ ସାଧୁସନ୍ୟାସୀ, ବୈଷ୍ଣବମାନେ ପଦ୍ୟାବୃତ୍ତି ସହିତ ସୀତାର, ସାରଙ୍ଗୀ, ବେହେଲା ବଜାଇବା ଦେଖାଯାଏ। କେତେକ ବାଦ୍ୟ ବଜାଇବା ବ୍ୟବସାୟୀ ବିବାହ ବ୍ରତ, ଅନ୍ୟାନ୍ୟ ପର୍ବପର୍ବାଣୀ ଓ ପ୍ରଚାର କାର୍ଯ୍ୟରେ ମହୁରି, ବଂଶୀ, କ୍ଲାରିଓନେଟ ସେହି ପ୍ରକାର ଯନ୍ତ୍ରରେ ପଦ୍ୟାବୃତ୍ତିମାନ ବଜାଇଥାନ୍ତି। ଯନ୍ତ୍ରରେ ବାଜିବା ହେତୁ ତାହା ସ୍ୱର ବୃତ୍ତି ମଧ୍ୟରେ ଗଣ୍ୟ ବୋଲି କହିବାକୁ ହେବ। ଏହି ପଦ୍ୟାବୃତ୍ତି ଏକତାଳି, କହରବା, ଖେମଟା ତାଳମାନଙ୍କରେ ସାଧାରଣତଃ ସର୍ବଦା ଶୁଣାଯାଏ ଏବଂ ତ୍ରିପୁଟା,

ଝମ୍ପା, ଯତି-ଆଠତାଳି, ଝୁଲା ପଡ଼ିତାଳମାନଙ୍କରେ ମଧ୍ୟ ଗାଇବାର ଶୁଣାଯାଏ। ପୂର୍ବୋକ୍ତ ଅନୁସାରେ ଉତ୍କଳ ବା ଓଡ଼ିଶା ସଙ୍ଗୀତର ସଂକ୍ଷିପ୍ତ ବିଭାଗର ନାମ।

## ପ୍ରବନ୍ଧ

୧। ଶୁଦ୍ଧଗୀତ ବିଭାଗ:- ୧। ଶୁଦ୍ଧଗୀତ
୨। ଛାୟାଲଗ ଓ ତ୍ରିଭଙ୍ଗୀ ପ୍ରବନ୍ଧ

୨। କ୍ଷୁଦ୍ର ଗୀତ ବିଭାଗ:- ୧। ଧ୍ରୁବପଦା (ଧ୍ରୁପଦ)
'' ପ୍ରଥମ ପ୍ରକାର
(ଆଳାପ ପ୍ରକାର)
'' ଦ୍ୱିତୀୟ ପ୍ରକାର
(କଳ୍ପନା ପ୍ରକାର)

ପ୍ରବନ୍ଧ ଅଙ୍ଗକୁ ଅନୁସରଣ କରି ଦ୍ୱିଅଙ୍ଗ, ତ୍ରିରଙ୍ଗ (ତେଲାନା), ଚତୁରଙ୍ଗ, ପଞ୍ଚରଙ୍ଗ ଇତ୍ୟାଦିରେ ଗାନ ହୁଏ।

୨। ଚିତ୍ରପଦା
୩। ଚିତ୍ରକଳା
୪। ସଧ୍ରୁବା ପାଞ୍ଚାଳୀ
୫। ଅଧ୍ରୁବା ପାଞ୍ଚାଳୀ (ଛାନ୍ଦ)
୬। ପଦ୍ୟାବୃତ୍ତି
(ପଦ୍ୟାବଳୀ ବା ଲୋକଗୀତ)

ଏଥିରେ ଉପଯୁକ୍ତ ପ୍ରକାରେ ଗୀତମାନଙ୍କର ଗାଇବା ସମ୍ବନ୍ଧରେ ଯେପରି ଲେଖାଗଲା, ସେହି ନିୟମ ସର୍ବତ୍ର ପ୍ରଯୁଜ୍ୟ।

ଏହି ଗ୍ରନ୍ଥରେ ପ୍ରବନ୍ଧ ଓ କ୍ଷୁଦ୍ର ଗୀତମାନଙ୍କର ରଚନା ଉଦାହରଣସହ ଯାହା ଲେଖାଯାଇଅଛି, ତାହା ପୃଥୁଳା- ଅନ୍ତର୍ଗତ ବୋଧ ହୁଏ। ତାହା ଛଡ଼ା ସେହିପରି ସଂଗୀତ -ଲକ୍ଷଣ ସହିତ ତାଳ-ଛନ୍ଦ-ନିୟମ ଅନୁସାରେ ରଚନାର ପ୍ରତ୍ୟେକ ଧାଡ଼ି ତାଳର ଏକ ବା ଦୁଇ ଆବୃତ୍ତି ମଧ୍ୟରେ ବା ଦରକାର ଅନୁସାରେ ସଂକ୍ଷେପରେ ଅର୍ଥାତ୍ ମାଗଧି, ଅର୍ଦ୍ଧମାଗଧି, ସଂଭାବିତ ନିୟମରେ ସାଂଗୀତିକ ଭାଷା ସହିତ ସଂସ୍କୃତ ଭାଷା · କିମ୍ବା ତାହା ସମକକ୍ଷ ଭାଷା ଓ ପ୍ରାଚୀନ ଉତ୍କଳ ରାଷ୍ଟ୍ର- ପ୍ରଚଳିତ ଭାଷାରେ ଗୀତ ରଚିତ ହୋଇ ଗାନ କରାଗଲେ ତାହା ନିର୍ଦ୍ଦୋଷ ଓ ସର୍ବାଙ୍ଗସୁନ୍ଦର ହେବ ଏବଂ ସର୍ବତ୍ର ଆଦୃତ ହେବ। ଯଥା ଜୟଦେବଙ୍କ ଗୀତଗୋବିନ୍ଦ-ଭାଷା ଏବଂ ଏଥିରେ ଉଦାହରଣ ଦିଆଯାଇଥିବା ପ୍ରାଚୀନ ଉତ୍କଳୀୟ ଗୀତର ଭାଷା ଆଦର୍ଶ ଅଟେ।

ଉପଯୁକ୍ତ ସଂଗୀତ ଲକ୍ଷଣଯୁକ୍ତ ଶୁଦ୍ଧ ଓ କ୍ଷୁଦ୍ର ଗୀତମାନଙ୍କୁ ସଂଗୀତସାଧକ ପଣ୍ଡିତଙ୍କ ବ୍ୟତୀତ ସାହିତ୍ୟ- ପଣ୍ଡିତମାନେ ରଚନା କରିବା ଅସମ୍ଭବ; ମାତ୍ର · ପାଞ୍ଚାଳୀ ଗୀତକୁ ସାହିତ୍ୟ-ପଣ୍ଡିତମାନେ ଓ ଅନ୍ୟମାନେ ନିଜ ଦେଶର ମାତୃଭାଷାରେ ସେମାନଙ୍କର ଇଚ୍ଛାନୁସାରେ ନାନାପ୍ରକାରରେ ରଚନା କରିଥାନ୍ତି। କିନ୍ତୁ ତାହା ଉତ୍କୃଷ୍ଟ ନୁହେଁ।

ଯେଉଁ ଗାଇବା ଓ ତାହାର ଭାଷା ସଂଗୀତ-ଲକ୍ଷଣ ଅନୁସାରେ ଥିବ, ଯେଉଁ ସଂଗୀତରେ କିଛିମାତ୍ର ଭେଦଭାବ ପ୍ରକାଶ ହେଉ ନ ଥିବ, ଯହିଁରେ ସାର୍ବଭୌମତ୍ୱ ଥିବ, ସର୍ବତ୍ର ବୋଧ ଓ ଗ୍ରହଣୀୟ

ହେବ, ତାହା ବ୍ରହ୍ମମୟ। ତାହା ଯେଉଁ ଗୀତରେ ଯେତେ ପରିମାଣରେ ଥିବ, ସେ ଗୀତ ସେହି ପରିମାଣରେ ଉତ୍କୃଷ୍ଟ ଅଟେ।

ଶବ୍ଦ, ସ୍ୱର, ରାଗ, ତାଳ, ଲୟ, ବାକ୍ୟ ଇତ୍ୟାଦି ପ୍ରତ୍ୟେକର ରଞ୍ଜନ- ଶକ୍ତି ଅଛି। ସମୂହଦ୍ୱାରା ରଞ୍ଜନ ନ କରି କେବଳ ଗୋଟିଏ ବା କେତେଗୋଟିଦ୍ୱାରା ରଞ୍ଜକତା ଉତ୍କୃଷ୍ଟ ହୁଏ ନାହିଁ, ତାହା ଅସମ୍ପୂର୍ଣ୍ଣ ଓ ଦୂଷଣୀୟ ଅଟେ।

ଜଗତର ସମସ୍ତ ପ୍ରାଣିବର୍ଗଙ୍କୁ ଯେ ବଶ କରି ପାରେ, ସେ ପ୍ରକୃତ ସଂଗୀତ ଅଟେ। ସଂଗୀତ ଭଗବତ୍‌ତୁଲ୍ୟ; ପ୍ରକୃତ ସଂଗୀତରେ କିଛିମାତ୍ର ଭେଦାଭେଦ ରହିବା ଉଚିତ ନୁହେଁ। ଏପରି ସଂଗୀତ ବୀଣା କିମ୍ବା ତଜ୍ଜାତୀୟ ଯନ୍ତ୍ରରେ ହୁଏ, ତାହା ମନୁଷ୍ୟକଣ୍ଠରେ ହେଲେ ତାହା ବୀଣା-ବାଦନର ଅନୁରୂପ ଅଟେ। ତାହା କେବଳ ଆଳାପକୁ ବୁଝାଏ। ସେରୂପ ସଂଗୀତ ଧର୍ମ-ଅର୍ଥ-କାମ-ମୋକ୍ଷପ୍ରଦ।

ସେହି ଆଳାପର ଅନୁରୂପ ଭାଷାର ବ୍ୟବହାର ହେଲେ ତାହା ସଂକୀର୍ଣ୍ଣତାକୁ ଆଶ୍ରା କରେ, କିନ୍ତୁ ସେହି ଭାଷା ସହିତ ଆଳାପ ତାନ ସଂଗୀତ -ଲକ୍ଷଣ ରହିଲେ ତାହା ସାଧନ-ବଳରେ ଜଗତକୁ ବଶ କରିବାକୁ ସମର୍ଥ ହୁଏ। ସଂଗୀତର ଭାଷା ସାର୍ବଜନୀନ ହେବା ଉଚିତ ଏବଂ ତହିଁରେ ଯେପରି କୌଣସି ସାମ୍ପ୍ରଦାୟିକ ଭେଦଭାବ ସୃଷ୍ଟି ନ ହୁଏ। ତେଣୁ ଭାଷା ଓ ଭାବ ସର୍ବଜନଗ୍ରହଣୀୟ ହେବା ଉଚିତ। ପ୍ରକୃତ ସଂଗୀତରେ ନାୟକ-ନାୟିକା-ପ୍ରେମ ବର୍ଣ୍ଣନା ନ ହୋଇ ପରମେଶ୍ୱରଙ୍କ ଗୁଣକୀର୍ତ୍ତନ ହେବା ଉଚିତ। ଏପରି

ହେଲେ ଗୀତର ଆଦର୍ଶ ରକ୍ଷିତ ହୁଏ; କିନ୍ତୁ ଭାଷାରେ ନାୟକ-ଦାୟିକାଙ୍କ ପ୍ରେମ-ବର୍ଣ୍ଣନାର ଗୀତକୁ ସଂଗୀତ-ଲକ୍ଷଣଯୁକ୍ତରେ ଗାୟନ କଲେ ସୁଦ୍ଧା ତାହା ଅତି ସଂକୀର୍ଣ୍ଣତାକୁ ଆଶ୍ରା କରେ, ତାହା ଆଦର୍ଶରୂପେ ଗ୍ରହଣୀୟ ହେବ ନାହିଁ। ଏପରି ସ୍ଥଳେ ସଂଗୀତ-ଲକ୍ଷଣହୀନ ଗୀତର ଉତ୍କୃଷ୍ଟ ସଂଗୀତରେ ସ୍ଥାନ ନାହିଁ। ଅର୍ଥ ଉପାର୍ଜ୍ଜନ କରିବାଦ୍ୱାରା ସଂଗୀତର ମହତ୍ତ୍ୱ ନଷ୍ଟ ହୁଏ। ତେଣୁ ସାର୍ବଜନୀନ ଆଦର୍ଶତୁଲ୍ୟ ସଂଗୀତ କରାଯିବା ମାନସରେ ସଂଗୀତ ନିୟମକୁ ଯେତେଦୂର ଅନୁସରଣ କରି ଆଦର୍ଶ ନିମନ୍ତେ କେତେଗୋଟି ଗୀତ ରଚନା କରାଯାଇ ଏଥିରେ ପ୍ରଦାନ କରାଗଲା। ସେହି ଅନୁକ୍ରମରେ ଆହୁରି ଗୀତମାନ ପ୍ରତ୍ୟେକ ରାଗ ଓ ତାଳରେ ରଚନା ହେବା ଆବଶ୍ୟକ।

ସ୍ୱଦେଶ ଭାଷାରେ ପାଞ୍ଚାଳୀଜାତୀୟ ଗୀତ ଓ ଛାନ୍ଦ ବହୁତ ରଚନାମାନ ଅଛି ଏବଂ ନାନାପ୍ରକାରେ ସାହିତ୍ୟ-ପଣ୍ଡିତମାନେ ସର୍ବଦା ରଚନା କରୁଅଛନ୍ତି। ତେଣୁ ତାହର ଆଦର୍ଶ ପ୍ରଦତ୍ତ ହେଲା ନାହିଁ। ପାଞ୍ଚାଳୀ ରୀତିରେ ଗୀତ ଗାଇବା ଏଥିରେ ବର୍ଣ୍ଣନା କରାଯାଇଅଛି; ତଥାପି ସ୍ୱଦେଶୀୟ ଭାଷାରେ ପାଞ୍ଚାଳୀ ଗୀତ ସ୍ଥାୟୀ ଅନ୍ତରା ଅନୁସାରେ ତାନ ଆଳାପ ସହିତ ଗାନ କରାଯାଉଥିବା ବର୍ତ୍ତମାନ ଭାରତର ପ୍ରାନ୍ତମାନଙ୍କରେ ବିଶେଷ ପ୍ରଚଳନ ଦେଖାଯାଏ। ତାହାହେଲେ ମଧ୍ୟ ଉତ୍କୃଷ୍ଟ ମଧ୍ୟରେ ଗଣ୍ୟ ହେବା ସଂଗୀତ ହେବ ନାହିଁ। ବହୁପଦବିଶିଷ୍ଟ ପାଞ୍ଚାଳୀ ଗୀତ କେବଳ ରାଗ, ତାଳକୁ ଅନୁସରଣ କରି ଗାଇବା ଉଚିତ।

## ଦିବା ଓ ରାତ୍ରର ରାଗମାନଙ୍କର ସମୟନିରୂପଣ

| ଦିବସ ୧ମ ପ୍ରହର | ଇଂରାଜି | ୧୦ଘଣ୍ଟା ପର୍ଯ୍ୟନ୍ତ | |
|---|---|---|---|
| ସକାଳ | ୭ଘଣ୍ଟାଠାରୁ | | |
| ,, ୨ୟ ପ୍ରହର | ” ଘ୧’,, | ଘ୧ | ” |
| ,, ୩ୟ ପ୍ରହର | ,, ଘ୧ ,, | ଘ୪ | ,, |
| ,, ୪ର୍ଥ ପ୍ରହର | ,, ଘ୪ ,, | ଘ୭ | ,, |
| ରାତ୍ର ୧ମ ପ୍ରହର | ,, ଘ୭ ,, | ଘ୧୦ | ,, |
| ,, ୨ୟ ପ୍ରହର | ,, ଘ୧୦ ,, | ଘ୧ | ,, |
| ,, ୩ୟ ପ୍ରହର | ,, ଘ୧ ,, | ଘ୪ | ୪,, |
| ,, ୪ର୍ଥ ପ୍ରହର | ,, ଘ୪ ,, | ଘ୭ | ,, |

### ସଂଗୀତ- ଲକ୍ଷଣଯୁକ୍ତ ଗାନର କେତେକ ଆଦର୍ଶ-

### ଶୁଦ୍ଧଗୀତ

ଏହାର ନାମ ମେଦିନୀ, ଏହା ଷଡ଼ଙ୍ଗ ଏହା ୧ପଦ ୨ସ୍ୱରାକ୍ଷର ୩ ତେନାନାନା ୪ ବାଦ୍ୟାକ୍ଷର ୫ ପ୍ରଭୁଙ୍କର ସ୍ତୁତି ବା ପ୍ରଶଂସା ଅର୍ଥାତ୍ ବିରୁଦ ୬ ତାଳଯୁକ୍ତାନା ସହିତ ଅଟେ ।

### ରାଗ- କର୍ଣ୍ଣାଟ, ତାଳ-ଆଦି, ୧୬ ମାତ୍ରା

### ଉଦ୍‌ଗ୍ରାହ

ଅପାର ସଂସାରସାର ହାରଧର,
ନିସାରେ ରେ ଧାଧା ନିପା ମପା ଧାନି ସାରେ ନିସା ॥ ୧ ॥

### ଧ୍ରୁବ

ତେନାନା ତେନନା ତେନା ତୋମ୍ ତୋମ୍ ତେନାନାନା
ଗିଘିନାଗେଧା ଗିଘିନାଗେଧା ଗିଘିନାଗେ ତୋମ୍‌ତୋମ୍ ତେନାନା ॥ ୨ ॥

**ଆଭୋଗ**

ଆଦି ଯତି ନିଜ ସାରୁ ଆଦ୍ ତିରୂପୁଟ ତାରୁ,
ରୂପକଝମ୍ପକମଂଠ ଏକତାଳି ପରକଟ ।।
ଜୀବଲୋକ ତାତ ଜୀବ ଜୀବ ଦାଉ,
ପଦେ ସଦା ନତ ବଳଦେବଚିତ୍ତ ।। ୩ ।।

**ଶୁଦ୍ଧଗୀତ**

ଏହାର ନାମ ନନ୍ଦିନୀ । ଏହା ପଞ୍ଚ ଅଙ୍ଗ, ଏହା ୧ ପଦ, ୨ ସ୍ୱରାକ୍ଷର, ୩ ତେନାନା, ୪ ବାଦ୍ୟାକ୍ଷର, ୫ ପ୍ରଭୁଙ୍କର ସ୍ତୁତି ବା ପ୍ରଶଂସା ଅର୍ଥାତ୍ ବିରୁଦ ସହିତ ଅଟେ ।

**ରାଗ- ଯମନ, ତାଳ- ଆଦି, ୧୬ମାତ୍ରା**

**ଉଦ୍‌ଗ୍ରାହ**

ବିଭୂପଦପଙ୍କଜ ପରମମୋଦେ ମଜ
ନିରେ ଗରେ ଗାମା ପାମା ନିଧା ପାମା ଗାରେସା ।। ୧ ।।

ଧ୍ରୁବ

ତେନାନା ତେନାନା ତେନା ତୋମ୍ ତାନା ଦେରେ ଦାନି,
ଧାକିଟିତକ୍ ଧୁମକିଟିତକ ତିଟିକତଧା ତିଟିକତଧା ତିଟିକତ ।। ୨ ।।

ଆଭୋଗ

ନାମୋ ନମୋ ଜଗ- ସର୍ଜନ କାରଣ
ମାରଣ ତାରଣ ଦୁଃଖ-ନିବାରଣ
ଦୁରିତ ତୁରିତ ନିହତ ସତତ
ବଳଦେବ ଭକ୍ତ ବିନାଶ ଆରତ ।। ୩ ।।

## ଶୁଦ୍ଧଗୀତ

ଦୁଇ ଅଙ୍ଗ- ଏହାର ନାମ ତାରାବଳୀ
ଏହା ୧ପଦ ୨ ତେନାନାନା ସହିତ ଅଟେ ।
ରାଗ-କର୍ଣ୍ଣାଟ, ତାଳ-ଆଦି ୧୬ ମାତ୍ରା

### ଉଦ୍‌ଗ୍ରାହ

ତେନେ ନେନେ ନେନେ ତେନେ ତୋମ୍ ତାନା ଦେରେ ଦାନି,
ତାଦେରେ ତାଦେରେ ଦାନି ନା ଦେରଦେର ତାରେ ଦାନି ॥ ୧ ॥

### ଧ୍ରୁବ

ଦେରେନା ଦେରେନା ଦେରେ ଦିମ୍‌ତାନା ଦେରେଦାନି
ଦେରେନା ଦେରେନା ଦେରେ ତୋମ୍ ତାନା ଦେରେ ଦାନି ॥ ୨ ॥

### ଆଭୋଗ

ଦୀନନାଥ ଦୟାଧାର ନିରଂଜନ ନିରାକାର,
ପରଂବ୍ରହ୍ମ ମହେଶ୍ୱର ଆଦିଦେବ ପରାପର ॥ ୧ ॥
ଭବଭୟଭଂଜ ସର୍ବଗର୍ବ-ଗଂଜନ,
ଦୁରିତ-ନିବାରଣ ବଳଦେବ-ବନ୍ଦନ ॥ ୨ ॥

### ଛାୟାଲଗ

ରାଗ-ପଞ୍ଚମ, ତାଳ-ଆଦି, ୧୬ମାତ୍ରା (ତ୍ରିତାଳ)

ଧ୍ରୁବ- (ସ୍ଥାୟୀ)

ଜୟ ବିଶ୍ୱେଶ୍ୱର ଜଗତ-ଈଶ୍ୱର
ଦୁରିତ ନିବାର ଦୀନ-ଦୁଃଖ ହର ॥

### ଆଭୋଗ (ଅନ୍ତରା)

ଦିବା-ନିଶି ରତ        ଚିନ୍ତିତ ସତତ
ଭକତ-ଆରତ        ନିହତ ତୁରିତ ॥

### ଛାୟାଲଗ

ରାଗ-ବରାଡ଼ି, ତାଳ, ଆଦି ୧୬ମାତ୍ରା (ତ୍ରିତାଳ)

### ଧ୍ରୁବ (ସ୍ଥାୟୀ)

ଶଙ୍କର ପିନାକଧର        ବିଶ୍ୱନାଥ ବିଶ୍ୱମ୍ଭର ।
ଦେବଦେବ ସ୍ମରହର        ବଳଦେବ ଦୁଃଖହର ॥ ୨ ॥

---

## କ୍ଷୁଦ୍ରଗୀତ ବିଭାଗ

### ଧ୍ରୁବପଦା (ଆଳାପ ପ୍ରକାର)

ରାଗ-କର୍ଣ୍ଣାଟ, ତାଳ- କୁଡୁକ (ଚୌତାଳ ତୁଲ୍ୟ)

### ସ୍ଥାୟୀ

ସାଧ ନାଦ ସପ୍ତସ୍ୱର        ଏକୋଇଶ ମୂରଛନା
ଦ୍ୱାବିଂଶତି ଶ୍ରୁତି ଭିନ୍ନ        ଉନଚାଶ କୁଟତାନ ॥ ୨ ॥

### ଅନ୍ତରା

ଆରୋହଣାବରୋହଣ        ସ୍ଥାୟୀ ଅନ୍ତରା ସଞ୍ଚାର ।
ଦ୍ୱାବିଂଶତି ଶ୍ରୁତି ଶୁଦ୍ଧାକ୍ଷର        ଉଦାରା ମୁଦାରା ତାର ॥ ୨ ॥

### ସଞ୍ଚାରୀ

ଓଡ଼ବ ଷାଡ଼ବ ପୂର୍ଣ୍ଣ ଗ୍ରହଅଂଶ ନ୍ୟାସ ବର୍ଣ୍ଣ
ତ ମଧ ବିଳମ୍ବିତ ସମାତୀତ ଅନାଗତ ॥ ୩ ॥

## ଆଭୋଗ

ଶୁଦ୍ଧଛାୟାଲଗ କ୍ଷୁଦ୍ର ବନ୍ଧ ଗାନସୁଆମୋଦ
ରାଗରଙ୍ଗ କାଳଭାବ ବଳଦେବ ବଦେ ଧ୍ରୁବ ।। ୪ ।।

## ଧ୍ରୁବପଦା (ଆଳାପ ପ୍ରକାର)

## ରାଗ-ୟମନ୍, ତାଳ- କୁଡୁକ (ଚୌତାଳ ତୁଲ୍ୟ)

## ସ୍ଥାୟୀ

ଭସ୍ମଅଙ୍ଗ ତ୍ରିଲୋଚନ ଯୋଗେଶ୍ୱର ମହାଦେବ ।
ତ୍ରିପୁରାରି ବାମଦେବ ବିଶ୍ୱେଶ୍ୱର ସଦାଶିବ ।। ୧ ।।

## ଅନ୍ତରା

ପଶୁପତି ନାଗପତି ଜଗତଜୀବନଧନ ।
ବିଶ୍ୱନାଥ ବିଶ୍ୱମ୍ଭର ଡମ୍ବରୁଧର ଧୀମାନ ।। ୨ ।।

## ସଞ୍ଚାରୀ

ବିଶ୍ୱରୂପ ଚିଦାନନ୍ଦ ଆଦିଦେବ ସିଦ୍ଧିକର ।
ନାଗଭୂଷଣ ଈଶ୍ୱର ବୃଷଧ୍ୱଜ ବିଷଧର ।। ୩ ।।

## ଆଭୋଗ

ପରଂବ୍ରହ୍ମ ମହେଶ୍ୱର ଦକ୍ଷଯଜ୍ଞ ବିନାଶନ ।
ଦୟାନିଧି ନୀଳକଣ୍ଠ ବଳଦେବ ହରଦୀନ ।। ୪ ।।

---------

## ଧ୍ରୁବପଦା (ଆଳାପ ପ୍ରକାର)

## ରାଗ-ନଟ, ତାଳ- କୁଡୁକ (ଚୌତାଳ ତୁଲ୍ୟ)

**ସ୍ଥାୟୀ**

**ସସାଗରା ଧରାପତି ନିଖିଳ ଭୁବନପତି ।**
**ବିରାଜିତ ସଦା ନିତି ନିରେଖ ଚପଳମତି ॥ ୧ ॥**

**ଅନ୍ତରା**

**ବିଷୟ-ବାସନା ତ୍ୟଜ ନିରନ୍ତରେ ଧ୍ୟାନେ ମଜ**
ଦରଶନ ପରଶନ ପରାପତ ସଦଗତି ॥ ୨ ।

------------

ଧ୍ରୁବପଦା (ଆଳାପ ପ୍ରକାର)
ରାଗ-ଶ୍ରୀ, ତାଳ- କୁଡୁକ (ଚୌତାଳ ତୁଲ୍ୟ)
**ସ୍ଥାୟୀ**

ଦହନ କର ବହନ ତରଳ ଚଞ୍ଚଳ ମନ ।
ପରଶ ହରଷମତ ସରସ ଅନବରତ ॥ ୧ ॥

ଅନ୍ତରା

ସକଳ ଦରଦହର ତରସ ଭୟ ଅପର ।
କରବଳ ପରବତ ସହନ କରଣବତ ॥ ୨ ।

---

ଧ୍ରୁବପଦା (ଆଳାପ ପ୍ରକାର)
ରାଗ-ଗୌରୀ, ତାଳ- କୁଡୁକ (ଚୌତାଳ ତୁଲ୍ୟ)
**ସ୍ଥାୟୀ**

ରାଗ ତାଳ ସ୍ୱରଭେଦ ଗୁଣିଜନ ପରସାଦ ।
ଜାଣ ମୂଜାଣ କୋବିଦ ପରାପତ ନିତ୍ୟ ସାଧ ॥୨ ॥

### ଅନ୍ତରା

ଅଭ୍ୟାସ ଶ୍ରବଣ ଧ୍ୟାନ ନିୟତ ସାଧନମନ।
ନାଦବିଦ୍ୟା ସୁକଠିନ ଆୟତ୍ତ କିଞ୍ଚିତ୍ ଜାଣ ॥ ୨ ॥

---------

### ଧ୍ରୁବପଦା (ଆଳାପ ପ୍ରକାର)

### ରାଗ-ଭୈରବୀ, ତାଳ-କୁଡୁକ (ଚୌତାଳ ତୁଲ୍ୟ)

### ସ୍ଥାୟୀ

ସାଧ ସିଦ୍ଧ ଶୁଦ୍ଧସ୍ୱର ଷଡ୍‌ଜ ଋଷଭ ଗାନ୍ଧାର।
ମଧ୍ୟମ ପଞ୍ଚମ ଧୈବତ ନିଷାଦ ସରବସ୍ୱର ॥

---

### ଅନ୍ତରା

ଔଡ୍‌ବଷାଡ୍‌ବ ପୂର୍ଣ୍ଣ ରାଗଜାତ ସୁକାଗଣ।
ତାନ ମାନ ନ୍ୟାସ ବର୍ଣ୍ଣ ଶୁଦ୍ଧ ଛାୟାଲଗ ଗାନ ॥

### ସଞ୍ଚାରୀ

କଇବାତତିରିଭଙ୍ଗ ପ୍ରବନ୍ଧ ସରବ ଅଙ୍ଗ।
ତାନ ଲୟ ରସ ରାଗ ଗୁଣିଜନ ଯୋଗାଯୋଗ ॥

### ଆଭୋଗ

ଚନ୍ଦ୍ରକଳା ଚିତ୍ରପଦା ପାଞ୍ଚାଳି ଧୃରୁବପଦା।
କ୍ଷୁଦ୍ରଗୀତ ସୁମମତ ଶ୍ୟାମ ଧୀର ବଦେ ସଦା ॥

-----

(ଧ୍ରୁବପଦା ୯ଆଳାପ ପ୍ରକାର)
ରାଗ-ଧନାଶ୍ରୀ, ତାଳ-କୁଡୁକ (ଚୌତାଳ ତୁଲ୍ୟ)
ସ୍ଥାୟୀ

ପ୍ରଚଣ୍ଡ ନିଦାଘକାଳ ପରବେଶ ଭୂମଣ୍ଡଳ ।
ତପନ କିରଣଜାଳ ଚପଟ ଧରଣୀତଳ ।।

ଅନ୍ତରା

ପଥିକକୁଳ ଆକୁଳ ବିକଳ ଅତି ଅଚଳ ।
ଶୋଷଣେ ବହୁଳଜଳ ବିଶେଷ ତୃଷା ପ୍ରବଳ ।।

---------

ଧ୍ରୁବପଦା (ଆଳାପ ପ୍ରକାର)
ରାଗ-ବରାଡ଼ି, ତାଳ- କୁଡୁକ (ଚୌତାଳତୁଲ୍ୟ)
ସ୍ଥାୟୀ

ଶରତଋତୁ ପ୍ରବେଶ ନିରମଳ ନୀଳାକାଶ ।
ସୁନ୍ଦର ଚନ୍ଦ୍ରକିରଣ ପରଶନ ଜନମନ ।।

ଅନ୍ତରା

ସଂସାର ଶସ୍ୟଶାମଳ ଉଲ୍ଲସିତ ପ୍ରାଣିକୁଳ ।
ସୁବିମଳ ନଦୀଜଳ ବିକଶିତ ଫୁଲଫଳ ।।

---

ଧ୍ରୁବପଦା (ଆଳାପ ପ୍ରକାର)
ରାଗ-ପଞ୍ଚମ, ତାଳ-କୁଡୁକ (ଚୌତାଳତୁଲ୍ୟ)
ସ୍ଥାୟୀ

ହେମନ୍ତ ଋତୁ ଉଜ୍ଜ୍ୱଳ ପ୍ରବେଶ ଧରଣୀତଳ ।
ହିମପାତ ଅବିରଳ ସଚଳ ଜୀବସକଳ ।।

### ଅନ୍ତରା

ଶସ୍ୟ ଆହରଣ କାଳ ପ୍ରଫୁଲ୍ଲ କୃଷକକୁଳ ।
ଆନନ୍ଦେ ଆମୋଦମଦେ ବିହରେ ସଦାଚଞ୍ଚଳ ।।

---

## ଧ୍ରୁବପଦା (ଆଳାପ ପ୍ରକାର)

### ରାଗ- ଶୋକବରାଡ଼ି, ତାଳ- କୁଡୁକ (ଚୌତାଳତୁଲ୍ୟ)

### ସ୍ଥାୟୀ

ଶିଶିର ଋତୁ ପ୍ରବେଶ ପ୍ରବଳ ଶୀତ ବିଶେଷ ।
ତୁଷାରପାତ ଅଶେଷ କୁହେଳିକା ଦଶଦିଶ ।।

### ଅନ୍ତରା

କଳବଳ ଜୀବକୁଳ କମ୍ପପରିତ କଂକାଳ ।
ସମଳ ସଦାକମଳ ଅନଳସେବା ବହୁଳ ।।

---

## ଧ୍ରୁବପଦା (ଆଳାପ ପ୍ରକାର)

### ରାଗ-କର୍ଣ୍ଣାଟ, ତାଳ-କୁଡୁକ (ଚୌତାଳତୁଲ୍ୟ)

### ସ୍ଥାୟୀ

ସପ୍ତସ୍ୱର ଭେଦଭାବ ଲାଭେ ଗୁରୁପାଦ ସେବା ।
ନିୟତ ସତତଚିନ୍ତ ଆୟତ୍ତ ଗତ କିଞ୍ଚିତ ।।

### ଅନ୍ତରା

ସୁଧୀ ଗୁରୁ ଉପଦେଶ ମନଧ୍ୟାନେ ସୁଅଭ୍ୟାସ ।
ପ୍ରକାଶନେ ଗୁଣିଗଣ୍ୟ ପରାପତ ଲୋକମାନ୍ୟ ।।

## ଧ୍ରୁବପଦା (ଆଳାପ ପ୍ରକାର)
## ରାଗ-ଭୈରବ, ତାଳ-କୁଡୁକ (ଚୌତାଳତୁଲ୍ୟ)

### ସ୍ଥାୟୀ

ଦୁର୍ଗେ ଦୁର୍ଗତିନାଶିନୀ ଧରାଭରା-ନିବାରଣୀ।
ଭବ କଳୁଷ ହାରିଣୀ ଗତିମୁକତିଦାୟିନୀ।।

### ଅନ୍ତରା

ଦୁଃସହ ଦୁଃଖ ଦମନୀ ସଜ୍ଜନ- ପରିପାଳିନୀ।
ବିନାଶ ଦୈନ୍ୟ ଜନନୀ ଜନନୀ ସିଂହବାହିନୀ।।

---

## ଧ୍ରୁବପଦ (ଆଳାପ ପ୍ରକାର)
## ରାଗ-ୟମନ, ତାଳ-କୁଡ଼କ (ଚୌତାଳତୁଲ୍ୟ)

### ସ୍ଥାୟୀ

ବନ୍ଦେ ଭାରତ-ଜନନୀ ହିମଗିରି କିରୀଟିନୀ।
ଜଗତ-ଜନ-ବନ୍ଦିନୀ ବସୁନ୍ଧରା ବରଦାନି।।

### ଅନ୍ତରା

ବେନି ପାରୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁନଦୀ।
ଚରଣ କ୍ଷାଳେ ବାରିଧି ମହାନନ୍ଦେ ନିରବଧି।।

### ସଂଚାରୀ

ପଞ୍ଜାବ ପ୍ରାଗ କାଶ୍ମୀର ଉତ୍କଳ ବଙ୍ଗ ବିହାର।
ଆନ୍ଧ୍ର ଦ୍ରାବିଡ ସୌରାଷ୍ଟ୍ର ଗୁଜରାଟ ମହାରାଷ୍ଟ୍ର ଆଭୋଗ
ସିନ୍ଧୁ ନେପାଳ ସିକିମ ଭୁଟାନ ନାଗା ଆସାମ।
ରାଜସ୍ଥାନ ଅଙ୍କେମାନ ବଳଦେବ ବନ୍ଦେ ଗାନ।।

------

### ରାଗ-ବସନ୍ତ, ତାଳ-ଝାମ୍ପା

**ସ୍ଥାୟୀ**

ସୁନ୍ଦର ଋତୁରାଜ ବସନ୍ତବର ଆଜ।
ଆଗତ ଜଗତଜନ ଆନନ୍ଦ ନିଶିଦିନ॥

**ଅନ୍ତରା**

ଉପବନ ପ୍ରଫୁଲ୍ଲ ସକଳ ବନଫୁଲ।
ଆଗତ ଜଗତଜନ କୁହୁରାବେ କୋକିଳ॥

---

### ରାଗ-ମେଘମହ୍ଲାର, ତାଳ-ଝମ୍ପା

**ସ୍ଥାୟୀ**

ଗମ୍ଭୀର ଗର୍ଜ୍ଜନେ ବାରିଦ ବରଷେ।
ଦାମିନୀ ଦମକେ ଜୀବନ ତରସେ॥

**ଅନ୍ତରା**

ପବନ ପ୍ରବଳ ବହେ ଅବିରଳ,
ଭୂତଳ ଶୀତଳ ଅତୁଳନ ଜଳ॥

### ରାଗ-କେଦାର, ତାଳ- ଅଡ୍‌ଡ

**ସ୍ଥାୟୀ**

ଆଦି ଅନାଦି ଅନନ୍ତ ଅବିନାଶି।
ତବ ଧ୍ୟାନେ ନିମଗନ ଇନ୍ଦ୍ର ରବି ଶଶୀ॥

### ଅନ୍ତରା

ତବ ନାମ ରଟେ ବେଦ ପରଂବ୍ରହ୍ମରୂପ ଭେଦ।
ନାଶ ପାପ କାମ କ୍ରୋଧ ଭ୍ରାନ୍ତ ଚିତ୍ତ ମନଖେଦ॥

---

## ରାଗ-ବେହାଗ, ତାଳ- ଅଦ୍ଧ

### ସ୍ଥାୟୀ

ଜଗତବନ୍ଦିନୀ ଭୟନିବାରିଣୀ
ତ୍ରିତାପନାଶିନୀ ଦୁର୍ଗେ ଶିବନୀ॥

### ଅନ୍ତରା

ଅସୁରନାଶିନୀ ଦୁରିତହାରିଣୀ।
ଜଗତଜନନୀ ଜୟ ତ୍ରିନୟନୀ

## ରାଗ-ପୂରବୀ ତାଳ ତ୍ରିପୁଟା

### ସ୍ଥାୟୀ

ଦେବଦେବ ଜଗନ୍ନାଥ ଜଗଜ୍ଜୀବ ଜଗତାତ।
ଜଗଦୀଶ ଜଗତ୍ରାସ ନାଶ ଦୀନ ମନପ୍ରାସ॥

### ଅନ୍ତରା

ତୁହି ବ୍ରହ୍ମ ସନାତନ ତବ ଧ୍ୟାନେ ଦେବଗଣ।
ଆଦି ଅନ୍ତ ରୂପ ଜ୍ଞାନ ସଦା ଭଜି ନିଶିଦିନ॥

## ରାଗ-ୟମନ କଲ୍ୟାଣ, ତାଳ ତ୍ରିପୁଟା

### ସ୍ଥାୟୀ

ଗିରୀଶନନ୍ଦିନୀ କଲୁଷନାଶିନୀ।
ନମାମି ଜନନୀ ଜଗତପାଳିନୀ॥

### ଅନ୍ତରା

ସୃଜନକାରିଣୀ ଦୁଷ୍ଟ-ନିବାରିଣୀ।
ମୁକତିଦାୟିନୀ ଦୁରିତହାରିଣୀ ।।

---

### ରାଗ-ତୋଡ଼ିପରଜ, ତାଳ ତ୍ରିପୁଟା

### ସ୍ଥାୟୀ

ପ୍ରବଳ ପ୍ରତାପ ଅସୀମ ଅରୂପ
ଜଗତ ଅଧିପ ବିରାଜ ସମୀପ ।।

### ଅନ୍ତରା

ଚରଣେ ଶରଣ ଅଧମ ତାରଣ।
ଦରିଦ୍ର ଦୂଷଣ କର ବିନାଶନ ।।

---

### ରାଗ-ରାମକେରୀ, ତାଳ-ତ୍ରିପୁଟା

### ସ୍ଥାୟୀ

ତ୍ୟଜ ମନ ଧନ ମନ ଅଭିମାନ।
କାମ କ୍ରୋଧ ଲୋଭ ମୋହ ମାୟାଗଣ ।।

### ଅନ୍ତରା

କାମିନୀ କାଞ୍ଚନ ବାଞ୍ଛାନ ମଜନ
ମୁଞ୍ଚ ଚିନ୍ତ ଘେନ ମୁକତିକାରଣ ।।

----------

## ରାଗ-ଆଶାବରୀ, ତାଳ-ତ୍ରିପୁଟା

**ସ୍ଥାୟୀ**

ଜଗତ ଜଡ଼ିତ ସ୍ୱାରଥ ନିମିର
ଇଚ୍ଛିତ ପ୍ରାପତ ଆଶାୟୀ ସମସ୍ତ ॥

**ଅନ୍ତରା**

ମାତାପିତା ଭ୍ରାତା ମିତ୍ର ସୁତସୁତା
ମାୟା ମୋହରତା ପରସ୍ପର ହନ୍ତା ॥

-------

## ରାଗ-ପଞ୍ଚମବିରାଡି, ତାଳ-ତ୍ରିପୁଟା

**ସ୍ଥାୟୀ**

ଚିତ୍ତରେ ବିରାଜ ଜଗତରାଜ
ବିତର ତେଜ ସରସେ ମଜ ॥

**ଅନ୍ତରା**

ମନ ମନ୍ଦିରେ ପ୍ରବେଶ ଧୀରେ, ।
ଶୁଦ୍ଧ ଅନ୍ତରେ ଅତି ଚତୁରେ ॥

---

## ରାଗ-ସାବେରୀ, ତାଳ-ତ୍ରିପୁଟା

ସ୍ଥାୟୀ

ତୁହି ଦେବ ମହାଦେବ ତୁହି ଜଗତକାରଣ ।
ତୁହି ବ୍ରହ୍ମ ସନାତନ ତୁହିଁ ମାରଣ ତାରଣ ॥

**ଅନ୍ତରା**

ତୁହିଁ ଜ୍ଞାନ ତୁହିଁ ଧ୍ୟାନ ତୁହି ମାନ ଅପମାନ ।
ତୁହିଁ ଭରଣ ପୋଷଣ ତୁହି ଜୀବନରକ୍ଷଣ ॥

----------

ରାଗ-ଭୈରବୀ, ତାଳ--ତ୍ରିପୁଟା

**ସ୍ଥାୟୀ**

ତାନ ମାନ ଗାନ ପ୍ରାଣଦାତା ଜାଣ ।
ଧ୍ୟାନ ଦାନ ମାନ ସାଧନ କାରଣ ॥

ଅନ୍ତରା

ସଦା ଭାଷା ଗାନ ଜ୍ଞାନ ସାଧାରଣ ।
ଖାରା ଗାନକାର ମାରଣ ତାରଣ ॥

------

ରାଗ-ବଙ୍ଗଳାଶ୍ରୀ, ତାଳ-ଯତି

ସ୍ଥାୟୀ

ଚିତ୍ତ ବିରସ କର ସରସ ।
ସଦା ହରଷ ସୁଧା ବରଷ ॥

ଅନ୍ତରା

ତ୍ୟଜ ବିଳାସ ନାଶ ଅଳସ ।
ବିକାଶ ଯଶ ମନ ସାହସ ।

-------

## ରାଗ-ବସନ୍ତ, ତାଳ- ଅଟ୍ଟ ୧୪ ମାତ୍ରା
(ଧମାର ତୁଲ୍ୟ)

### ସ୍ଥାୟୀ

ଆଗତ ବସନ୍ତ ଆନନ୍ଦ ସତତ ।
ଜଗନରନାରୀ ସରବେ ମୋହିତ ॥

### ଅନ୍ତରା

ରଙ୍ଗେ ରଙ୍ଗ ଭରି ମାରେ ପିଚକାରୀ
କୁଙ୍କୁମ କେଶର କର୍ପୂର ସଂଯୁତ ॥

---------

## ରାଗ-ବସନ୍ତ, ତାଳ-ମଂଠ ୧୦ ମାତ୍ରା
(ଶୂଳତାଳ ତୁଲ୍ୟ)

ବସନ୍ତ ଋତୁ ସୁନ୍ଦର ବିରାଜେ ଅତି ରୁଚିର ।
କୋଇଲି କୁହୁକସ୍ୱର ବାଜେ ଶ୍ରବଣ କୁହର ।

### ଅନ୍ତରା

ପ୍ରଫୁଲ୍ଲିତ ବନ ଘନ ବକୁଳ ଚମ୍ପା ଚନ୍ଦନ ।
ସୁଗନ୍ଧ ବହେ ଅନିଳ ଅଳିକୁଳ ସମାକୁଳ ।

-----------

## ଧ୍ରୁବପଦା (କନ୍ଥନା ପ୍ରକାର)
## ରାଗ-କର୍ଣ୍ଣାଟ, ତାଳ-ଆଦି ୧୬ ମାତ୍ରା

### ସ୍ଥାୟୀ

ମୋହମାୟାଜାଲ ଖୋଲ ରେ ନର ।
କାମ କ୍ରୋଧ ଲୋଭ ଛାଳ ରେ ନର ॥

### ଅନ୍ତରା

ଧନ ଗଉରବ ତ୍ୟଜ ସରବ।
ମଧୁର ବଚନେ ମନ ତୋଷ ରେ ନର।

-----------

## ଧ୍ରୁବପଦା (କଞ୍ଚନା ପ୍ରକାର)

### ରାଗ-କେଦାର, ତାଳ-ଆଦି ୧୬ ମାତ୍ରା

### ସ୍ଥାୟୀ

ରାଜରାଜେଶ୍ୱର ଜଗତ-ଈଶ୍ୱର।
ଇଷିତେ ନିବାର ଦୁଃଖ ଦୁର୍ନିବାର।

### ଅନ୍ତରା

ସଂସାର ଅସାର ଆଶାର ସଞ୍ଚାର।
ସରବ ଅନ୍ତର କର ନିରନ୍ତର।

-----------

## ଧ୍ରୁବପଦା-(କଞ୍ଚନା ପ୍ରକାର)

### ରାଗ-ଧନାଶ୍ରୀ, ତାଳ-ଆଦି ୧୪ ମାତ୍ରା (ସରିମାନ)

### (ଝୁମରା ତୁଲ୍ୟ)

### ସ୍ଥାୟୀ

ଗରିଜାନନ୍ଦନ ସୁନ୍ଦର ବରନ।
ରୂପ ଷଡାନନ ମୟୂରବାହନ।

### ଅନ୍ତରା

ମୁକୁଟ ମସ୍ତକ ଶ୍ରୁମଣ ତାଟଙ୍କ ।
ଜ୍ୟୋତି ଝକ ଝକ ନିନ୍ଦିତ ଶଶାଙ୍କ ।

------------

## ଧ୍ରୁବପଦା (କଳ୍ପନା ପ୍ରକାର)

ରାଗ-କେଦାର, ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ମିଥ୍ୟା କଥା ମୁଖେ ବୋଲବାରେ ନର ।
ସଦା ସତ୍ୟପଥେ ଚାଲ ନିରନ୍ତର ।

### ଅନ୍ତରା

ବଞ୍ଚନା ଭର୍ସନା ଗଂଞ୍ଜନା ଯାତନା ।
ପରିହରି ରତ ନିୟତ ରେ ନର ।

-----------

## ଧ୍ରୁବପଦା (କଳ୍ପନା ପ୍ରକାର)

ରାଗ-ବସନ୍ତ, ତାଳ-ନିଶାରୁ ୧୪ ମାତ୍ରା

('ଆଡା ଚୈତାଳତୁଲ୍ୟ)

### ସ୍ଥାୟୀ

ଉଦିତ ବସନ୍ତ ମୁଦିତ ଜଗତ ।
ବନ ପଲ୍ଲବିତ ଫୁଲ ପ୍ରଫୁଲ୍ଲିତ ।

### ଅନ୍ତରା

ମଳୟ ଅନିଳ        ତରଳ ଚଞ୍ଚଳ ।
ମନ୍ଦ ମନ୍ଦ ମଧୁ        ଗନ୍ଧ ନିରିମଳ ।

------------

## ଧ୍ରୁବପଦା (କଳ୍ପନା ପ୍ରକାର)

### ରାଗ-ଜୟଜୟନ୍ତୀ, ତାଳ-ଅଟ୍ଟ ୧୨ ମାତ୍ରା
### (ଏକତାଳ ତୁଲ୍ୟ)

### ସ୍ଥାୟୀ

ବିପନ ବାରଣ        ବିପନ୍ନ ତାରଣ ।
ଦାରୁଣ କଷଣ        ହରଣ ଶରଣ ।

### ଅନ୍ତରା

ତାପ ବିନାଶନ        ପାପ ନିବାରଣ ।
ଶରଣ ରକ୍ଷଣ        ଚରଣେ ଶରଣ ।

------------

## ଧ୍ରୁବପଦା-(କଳ୍ପନା ପ୍ରକାର)

### ରାଗ-କଲ୍ୟାଣ, ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ଯଉବନମଦେ ମାତି        ନାଶ ନ କର ଜୀବନ ।
ସଂଯତ ପ୍ରାପତ କୃତେ        କର ମନେ ସଦା ଧ୍ୟାନ ।

### ଅନ୍ତରା

ଆହାର ବିହାର ମିତ　　ରଖ ମନ ଶୁଦ୍ଧ ପୂତ ।
ଉନମତ କର ତ୍ୟକ୍ତ　　ବିରାଜିତ ଚିରପ୍ରାଣ ।

-----------

## ଧ୍ରୁବପଦା (କଳ୍ପନା ପ୍ରକାର)

### ରାଗ-ୟମନ, ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ମୁରଲି ବାଜେ ରେ ଧୀରେ ।
ମୋହିତ ଜଗତ ସୁରେ　　ଚମକିତ ସୁରନରେ ।

### ଅନ୍ତରା

ଗଗନେ ଚନ୍ଦ୍ର ତପନ　　ଜଳେ ଜଳଚରଗଣ ।
ଭ୍ରମେ ଭ୍ରମଣ ବିପନ୍ନ　　ଉଲ୍ଲାସ ବିଳାସ କ୍ଷୀଣ ।

-------------

## ଚିତ୍ରପଦା

### ରାଗ-ଖମ୍ବାଜ; ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ଚଞ୍ଚଳ ଚିତ୍ତ ଚକିତ　　ଚମକେ ଚଞ୍ଚଳାବତ ।
ଚରମ ଚାରୁ ଚରତ　　ଚିଦାନନ୍ଦଚରଚତ ।

### ଅନ୍ତରା

ଚତୁର ଚେତନା ଚାଲ　　ଚାଲନେ ସଦା ସଚଳ ।
ଚିର ଚମକିତ ଚିତ୍ର　　ଚତୁର୍ଦ୍ଦିଗ ଚକାଶିତ ।

-----------

## ଚିତ୍ରପଦା

### ରାଗ-କାଫି, ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ଅମଳ କମଳ        ଲୋଚନ ରୋଚନ।
ଦୂଷଣ ବାରଣ        ଦୁଃଖ ବିନୋଦନ।

### ଅନ୍ତରା

ପାପ ତାପହର        ଚିତ୍ତ ମନୋହର।
ଦୁର୍ଜନ ମାରଣ        ସଜ୍ଜନ ତାରଣ।

-----------

## ଚିତ୍ରକଳା

### ରାଗ-ପଞ୍ଚମ, ତାଳ-ତ୍ରିପୁଟା

ଆସୀମ ଅରୂପ ଦେବ        ଜୀବକୁଳଧବ ଶିବ।
ନିୟତ ସନ୍ତତ ସେବ        ନିତ୍ୟ ସତ୍ୟ ମହାଦେବ।

ଆକୁଳ ବାତୁଳ ଦଳ
ସକଳ ବିକଳ କାଳ ଦଳିତ କଳିତ ବଳ। ଧ୍ରୁ।
ବିପଦ ଖେଦ ବିଭେଦ        ଭେଦନେ ଦକ୍ଷ ପ୍ରଭେଦ।
ଅଶେଷ ବିଶେଷ ବିଦ        ବିଧିବିଧାନ ନିବଦ୍ଧ ?

-----------

## ତ୍ରିଭଙ୍ଗୀ ପ୍ରବନ୍ଧ

### ୨ୟ ପ୍ରକାର ୩ ଗୋଟି ବୃତ୍ତ ସହିତ

### ରାଗ-ଧନାଶ୍ରୀ, ତାଳ-ଆଦି ୧୬ ମାତ୍ରା (ତ୍ରିତାଳ)

### ସ୍ଥାୟୀ

ଦେର ଦେର ଦେରଦୋ ନା ନା ନା ତୋମ ତାନା
ଦେରେ ନାଦାନି ତୋମ୍ ତା ନା ଦେରେ ଦାନି ।।

### ଅନ୍ତରା

ଶ୍ରୀଗୁରୁପଦେ ମନ ସତତ କର ଧ୍ୟାନ ।
କାମନା କଳ୍ପନା କିଂଚିତ ଅଧୀନ ।
ଧା ଧା କିଟତକ ଧା ଧା ଦା କଟତକ ଧା ।
ଧା ଧା କିଟତକ ତୋମ୍ ଦା ନା ଦେରେ ଦାନି ।

-----------

## ତ୍ରିଭଙ୍ଗୀ ପ୍ରବନ୍ଧ

### ଏହା ପ୍ରଥମ ପ୍ରକାର

### ଏହାକୁ ୩ ଗୋଟି ତାଳରେ ଗାଇବା ଉଚିତ ।

### ରାଗ-କର୍ଣ୍ଣାଟ, ତାଳ-୧ମ-ଆଦିତାଳ, ୨ୟ-ତ୍ରିପୁଟା

### ଏବଂ ୩ୟ ଏକତାଳି-ବା ଦ୍ରୁତ ତ୍ରିତାଳ ।

### ସ୍ଥାୟୀ

ଦେର ଦେର ଦେର ଦେର ଦେରଦା ନା ନଂ ନା
ତୋମ୍ ତାନା ଦେରେ ଦାନି ।

ତା ଦେରେ ତା ଦେରେ ଦାନି ତୋମ୍ ତାନା ଦେରେ ଦାନି ।

ଅନ୍ତରା

ଦୁରିତ ନିବାରଣ ଭବଭୟତାରଣ ।
ଜୟ ଭଗବାନ ଦୀନ ଦୁଃଖାହରଣ ।
ଧା ଧା କିଟତକ ତା ତା କିଟତକ ।
ଧର ଧା ଡିଟତକ ଧା ଦା ଦା କିଟତକ ଧା ।
ଧା ଦା କୟିତକ ତୋମ୍ ଦା ନା ଦେରେ ଦାନି ।।

ଉପରୋକ୍ତ ତ୍ରିଭଙ୍ଗୀ ପ୍ରବନ୍ଧ ଗୀତକୁ ନିର୍ଦ୍ଦିଷ୍ଟ ରାଗ ବ୍ୟତୀତ କୁଶଳ ଗାୟକ ଭାବ ରସ ଓ ସମୟ ଅନୁସାରେ ଅନ୍ୟ ରାଗରେ ଗାଇଲେ ଦୂଷଣୀୟ ହେବ ନାହିଁ ।

— ○ —

# ।। ବାଦ୍ୟ ପ୍ରକରଣମ୍ ।।

ତତଂ ଯେନାବନଦ୍ଧଂ ଚ ଭୁବନଂ ନିଜମାୟୟା ।
ଆନନ୍ଦଘନମଧ୍ୟେ ମିତଂ ବ୍ରହ୍ମ ସୁଷିରେ ହରମ୍ ।। ୧ ।।

(ସଂ. ର.)

ଯେଉଁ କର୍ତ୍ତାରୂପୀ ପରମେଶ୍ୱରଙ୍କ ଦ୍ୱାରା ନିଜ ମାୟାବଶରେ ଏହି ଭୁବନ ବିସ୍ତାରିତ ଓ ବନ୍ଧା ହେଲା, ନିରତିଶୟ ଆନନ୍ଦ ସ୍ୱରୂପ ସେହି ମହାଦେବଙ୍କୁ ହୃଦୟପଙ୍କଜ ରୂପ ବ୍ରହ୍ମରନ୍ଧ୍ରରେ ସ୍ମରଣ କରୁଛି। ଏହି ଶ୍ଳୋକରେ ତତ, ଅବନଦ୍ଧ, ଘନ, ସୁଷିର ଶବ୍ଦମାନଙ୍କ ଦ୍ୱାରା ବାଦ୍ୟଭେଦମାନ ସୂଚିତ ହେଲା।

ଚିତ୍ରା ବାଚଃ ପ୍ରବର୍ତ୍ତନ୍ତେ ଧାତୁବୃତ୍ତିବିଚିତ୍ରତାଃ ।
ଯତସ୍ତଂ ନୌମି ବିସ୍ତାରତତ୍ତୌଘାନଗତଂ ଶିବମ୍ ।। ୨ ।।

(ସଂ. ର.)

(କ୍ରିୟା) କୃତ୍, ତଦ୍ଧିତ, ସମାସ ବା ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନାବୃତ୍ତିଦ୍ୱାରା ମନୋହର ବାକ୍ୟ ବିବିଧ ପ୍ରକାରରେ ବେଦାଦିରୂପେ ପ୍ରବର୍ତ୍ତେ। ସଂସାର ଉତ୍ପତ୍ତି, ସ୍ଥିତି ଓ ଲୟରୂପୀ ଶିବଙ୍କୁ ମୁଁ ନମସ୍କାର କରୁଛି। ଧାତୁ ଆଦି ଶବ୍ଦଦ୍ୱାରା କୁହାଯିବା ବାଦ୍ୟ ବିଷୟ ସୂଚିତ ହେଉଅଛି।

ଗୀତଂ ଚତୁର୍ବିଧାଦ୍‌ବାଦ୍ୟାଜ୍ଜାୟତେ ଚୋପରଜ୍ୟତେ ।
ମୀୟତେ ଚ ତତୋଽସ୍ମାଭିର୍ବାଦ୍ୟମଦ୍ୟ ନିଗଦ୍ୟତେ ।। ୩ ।।

ତତଂ ସୁଷିରଂ ଚାବନଦ୍ଧଂ ଘନମିତି ସ୍ମୃତମ୍ ।
ଚତୁର୍ଧା ତତ୍ର ପୂର୍ବାଭ୍ୟାଂ ଶ୍ରୁତ୍ୟାଦିଦ୍ୱାରତୋ ଭବେତ୍
ଗୀତଂ ତତୋଽବନଦ୍ଧେନ ରଜ୍ୟତେ ମିୟତେ ଘନାତ୍ ।। ୪ ।।
(ସଂ. ର.)

ଚାରି ପ୍ରକାର ବାଦ୍ୟରୁ ଗୀତ ଜାତ ହୁଏ ଏବଂ ରଞ୍ଜିତ ହୁଏ ଏବଂ ତାହାର ପରିମାଣ ଜଣାଯାଏ । ତେଣୁ ବାଦ୍ୟ କୁହାଯାଉଅଛି । ତାହା ତତ୍, ସୁଷିର, ଅବନଦ୍ଧ ଓ ଘନରୂପରେ ଜଣା । ତେଣୁ ବେଦ ପ୍ରଭୃତିରୁ ଗୀତ ଜାତହୁଏ । ଗୀତ ଅବନଦ୍ଧ ଦ୍ୱାରା ଗୀତ ଅନୁରଞ୍ଜନ ହୁଏ; ଅର୍ଥାତ୍ ନାଦସାମ୍ୟରେ ଘନଦ୍ୱାରା ଅତିଶୟ ଅନୁରଞ୍ଜନ ଯୁକ୍ତ ହୁଏ । ଘନବାଦ୍ୟସ୍ୱରୂପ, ଲଘୁକ୍ରିୟାଦ୍ୱାରା ସୁନ୍ଦର ଶୋଭାପାଏ । ଏପରି ଚତୁର୍ବିଧ ବାଦ୍ୟମାନଙ୍କର ଗୀତ ଭ୍ରମକାରକ ବୋଲ ଜାଣିବ । ପୁନଶ୍ଚ ଶ୍ରୁତ୍ୟାଦିଦ୍ୱାରା-ଶ୍ରୁତି ସ୍ୱର, ମୂର୍ଚ୍ଛନା କ୍ରମ, ତାନ, ଅଳଙ୍କାର, ଜାତି ଓ ଗୀତ ଗୃହୀତ ହୋଇଛନ୍ତି ।

ତତାଦୀନାଂ ସାମାନ୍ୟଲକ୍ଷଣମାହ

ବାଦ୍ୟତନ୍ତ୍ରୀ ତତଂ ବାଦ୍ୟଂ ସୁଷିରଂ ସୁଷିରଂ ମତମ୍ ।
ଚର୍ମାବନଦ୍ଧ ବଦନମବନଦ୍ଧଂ ତୁ ବାଦ୍ୟତେ ।
ଘନୋ ମୂର୍ତ୍ତିସାଭିଘାତାଦ୍‌ବାଦ୍ୟତେ ଯତ୍ର ତଦ୍‌ଘନମ୍ ।। ୫ ।।

ତାର, ତନ୍ତ୍ରରେ ଯେଂ ବଜାହୁଏ ତାହା ତତ, ଯେଉଁଥିରେ ରନ୍ଧ୍ର ଅଛି ଓ ବାୟୁ ଯୋଗେ ଧ୍ୱନି ହୁଏ, ତାହାକୁ ସୁଷିର କହନ୍ତି । ଯାହା ଚମଦ୍ୱାରା ବନ୍ଧା, ତାହାକୁ ଅବନଦ୍ଧ କୁହନ୍ତି ।

ଯାହା ବାଡ଼ିଆ ହୋଇ ବଜାହୁଏ, ସେହି ବାଦ୍ୟମୂର୍ତ୍ତିକୁ ଘନ ବୋଲାଯାଏ ।

ତତ୍ର ତଦ୍‌ଭେଦାନ୍‌ଦର୍ଶୟିତୁମାହ ।

ତତଂ ବୀଣା ଦ୍ୱିଧା ଖ୍ୟାତଂ ଶ୍ରୁତିସ୍ୱରବିବେଚନାତ୍ ।
ତତ୍ର ଶ୍ରୀଶାର୍ଙ୍ଗଦେବେନ ଶ୍ରୁତି ବୀଣୋଦିତା ପୁରା ।।୬ ।।
(ସଂ. ର.)

ଶ୍ରୁତି ସ୍ୱର-ବିଚାରରୁ, ତାହା ଦ୍ୱିବିଧ ତତ ଓ ବୀଣା । ଶାର୍ଙ୍ଗଦେବଙ୍କଦ୍ୱାରା ପ୍ରଥମତଃ ଶ୍ରୁତିବୀଣା କଥିତ ହୋଇଅଛି ।

ବକ୍ଷ୍ୟତେ ସ୍ୱରବୀଣାଽତ୍ର ତସ୍ୟାମପି ବିଚକ୍ଷଣାଃ ।
ଅଙ୍କିତ୍ୱା ସ୍ୱରଦେଶାନାଂ ରାଗାନୁବିନ୍ଦତେ ଶ୍ରୁତେଃ ।। ୭ ।।
(ସଂ. ର.)

ଏଠାରେ ସ୍ୱର ବୀଣା କୁହାଯାଉଅଛି । ସଂଗୀତ ପଣ୍ଡିତମାନେ ସେହି ବୀଣାରେ ମଧ ସ୍ୱରଭାଗର ଦଣ୍ଡାଦିମାନଙ୍କରେ ଷଡ଼୍‌ଜାଦି ସ୍ୱର ପ୍ରଦେଶମାନଙ୍କର ଭାଗମାନଙ୍କୁ ଚାରି ସଂଖ୍ୟାଦି ଆଙ୍କି ସେହି ସେହି ଶ୍ରୁତିମାନଙ୍କର ଅଳ୍ପ ଅଧିକ ଭାବ ଯେପରି ନହୁଏ, ସେପରି ଚିହ୍ନ ଦେବାଦ୍ୱାରା ତୀବ୍ରାଦିଶ୍ରୁତି ଜନ୍ମାନ୍ତି-ଶ୍ରୁତିବୀଣାରେ କିନ୍ତୁ ସ୍ୱରମାନେ ଆପେ ଆପେ ଜନ୍ମନ୍ତି ।

ସଦ୍ୟଃସ୍ୱରବୀଣାଭେଦାନୁଦ୍ଦିଶତି

ତତଭେଦାସ୍ତ୍ୱେକତନ୍ତ୍ରୀ ସ୍ୟାନ୍ନକୁଳସ୍ତୁ ଦ୍ୱିତନ୍ତ୍ରିକା ।
ଚିତ୍ରବୀଣା ବିପଞ୍ଚୀ ଚ ତତଃ ସ୍ୟାନ୍ମତ୍ତକୋକିଳା ।। ୮ ।।

ଆଳାପିନୀ କିଂନରୀ ଚ ପିନାକୀ ସଂଜ୍ଞିତା ପରା ।
ନିଃଶଙ୍କବୀଣେତ୍ୟାଦ୍ୟାଶ୍ଚ ଶାର୍ଙ୍ଗଦେବେନ କୀର୍ତ୍ତିତାଃ ॥ ୯ ॥

(ସଂ-ର)

ସ୍ୱରବୀଣାର ଭେଦମାନ, ଯଥା-ଏକତନ୍ତ୍ରୀ (ଏକତାରା), ନକୁଳ, ତ୍ରିତନ୍ତ୍ରିକା (ତ୍ରିତାରା), ଚିତ୍ରବୀଣା, ବିପଞ୍ଚୀ, ମତ୍ତକୋକିଳା, ଆଳାପିନୀ, କିନ୍ନରୀ, ପିନାକୀ ଓ ନିଃଶଙ୍କବୀଣା ଏବଂ ଅପ୍ରସିଦ୍ଧ ମଧ୍ୟ ଅନ୍ୟ ବୀଣା ସ୍ୱବୁଦ୍ଧିରେ ନିର୍ମାଣ କରି ନିଜ ଇଚ୍ଛାରେ ନାମ କରାଯାଏ ।

ବଂଶଃ ପାବଃ ପାବିକା ଚ ମୂରଲୀ ମଧୁକର୍ଯପି ।
କାହାଳା ତୁଣ୍ଡୁକିନ୍ୟୌଚ ଚୁକ୍କାଶୃଙ୍ଗମତଃ ପରମ୍ ॥ ୧୦ ॥
ଶଂଖାଦୟଶ୍ଚ ବାଦ୍ୟସ୍ୟ ସୁଷିରସ୍ୟ ଭିଦା ମତାଃ ।
ପଟହିମର୍ଦ୍ଦଳଶ୍ଚାଥ ହୁଡୁକା କରଟା ଘଟଃ ॥ ୧୧ ॥
ଘଡ୍ଡସୋ ଢବସୋ ଢକ୍କା କୁଡୁକା କୁଡୁବା ତଥା ।
ରଞ୍ଜା ଡମରୁକୋ ଢକ୍କା ମଣିଡକ୍କା ଚ ଡକ୍କୁଳି ॥ ୧୨ ॥
ସେଲ୍ଲୁକା ଝଲ୍ଲରୀ ଭାଣସ୍ତ୍ରିବଳି ଦୁନ୍ଦୁଭିସ୍ତଥା ।
ଭେରୀ ନିଃଷାଣ ତୁମ୍ବକୌ ଭେଦାସ୍ତ୍ୟରବନଦ୍ଧକାଃ ॥ ୧୩ ॥
ତାଳୋଽଥ ତତଃକେସ୍ତା ଶୁକ୍ତି ପଟାଦୟସ୍ତଥା ।
ପ୍ରଭେଦା ଘନବାଦ୍ୟସ୍ୟ ପ୍ରୋକ୍ତାଃ ସୋଢଳସୂନୁନା ॥ ୧୪ ॥

(ସଂ. ର.)

ଧ୍ୱନିର ଭେଦମାନ; ଯଥା-ବଂଶ, ପାବ, ପାବିକା, ମୂରଲୀ, ମଧୁକରୀ, କାହଳା, ତୁଣ୍ଡକିନୀ, ଚୁକ୍କା (ପାଠାନ୍ତର ବୁକ୍କା ତୁକ୍କା, ଢକ୍କା) ଶୃଙ୍ଗ, ଶଙ୍ଖାଦି ଅଟନ୍ତି ।

ଅବନଦ୍ଧଭେଦମାନ, ଯଥା :- ପଟହ, ମର୍ଦ୍ଦଳ, ହୁଡ଼ୁକା, କରଟା, ଘଟ, ଘଡସ, ଢମସ, ଢକ୍‌କା, କୁଡୁକ୍‌କା କୁଡୁବା (କୁଡବାପାଠାନ୍ତର), ଗୁଞ୍ଜା, ଡମରୁ, ଡକ୍‌କା, ମଣ୍ଡିକ୍‌କା, ଡକୁଳୀ, ସେଲ୍ଲୁକା, ଝଲ୍ଲରୀ, କସ୍ତା କ୍ରମା ପାଠାନ୍ତର), ଗୁଞ୍ଜା, ଡମରୁ, ଡକ୍‌କା, ମଣ୍ଡିଡକ୍‌କା, ଡକୁଳୀ, ସେଲ୍ଲୁକା, ଝଲ୍ଲରୀ, ଭାଣଃ, ତ୍ରିବଳୀ, ଦୁନ୍ଦୁଭି, ଭେରୀ, ନିଃସାଣ, ତୁମ୍ବକ୍ୟ ଅଟନ୍ତି।

ଘନବାଦ୍ୟର ଭେଦମାନ; ଯଥା:-ତାଳ, କାଂସ୍ୟତାଳ ଘଣ୍ଟା କ୍ଷୁଦ୍ର ଘଣ୍ଟିକା, ଜୟଘଣ୍ଟା, କସ୍ତା (କ୍ରମା ପାଠାନ୍ତର), ଶୁକ୍ତି, ପଟ୍ଟା--ସୋଢ଼ଳପୁତ୍ର ସାର୍ଙ୍ଗ ଦେବଙ୍କ ଦ୍ୱାରା କଥିତ।

ତତମାହ

ବିପଞ୍ଚୀ ମହତୀ ଚୈବାଳାବଣୀ ପରିବାଦିନୀ।
ରୌଦ୍ର ସାରଙ୍ଗିକାଚୈବାମୃତ ସ୍ରାବଣିକା ଦଥା।। ୧୫।।
କଚ୍ଛପୀ ଗଜହସ୍ତା ଚୈତ୍ୟାଦ୍ ବା ସ୍ତତ୍ ବିଦାଂ ଗତାଃ।
ଗୁରୁଶିକ୍ଷାକ୍ରମେଣାସାଂ ଘଟନା ପରିକୀର୍ତ୍ତିତାଃ।। ୧୬।।
(ସଂ ମୁକ୍ତାବଳୀ)

ଅର୍ଥ-୧ ବିପଞ୍ଚୀ ଅର୍ଥାତ୍ ବୀଣା; ଏହା ଅନେକ ପ୍ରକାର। ୨ ମହତୀ, ୩ ଆଳାବାଣୀ, ୪ ପରିବାଦିନୀ (ସୀତାର), ୫ ରୌଦ୍ରୀ (ରୁଦ୍ରବାଣୀ), ୬ ସାରଙ୍ଗିକା ବା ସାରଙ୍ଗି ୭, ଅମୃତ ସ୍ରାବିଣୀ, ୮ କଚ୍ଛପିକା (ସୀତାର ବିଶେଷ), ୯ ଗଜହସ୍ତ ପ୍ରଭୃତି।

ପୂର୍ବୋକ୍ତ ବଦ୍ୟମାନଙ୍କରୁ ବର୍ତ୍ତମାନ ପ୍ରଚଳିତ ବାଦ୍ୟମାନଙ୍କର ବିଶେଷ ସରଳ ବ୍ୟାଖ୍ୟା। ଧ୍ୱନ୍ୟାତ୍ମକ ନାଦରୁ ବାଦ୍ୟର ଉତ୍ପତ୍ତି।

ଯାହାଠାରୁ ସେହି ବାଦ୍ୟ ଉତ୍ପନ୍ନ ହୁଏ, ତାହାକୁ ବାଦ୍ୟଯନ୍ତ୍ର କହନ୍ତି। ବାଦ୍ୟଯନ୍ତ୍ର ପ୍ରଧାନତଃ ଚାରି ଶ୍ରେଣୀରେ ବିଭକ୍ତ, ଯଥା:-ତତ, ସୁଷିର ଘନ ଓ ଆନଦ୍ଧ।

ତତ-ତାରଯନ୍ତ୍ରରନାମ (ତ୍ରିତନ୍ତ୍ରୀ ବା ପରିବାଦିନୀ ବୀଣା); ଯଥା:-ବୀଣା, ସିତାର, ସାରଙ୍ଗୀ, ତମ୍ବୁରା ବା ତାନପୁରା ଇତ୍ୟାଦି ଏଗୁଡ଼ିକ ସଂସ୍କୃତ ଶାସ୍ତ୍ରାନୁଯାୟୀ ଯନ୍ତ୍ର। ତାହା ଏ ପର୍ଯ୍ୟନ୍ତ ଚଳୁ ଅଛି। ବେହେଲା ଓ ଏସରାଜ ଯନ୍ତ୍ର ସାରଙ୍ଗୀର ଅନ୍ୟ ରୂପ। ବେହେଲା ରାବଣ ମସ୍ତକ ବା ରାବଣାସ୍ତମ୍ କହନ୍ତି। ଆଉ କେତେପ୍ରକାର ତାର-ଯନ୍ତ୍ର ବିଶେଷତଃ ଭିକାରୀମାନଙ୍କର ଭିକ୍ଷା ମାଗିବାରେ ବ୍ୟବହାର ହୁଏ;-ତବଂଶୀ, ଶଙ୍ଖ, ଶିଙ୍ଗା, ତୁରୀ, ଭେରି ଇତ୍ୟାଦି। ଏହାଛଡା, ଆହୁରି କେତେକ ଅଛି।

ଘନ-=କଂସା, ଲୌହ, ନିର୍ମିତ ଯନ୍ତ୍ର ଓ ଅନ୍ୟପ୍ରକାର ପିଟା ଯନ୍ତ୍ରକୁ କହନ୍ତି ତାହା ଦୁଇ ପ୍ରକାର, ଯେ ଗୀତାଦି ସହିତ ବାଜେ, ଯଥା-ମନ୍ଦିରା, କରତାଳି ଇତ୍ୟାଦି ଏବଂ ଯାହା ଗୀତାଦି ସହିତ ବାଜେ ନାହିଁ; ଯଥା-ଘଣ୍ଟ, ଘଣ୍ଟା ଘଣ୍ଟି ଇତ୍ୟାଦି ଏଗୁଡିକ ବର୍ତ୍ତମାନ ଚଳୁଅଛି।

ଆନଦ୍ଧ-ଯେସବୁ ଯନ୍ତ୍ର ଚର୍ମାଚ୍ଛାଦିତ, ତାହାକୁ ଆନଦ୍ଧ କହନ୍ତି; ଯଥା-ମର୍ଦ୍ଦଳ, ଖୋଳ, ପଖାଉଜ, ମାଦଳ, ଡମ୍ବରୁ, ଡିଣ୍ଡିମ, ଢୋଲ, ତବଲା. ଖଞ୍ଜଣୀ, ନାଗରା ଇତ୍ୟାଦି। ଏଥି ମଧ୍ୟରୁ କେତେଗୁଡିଏ ଅତି ପ୍ରାଚୀନ। ପ୍ରାଚୀନ ଓ ତତ୍‌ପରବର୍ତ୍ତୀ ଏହି ବଦ୍ୟମାନଙ୍କ ମଧ୍ୟରେ କେତେଗୁଡ଼ିକ ଉଚ୍ଚାଙ୍ଗ ଗାନ ବାଦନରେ ବ୍ୟବହୃତ ହୁଏ। ମାଦଳ ଓ ଆଦିମ ଘୋଷଣା କାର୍ଯ୍ୟରେ ଓ

ଯୁଦ୍ଧରେ ବ୍ୟବହୃତ ହୁଏ। ମାଦଳ ଆଦିମ ଜାତୀୟ ଲୋକଙ୍କ ବାଦ୍ୟ। ସ୍ୱରର ସ୍ୱରୂପକୁ ଅକ୍ଷୁର୍ଣ୍ଣରଖିବା ନିମନ୍ତେ କେତେକ ତାରଯନ୍ତ୍ର ଓ ଫୁଙ୍କାଯନ୍ତ୍ର ଗାନ ସହିତ ବ୍ୟବହାର ହୁଏ। ବୀଣା ଓ ସିତାରରେ ଓ ସେହି ଜାତୀୟ ଯନ୍ତ୍ରରେ ରାଗ ଉତ୍କୃଷ୍ଟରୂପେ ଆଳାପ କରାଯାଇପାରେ। ବଂଶୀ ପ୍ରଭୃତି ଯନ୍ତ୍ରରେ କ୍ଷୁଦ୍ର ରାଗ ବ୍ୟତୀତ ଗମକ, ମୂର୍ଚ୍ଛନାଯୁକ୍ତ ବୃହତ୍ ରାଗ ସୁନ୍ଦରରୂପେ ପ୍ରକାଶ ପାଏ ନାହିଁ। ଘନ ଏବଂ ଆନଦ୍ଧ କେବଳ ଗାଇବା ସହିତ ତାଳ। ଆଳାପର ବିଶେଷ କିଛି ଛନ୍ଦ ନାହିଁ; ତେଣୁ ଆଳାପରେ ଲୟ ଛଡା ତାଳର ବ୍ୟବହାର ଦେଖାଯାଏ ନାହିଁ। କେହି କେହି ତାଳକୁ ଅନୁସରଣ କରି ଆଳାପ ଦେଖାଇଥାଆନ୍ତି; ମାତ୍ର ତାହା ଉତ୍କୃଷ୍ଟ କି ମୌଳିକ ନୁହେଁ।

ଛନ୍ଦକୁ ତାଳ ଅନୁସରଣ କରେ ପୁଣି ଛନ୍ଦକୁ ଠିକ୍ ରଖିବା ନିମନ୍ତେ ତାଳର ପ୍ରୟୋଜନ ହୁଏ। ଆହୁରି ମଧ୍ୟ ଯେକୌଣସି ଛନ୍ଦକୁ ତାଳରେ କୁଶଳ ଗାୟକମାନେ ଗାଇପାରନ୍ତି; କିନ୍ତୁ ନିର୍ଦ୍ଦିଷ୍ଟ ଛନ୍ଦ ଓ ତାଳରେ ଲେଖାଯାଇଥିବା ଗୀତକୁ ନିୟମାନୁସାରେ ଅର୍ଥାତ୍ ନରୂପିତଭାବରେ ଗାଇଲେ ତାହା ଅତି ସୁନ୍ଦର ହୁଏ। ଏହି ବାଦ୍ୟ-ପ୍ରକରଣରେ କେବଳ ଆନଦ୍ଧ ବାଦ୍ୟର ତାଳମାନଙ୍କର ସ୍ଥାୟୀ ବା ଠିକ୍ ତାଳାକ୍ଷର ସହିତ ଉକୁଟ ଲେଖାଗଲା। ତାହା ସମସ୍ତ ଆନଦ୍ଧ-ଯନ୍ତ୍ରରେ ବାଜିବ। ବିଶେଷତଃ ସଭ୍ୟ ଶିକ୍ଷିତ ସମାଜରେ ନିରୂପିତ ଶାସ୍ତ୍ର-ନିୟମ ଅନୁସାରେ ମର୍ଦ୍ଦଳ ଓ ଖଣ୍ଡ ମର୍ଦ୍ଦଳ ବା ତୁବିତାବଲାରେ ବାଜିବ। ଅନ୍ୟପ୍ରକାର ମର୍ଦ୍ଦଳ ଜାତୀୟ ବାଦ୍ୟରେ ବାଜିବ, ଯେଉଁଗୁଡିକ ଅତି ମୌଳିକଭାବେ ଅର୍ଥାତ୍ ବିଳମ୍ବିତ, ମଧ୍ୟ ଓ ଦ୍ରୁତ ଲୟ ଅନୁକ୍ରମେ ବାଦନ ହେବ, ତାହା ଅତି

ଉଚ୍ଚଜାତୀୟ ଅଟେ, ଯାହାଦ୍ୱାରା ଆଧ୍ୟାତ୍ମିକ ଶକ୍ତି ବୃଦ୍ଧି ପାଏ ଓ ମାଧୁର୍ଯ୍ୟ ଗାମ୍ଭୀର୍ଯ୍ୟ ସ୍ତମ୍ଭନ,ବଶୀକରଣକୁ କରାଏ। ତାହା କେବଳ ମର୍ଦ୍ଦଳଦ୍ୱାରା ସମ୍ପନ୍ନ ହୋଇଥାଏ। ଖଣ୍ଡ ମର୍ଦ୍ଦଳରେ ସେପରି ସୁନ୍ଦର ହୋଇପାରେ ନାହିଁ; କାମ ଚଳାଇବା ମାତ୍ର ହୋଇଥାଏ। ମର୍ଦ୍ଦଳବାଦ୍ୟ ଗାନ ଅପେକ୍ଷା ତବଲା ବାଦ୍ୟର ଗାନ ଅପେକ୍ଷାକୃତ ଲଘୁ ଓ କାମାଚାର ଜାତୀୟ ଅଟେ।

ଓଡ଼ିଶା ପ୍ରଚଳିତ ତାଳ

ଆଦିର୍ଯତିର୍ନିଃସାରକୋ ମଣ୍ଠୋ ଝମ୍ପକ ରୂପକୌ।
ତ୍ରିପଟା ଚୈକତାଳୀ ଚ ଅଡ଼ ଇତି ନବତାଳାଃ ॥ ୧୭ ॥
(ଗୀତ ପ୍ରକାଶ)

ଆଦିର୍ଯତିର୍ନିସାରୁଣ୍ଡାଡ଼ ତାଳସ୍ତ୍ରିପୁଟସ୍ତଥା।
ରୂପକୋ ଝମ୍ପକୋ ମଣ୍ଠ ଏକତାଳୀ ପ୍ରକୀର୍ତ୍ତିତା ॥ ୧୮ ॥
ଏଭିସ୍ତୁବଭିସ୍ତାଳୈଃ କଳ୍ପିତଃ ସୂଡ ଉଚ୍ୟତେ।
ଏତେମୁଖ୍ୟାହି ବିଖ୍ୟାତାଃ ପ୍ରବନ୍ଧାଙ୍ଗତୟା ପୁନଃ।
ଏକୋଉରଣତସ୍ତାଳାସ୍ତେପି ବାଦ୍ୟୋଃ କ୍ରମାଦିହ ॥ ୧୯ ॥
(ଭରତଙ୍କ ମତ, ସଙ୍ଗୀତମୁକ୍ତାବଳୀରେ ଉଦ୍ଧୃତ)

୧-ଆଦି, ୨-ଯତି, ୩-ନିସାରୁ, ୪-ଅଡ଼ତାଳ, ୫-ତ୍ରିପୁଟା, ୬- ରୂପକ, ୭- ଝମ୍ପକ, ବା ଝମ୍ପା, ୮-ମଣ୍ଠ, ୯-ଏକତାଳ-ଏହି ତାଳମାନଙ୍କରେ ସୂଡ ଗାନ କଳ୍ପିତ। ଏହା ଭରତମୁନି କହିଅଛନ୍ତି। ଏହି ତାଳମାନ ଓଡ଼ିଶାରେ ପ୍ରଚଳିତ। ଓଡ଼ିଶାର କୃଷ୍ଣଦାସରଚିତ 'ଗୀତପ୍ରକାଶ' ଓ ହରିଚନ୍ଦ ରଚିତ 'ସଂଗୀତ ମୁକ୍ତାବଳୀ' ପ୍ରଭୃତିରେ ଏହା ଲିଖିତ। ବର୍ତ୍ତମାନ ସେହି ତାଳମଧ ପ୍ରଚଳିତ। ଯେପରିଭାବେ

**ପ୍ରଚଳିତ ଓ ବ୍ୟବହୃତ ହେଉଅଛି ତହିଁର ମାତ୍ରା ସହିତ ବାଦ୍ୟାକ୍ଷର** ତାଳଶବ୍ଦ ବା ଉଦ୍ଧୃଟ ବା ପାଟ ପ୍ରଚଳିତ ମାତ୍ରା ନିୟମ ଅନୁସାରେ ସରଳ ସୁବୋଧଭାବେ ବାଦ୍ୟରେ ବଜାଇବାକୁ ଲେଖାଗଲା। ଏହି ଉଦ୍ଧୃଟ କେବଳ ପ୍ରତ୍ୟେକ ତାଳର ସ୍ଥାୟୀ ବା ଠିକ୍ ମୂଳବାଦ୍ୟ ଅଟେ। ତାଳ ସମ୍ବନ୍ଧ ଯାବତୀୟ ତତ୍ତ୍ୱ ଓ ବିସ୍ତାର ପ୍ରସ୍ତାର ବାଦ୍ୟମାନ ସ୍ୱତନ୍ତ୍ର ତାଳ-ଗ୍ରନ୍ଥରୁ ସବିଶେଷ ମିଳିପାରିବ। ଏଥିରେ ପ୍ରତ୍ୟେକ ତାଳର ଗାନ ହୋଇପାରିବ। ଏହାଛଡା ଆହୁରି ଏକଶତ ଏକ ଗୋଟି ତାଳ ଅଛି। ତାହା ବର୍ଣ୍ଣନା କରିବା ଏଥିରେ ଆବଶ୍ୟକ ନାହିଁ। ମାତ୍ରା ପରିଚୟ-ଶାସ୍ତ୍ରବର୍ଣ୍ଣିତ ବିଷୟକୁ ଲକ୍ଷ୍ୟ ରଖି ସରଳବୋଧ ନିମନ୍ତେ ସମାନ ସମୟ ଗତିରେ ଯେ କୌଣସି ପ୍ରକାର ଆଘାତ କଲେ ପ୍ରତ୍ୟେକ ଆଘାତକୁ ଏକ ମାତ୍ରାରୂପେ ଗ୍ରହଣ କରାଯିବ।

ଯଥା-ସ ରି ଗ ମ ପ ଧ ନି ସ; ଏଥିରେ ପ୍ରତ୍ୟେକ ସ୍ୱରାକ୍ଷର ଏକମାତ୍ରା ଲେଖାଏଁ ୮ ମାତ୍ରା ଅଟେ। ଏହି ଅନୁସାରେ ମାତ୍ରା ବୁଝାଯିବ। ବହୁ ପୁରା-କାଳରୁ ଭାରତରେ ତଥା ଓଡ଼ିଶାରେ ମର୍ଦ୍ଦଳ-ବାଦ୍ୟ ଚଳିଆସୁଛି। ସେହି ମର୍ଦ୍ଦଳକୁ ଦ୍ୱିଖଣ୍ଡିତ କରିବାଦ୍ୱାରା ତହିଁରୁ ବାୟାଁ ତବଲା, ବା ଡୁବି-ତବଲାର ସୃଷ୍ଟି ହୋଇଅଛଇ। ମର୍ଦ୍ଦଳର ବାଁ ଓ ଡାହାଣ ଉଭୟ ପାଖରେ ଚପେଟାଘାତ ଦ୍ୱାରା ବିଶେଷରେ ବାଦନ ହୁଏ। ବାୟାଁ ତବଲାର ବାୟାଁରେ କରତଳ ଚାପି ରଖି ଅଙ୍ଗୁଳିଦ୍ୱାରା ହାଣିଲା ପରି ଆଘାତଦ୍ୱାରା ଓ ଡାହାଣ ପାଖରେ ବିଶେଷ ଅଙ୍ଗୁଳି ଚାଳନାରେ ଚପେଟାଘାତ କମ୍ କରି ବଜାଯାଏ। ମର୍ଦ୍ଦଳ ବାଦନ ସହିତ ଗାନ ଅପେକ୍ଷାକୃତ ଲଘୁ ଅଟେ। ମର୍ଦ୍ଦଳ ବାଦ୍ୟ ଶାସ୍ତ୍ରୀୟ ଉଚ୍ଚାଙ୍ଗ ଓ ଶୁଦ୍ଧ ରୀତିର ଗାନ ଅତି ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ

ହୁଏ। ତାହା ଆଧ୍ୟାତ୍ମିକ ଭାବୋଦ୍ଦୀପକ। ଏହା ଧର୍ମ, ଅର୍ଥ, କାମମୋକ୍ଷ-ଦାୟକ ହୁଏ, ପ୍ରବୃତ୍ତିରୁ ନିବୃତ୍ତି ମାର୍ଗକୁ ନେଇଯାଏ ଓ ସ୍ତମ୍ଭନ ଓ ବଶୀକରଣ କରାଏ ଏବଂ ଏକାଗ୍ରତା ଓ ସ୍ମରଣଶକ୍ତିକୁ ବୃଦ୍ଧି କରାଏ। ଏତଦ୍‌ବ୍ୟତୀତ ଗାୟନକୁ ଅତି କାମାଚାର ବୋଲି ସଙ୍ଗୀତଦ୍ୱାରା ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି। କାମାଚାର ସଙ୍ଗୀତଦ୍ୱାରା ଧର୍ମ, ଅର୍ଥ, କାମ-ମୋକ୍ଷର ହାନି ଘଟାଏ। ସେହି କମାଚାରରୁ ବାୟାଁ ତବଲାର ସୃଷ୍ଟି ହୋଇଅଛି। ତାହା ମଧ୍ୟ ଉତ୍କଳରେ ଚଳୁଅଛି। ମର୍ଦ୍ଦଳର ଖଣ୍ଡତ୍ୱରୁ ତାହାର ନାମ ଖଣ୍ଡମର୍ଦ୍ଦଳ କହିବା ଉଚିତ।

ଧ୍ୟାନ କୋଟିଗୁଣ ହେଲେ ଲୟ ହୁଏ-ଅର୍ଥାତ୍ ତାଳ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କମ୍ ବେଶି ନ ଥାଇ ଶୃଙ୍ଖଳିତଭାବେ ଚାଲିବା ଗତିକୁ ଲୟ କହନ୍ତି। ତାହା ତିନି ପ୍ରକାର, ଯଥା-ବିଳମ୍ବିତ, ମଧ୍ୟ, ଦ୍ରୁତ। ସେହି ଲୟରୁ ସୀମାବଦ୍ଧ ପରିମାନରୂପ ମାତ୍ରା ଗ୍ରହଣ କରାଯାଇ ତହିଁରୁ ବିଭିନ୍ନ ଛନ୍ଦର ସୃଷ୍ଟି କରାହୋଇଅଛି। ସେହି ଛନ୍ଦମାନଙ୍କ ଅନୁସାରେ ଭିନ୍ନଭିନ୍ନ ତାଳର ଉତ୍ପତ୍ତି ହୋଇଅଛି। ଛନ୍ଦରେ ଯେପରି ୪ପାଦ ଅଛି, ତାଳରେ ମଧ୍ୟ ସେହିପରି ୪ପାଦ ବା ଖଣ୍ଡ ହୁଏ। ଯେଉଁତାଳ ଘାତ-ସମତାକୁ ରକ୍ଷା କରେ ଏବଂ ଯେଉଁଠାରୁ ପ୍ରଥମେ ତାଳ ଆରମ୍ଭ ହୁଏ, ତାହାକୁ ସମ ବା ପ୍ରଥମ ତାଳ କୁହାଯାଏ। ତାଳର ମଧ୍ୟସ୍ଥଳକୁ ବିଷମ ଓ ବିଷମ ଓ ଅନାଘାତର ମଧ୍ୟସ୍ଥଳକୁ ଅତୀତ ଓ ବିଷମ ସମ-ମଧ୍ୟଭାଗକୁ ଅନାଘାତ କହନ୍ତି ଏବଂ ସମ ତାଳାଘାତ ଅନ୍ୟାନ୍ୟ ତାଳାଘାତ ଅପେକ୍ଷା ବିଶେଷ ଜୋର ସହିତ ପଡ଼େ ଏବଂ ଅନାଘାତ ସ୍ଥଳରେ(୦) ଏହିପରି ଦେଖାଇବା ଆବଶ୍ୟକ ନ ଥିଲେ ହେଁ ତାଳମାତ୍ରା ଲୟ ଗତିର ସମତା ରକ୍ଷା ସୁବିଧା

ନିମନ୍ତେ ଲେଖାଯାଇଅଛି। ତାହା ଦୂଷଣୀୟ ନୁହେଁ ଏବଂ ଅଳ୍ପ ମାତ୍ରା ଜାତୀୟ ତାଳମାନଙ୍କରେ କେଉଁଥିରେ ଗୋଟିଏ ଓ କେଉଁଥିରେ ଦୁଇଗୋଟି ତାଳଘାତ ଥାଏ।

ବର୍ତ୍ତମାନ ଉତ୍କଳ ଦେଶରେ ପ୍ରଚଳିତ ଥିବା ତାଳମାନଙ୍କର ନାମ:-

(୧) ଆଦି, (୨) ଯତି, (୩) ନିସାରୁ, (୪) ଆଡତାଳ, (୫) ତ୍ରିପୁଟା, ୯୬) ରୂପକ, (୭) ଝମ୍ପା, (୮) ମଠ, (୯) ଏକତାଳ, (୧୦) ଆଠତାଳ, (୧୧) କୁଡୁକ, (୧୩) ସରିମାନ, (୧୪) ପହପଟ, (୧୫) ଝୁଲା, (୧୬) ପଡ଼ିତାଳ, (୧୭)ଖେମଟା, (୧୮) କହରବା, (୧୯) ତେତୋଳା, (ତ୍ରିତାଳ), (୨୦) ଚୌତାଳ, (୨୧) ଧାମାଭ ପ୍ରଭୃତି ତାଳମାପ ଆଗନ୍ତୁକ ତାଳ ଅଟେ।

## ବାଦ୍ୟାକ୍ଷର ବା ପାଟ

ସଂଗୀତ ରତ୍ନାକର ବାଦ୍ୟାଧ୍ୟାୟ ୮୪୮ ଶ୍ଳୋକରୁ ୮୯୪ ଶ୍ଳୋକ ପର୍ଯ୍ୟନ୍ତ ହସ୍ତପାଟ-ଲକ୍ଷଣରେ ବର୍ଣ୍ଣନା ଅଛି। ତହିଁରୁ ସଂକ୍ଷେପରେ ପ୍ରଧାନ ବାଦ୍ୟାକ୍ଷର ଦିଆଗଲା।

ଯଥା-ଟନ-ଗିନି, ଗିଡି, ଦଗି, କିଟ, ତତ, ଖୃର, ତ ଥୋଂ, ଥୃ-ଙେଂ ନଗ-ତକି-ଧିକି-ଥାରିକି, ଖେ-ଧ୍ ଧ୍ ଗିର। ଦ୍ରାଂ ଦାଂ ଖୁଂ ଖୁଂଦ-କିଟଥୋ, କିଟଝେଁ, ତରଗିଡ୍ ତକିଟ-ରହ। ଦେଅଂ-ଥୋଂ ଗିଂ-ଧି. କିଟ ଇତ୍ୟାଦି।

ଏହି ବାଦ୍ୟାକ୍ଷରମାନଙ୍କ ସଂଯୋଗରେ ଆହୁରି ବହୁତ ବାଦ୍ୟାକ୍ଷର ଲେଖା ଅଛି।

ଓଡ଼ିଶାର ପ୍ରାଚୀନ ସଂଗୀତ, ଗୀତ-ପ୍ରକାଶ ଯାହାକୁ ସଂଗୀତ ନାରାୟଣ ଓ ସଂଗୀତ-ମୁକ୍ତାବଳୀ ଓ ସଂଗୀତ-ସରଣୀ ଗ୍ରନ୍ଥମାନ ଅନୁସରଣ କରିଅଛନ୍ତି, ସେହି ଗୀତ-ପ୍ରକାଶକର୍ତ୍ତା କୃଷ୍ଣଦାସଙ୍କ ବର୍ଣ୍ଣନା ଅନୁସାରେ ଶାର୍ଙ୍ଗଦେବଙ୍କ ସଂଗୀତ ରତ୍ନାକର ବିଷୟ ଉଲ୍ଲେଖ କରିଅଛନ୍ତି । ତହିଁରୁ ଗୀତ ଆକାରରେ ଲେଖାଥିବା ପ୍ରଧାନ ବାଦ୍ୟାକ୍ଷର ଦିଆଗଲା । ଯଥା:-

ଥୋ, ଦିକ୍-ଦାଂ-କିଟ, ଦ୍ରିଂଣ-ଝେଂ ଥାରିକୁ
ଥାରି-ଦିତା-ଧି-ଦିମ୍ କିଟା ଦା କଦିକ୍,ରଟ କଧ, ମଟ
କିଟ୍ ଗିଡ୍ କ୍ରିଟ୍, ଧୋ କା-କୁ ରେନ୍ଦ୍ର ଝେଂ ଦ୍ରାଂ ଦ୍ରିଣଂ
ଧା ଧା ଢଂଣ ତୁତୁକ ତୋ ବିଟ ।

ଏହି ଅକ୍ଷରସଂଯୋଗରେ ବହୁପ୍ରକାର ବିଳମ୍ବିତ, ମଧ ଓ ଦ୍ରୁତ ଲୟ ଅନୁସାରେ ତାଳମାନଙ୍କର ବାଦ୍ୟାକ୍ଷର ରଚନା ସହିତ୍ ବିସ୍ତାର କରି ବଜାଇବା ବିଧି ଅଟେ ।

ଜ୍ଞାନୀ ବାଦକ ତାଳର ମାତ୍ରା ଓ ଆଘାତ ଓ ଅନାଘାତକୁ ସ୍ଥିର ରଖି ନିଜର କଳ୍ପନାଦ୍ୱାରା ବାଦ୍ୟାକ୍ଷର ଯୋଜନା କରି ବଜାଇବା ଦୂଷଣୀୟ ହେବ ନାହିଁ। ମାତ୍ର ପୂର୍ବାବଧି ଚଳୁଥିବା ତାଳମାନଙ୍କ ରଚନା ବାଦ୍ୟାକ୍ଷର ତାଳ ବା ଉକୁଟ ଲେଖାଯାଇଅଛି । ତାହାଦ୍ୱାରା ବାଦ୍ୟର ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇପାରିବ । ତଳଲିଖିତ ମାତ୍ରା ନିର୍ଦ୍ଦେଶଦ୍ୱାରା ଦ୍ରୁତାଦି କଳ୍ପନା

ଅନୁଦ୍ରୁତଶ୍ଚଦ୍ରୁତୋଶ୍ଚୈବ ଲଘୁଗୁରୁରତପରମ୍ ।
ପ୍ଲୁତଶ୍ଚୈବ କ୍ରମେଣୋକ୍ତାଃ ତାଳାଙ୍ଗାନି ତୁ ପଞ୍ଚମା ।। ୨୦ ।।

ଅନୁଦ୍ରୁତ; ଦ୍ରୁତ, ଲଘୁ, ଗୁରୁପ୍ଲୁତ ଏହି କ୍ରମରେ ତାଳର ପାଞ୍ଚ ଗୋଟି ଅଙ୍ଗ ଅଟେ ।

ଏକମାତ୍ରୋ ଲଘୁ ପ୍ରୋକ୍ତୋ ଦ୍ୱିମାତ୍ରୋ ଗୁରୁରୁଚ୍ୟତେ ।
ତ୍ରିମାତ୍ରସ୍ତୁ ପ୍ଲୁତୋ ଜ୍ଞେୟୋ ଦ୍ରୁତଂ ଚାର୍ଦ୍ଧମାତ୍ରକମ୍ ।। ୨୧ ।।

(ଗୀତ-ପ୍ରକାଶ-ଉତ୍କଳ)

ଲଘ୍ୱେକମାତ୍ରଂ ତୁ ଗୁରୁର୍ଦ୍ୱିମାତ୍ରଃ ପ୍ଲୁତସ୍ତ୍ରିମାତ୍ରୋ ଦ୍ରୁତମର୍ଦ୍ଧମାତ୍ରମ୍ ।
ଅନଦ୍ରୁତଂ ସ୍ୟାଦ୍ରୁତକାର୍ଦ୍ଧମାତ୍ରଂ ବିରାମ ଇତ୍ୟସ୍ୟ ଭବେଛ ନାମ ।। ୨୨ ।।

(ସଂ. ମୁକ୍ତାବଳୀ)

| | | | | |
|---|---|---|---|---|
| ଏକମାତ୍ରା | ଲଘୁ | ଅର୍ଥାତ୍ | ୪ | ବିରାମ ମାତ୍ରା |
| ଦୁଇମାତ୍ରା | ଗୁରୁ | ,, | ୮ ,, | |
| ତିନିମାତ୍ରା | ପ୍ଲୁତ | ,, | ୧୨ | ,, |
| ଦ୍ରୁତ ମାତ୍ରା ଲଘୁ ମାତ୍ରାର ଅର୍ଦ୍ଧ | | ,, | ୨ | ,, |
| ମାତ୍ରାର ଚତୁର୍ଥାଂଶ ବା ଦ୍ରୁତର ଅର୍ଦ୍ଧମାତ୍ରା ବିରାମ | | ,, | ୧ | ,, |

**ଭବନ୍ତି ମାତ୍ରାବୃତ୍ତାନି ଗୀତାନି ତ୍ୱଖ୍ୟମକାନ୍ୟପି ।**
**ମାତ୍ରାସ୍ତୁବନ୍ଧଘଣ୍ଡେସ୍ୟୁ ସ୍ତାଳଗାନକ୍ରମୋତ୍‌ଥିତାଃ ।। ୨୧ ।।**
**କୁଦ୍‌ଦୁକାବ୍ୟେକତାଳାନାଂ ଖଣ୍ଡ ଷୋଡଶମାତ୍ରକଃ**
**ଯତି ତ୍ରିପୁଟୟୋଃ ଖଣ୍ଡଃ ସ୍ୟାଚ୍ଚିତୁର୍ଦ୍ଦଶ ମାତ୍ରକଃ ।। ୨୨ ।।**
**ତ୍ରୟାଣାମପି ଭଙ୍ଗ୍ୟର୍ବେ ଯତିରୂପ ବ୍ୟବସ୍ଥିତଃ ।**
**ଦଶାଦେ ବିଂଶତିପ୍ରାନ୍ତ ମାତ୍ରେ। ଝମ୍ପାଦ୍‌ଡତାଳୟୋ ।। ୨୩ ।।**
**ଖଣ୍ଡୋ ଭଙ୍ଗୀତୁ ପଞ୍ଚମ୍ୟାଂ ପଞ୍ଚମ୍ୟାଂ ପରିକୀର୍ତ୍ତିତା ।**
**ମାତ୍ରାୟାଂ ମଣ୍ଠ ନିଃସାରୌ ସ୍ୟାଚ୍ଚତୁର୍ଦ୍ଦଶ ମାତ୍ରକମ୍ ।। ୨୪ ।।**
**ଖଣ୍ଡୋ ଭଙ୍ଗୀଚ୍ ଷଷ୍ଠ୍ୟାଂ ସ୍ୟାଦ୍ଦଶମ୍ୟାମପିକୀର୍ତ୍ତିତା ।**
**ଏକ ଦ୍ୱିମାତ୍ରିକ ନ୍ୟୂନାଃ ସର୍ବେସ୍ୟୁଃ ପ୍ରାନ୍ତଖଣ୍ଡକାଃ ।। ୨୫ ।।**

(ଗୀତପ୍ରକାଶ)

ଗୀତମାନଙ୍କର ମାତ୍ରା ଓ ବୃତ୍ତମାନ ଅସଂଖ୍ୟ-ଅର୍ଥାତ୍ ମାତ୍ରା ଓ ବୃତ୍ତମାନ ଥିବା ଗୀତସବୁ ଅସଂଖ୍ୟ । ତାଳଗାନକ୍ରମରୁ ଜାତ ମାତ୍ରାମାନ ପ୍ରବନ୍ଧ ଖଣ୍ଡରେ ହୁଅନ୍ତି । କୁଡୁକ, ଆଦି, ଏକତାଳୀମାନଙ୍କର ଖଣ୍ଡ ଷୋଳ ହୁଏ । ରୂପକାଦିଙ୍କର ଖଣ୍ଡ ବାର ମାତ୍ରା ହୁଏ । ଏହି ତିନୋଟିର ମଧ୍ୟ ଭଙ୍ଗୀ ଅର୍ଦ୍ଧରେ ଯତିରୂପ ରହେ । ଝମ୍ପା ଓ ଅଡ୍‌ଡତାଳର ଦଶରୁ କୋଡିଏ ମାତ୍ରା ପର୍ଯ୍ୟନ୍ତ ହୁଏ । ପାଞ୍ଚ ମାତ୍ରାରେ ଖଣ୍ଡଭଙ୍ଗୀ ପଞ୍ଚମୀ ବୋଲି କଥିତ । ମାତ୍ରାରେ ମଣ୍ଠ ନିସାରୁ ଚଉଦ ହୁଅନ୍ତି । ଛ ଓ ଦଶରେ ଖଣ୍ଡଭଙ୍ଗୀ କଥିତ । ଏହାର ବ୍ୟବହାର ତାଳମାନଙ୍କରେ ଦେଖାଯାଏ ।

**କଳାନୁସାରେଣ ଯଥା ରଞ୍ଜକମାବୃତ୍ତି କଳ୍ପନୀୟାଃ। ଅତଏବାନ୍ୟୈରପ୍ୟୁକ୍ତମ୍। ତାଳାବୃତ୍ତେଷ୍ୱନିୟମଂ ବଦନ୍ତ୍ୟନ୍ୟେ ବିପଶ୍ଚିତଃ। ଏବଂ ତାଳାନ୍ତରେଷ୍ୱପି ଜ୍ଞେୟମ୍। ଅତ୍ରାଦିତାଳେ ଷୋଡ଼ଶମାତ୍ରକୋଦ୍‌ଗ୍ରାହାତ୍ପର ଚତୁର୍ଦ୍ଦଶମାତ୍ରକଃ ପ୍ରାନ୍ତଖଣ୍ଡଃ। ଇତି ସଂଜ୍ଞାଃ ନ ତୁ ପ୍ରାନ୍ତେ ନିବେଶନୀୟ ଏବ। ଲାଳିତ୍ୟବଶାଦାଦି ମଧ୍ୟାବସନେଷ୍ୱେପି ତ୍ରୟଏବ। ଅଷ୍ଟମ ମାତ୍ରାୟା ଭଂଗୀ।**

(ଗୀତ-ପ୍ରକାଶ)

କଳାନୁସାରେ ଯେପରି ରଞ୍ଜକ ହେବ, ସେହିପରି ଆବୃତ୍ତି କଳ୍ପନା କରିବ। ଅନ୍ୟ ପଣ୍ଡିତମାନେ ତାଳବୃତ୍ତରେ ନିୟମ ନାହିଁ ବୋଲି କହନ୍ତି। ଅନ୍ୟ ତାଳମାନଙ୍କରେ ଜାଣିବ। ଏଠାରେ ଆଦି ତାଳରେ ଷୋଳ ମାତ୍ରା-ଉଦ୍‌ଗ୍ରାହ ପରେ ଶେଷ ଖଣ୍ଡ ଚଉଦ ମାତ୍ରାବିଶିଷ୍ଟ କରଣରୁ ଆଦି, ମଧ୍ୟ ଓ ଶେଷରେ ତିନି ଜାଗାରେ ଆଠ ମାତ୍ରାରେ ଭଙ୍ଗୀ କରାଯାଇଥାଏ।

**ନବତାଳାନାଂ ଧ୍ରୁବମଣ୍ଠାନାଂଭେଦାଃ**

ଅଥୈତେଷ୍ୱପି ତାଳେଷୁ କେଚିଦ୍ ସ୍ୟୁର୍ଦ୍ଧ୍ରୁବଲକ୍ଷଣାଃ
ମଣ୍ଠଲକ୍ଷଣକାଃ କେଚିଦ୍ କେଚିଦ୍ଦୁଭୟଲୟକ୍ଷଣାଃ ॥ ୨୬ ॥
ଧ୍ରୁବାଖେଯୌ ଯତି ନିଃସାରୁ ମଣ୍ଠାନ୍ତୌ ମଣ୍ଠଲକ୍ଷଣୌ।
ଆଦିରୂପକଝମ୍ପାଦ୍ୱତ୍ରିପୁଟାଃ ସ୍ୟୁର୍ଦ୍ଧିଲକ୍ଷଣାଃ ॥ ୨୭ ॥

(ସଂ. ମୁ.)

ଏଥିରେ ଆଦି ପ୍ରଭୃତି ଯେଉଁ ନଅଗୋଟି ତାଳ ବର୍ଣ୍ଣନା କରାଯାଇଅଛି, ସେମାନଙ୍କ ମଧ୍ୟରୁ କେତେକ ଧ୍ରୁବ ଲକ୍ଷଣ, କେତେକ ମଣ୍ଠ ଲକ୍ଷଣ ଓ କେତେକ ଉଭୟ ଲକ୍ଷଣ ହୁଅନ୍ତି।

**ଯଥା-ଯତି ଓ ନିସାରୁ ଧ୍ରୁବ ଲକ୍ଷଣର ତାଳ;**
**ମଣ୍ଠ ଓ ଏକତାଳି ମଣ୍ଠ ଲକ୍ଷଣର ତାଳ;**
**ଆଦି, ରୂପକ-ଝମ୍ପା, ଆଦ୍ଦତ, ତ୍ରିପୁଟା ଉଭୟ ଲକ୍ଷଣର ତାଳ।**
**ଅଥ ଲୟାଶ୍ରିତାଂ ଯତୀ ଲକ୍ଷଣାମାହ**
**ଲୟପ୍ରବୃତ୍ତି ନିୟମୋ ଯତିରିତ୍ୟଭିଧୀୟତେ।**
ସମାସ୍ରୋତୋଗତା ଚାନ୍ୟା ଗୋପୁଚ୍ଛା ତ୍ରିବିଧେତି ସା ।। ୨୮ ।।

ଲୟ ପ୍ରବୃତ୍ତି ନିୟମକୁ ଯତି କୁହାଯାଏ। ତାହା ସମ, ସ୍ରୋତଗର୍ତ ଓ ଗୋପୁଚ୍ଛା ଭେଦରେ ଯତି ତ୍ରିବିଧ।

ଲୟ-ପ୍ରବୃତ୍ତ୍ୟାଦି

ଆଦି ମଧ୍ୟାବସାନେଷୁ ଲୟୈକତ୍ୱେ ସମା ତ୍ରିଧା।
ଲୟତ୍ରୈବିଧ୍ୟାଦି ମଧ୍ୟବସାନେଷୁ ଯଥାକ୍ରମାତ୍ ।। ୨୯ ।।
ଚିର-ମଧ୍ୟ-ଦ୍ରୁତ ଲୟାତଦାଲତୋଗତା ମତା।
ଅନ୍ୟା ବିଲମ୍ବୈଃ ସ୍ୟାଦୋଗପୁଚ୍ଛାଦ୍ରୁତମଧ୍ୟଭାକ୍।
ଦ୍ୱିତୀୟାଽନ୍ୟା ଭବେନ୍ମଧ୍ୟ ବିଳମ୍ବିତଲୟାନ୍ୱିତା ।। ୩୦ ।।
(ସଂ:ର:)

ଆଦି, ମଧ୍ୟ ଓ ଅନ୍ତରେ ଲୟର ଏକତ୍ୱରେ ତିନି ପ୍ରକାର ହୁଏ। ଲୟ ତ୍ରିବିଧ ହେଉଛି ଅଦି, ମଧ୍ୟ ଓ ଅନ୍ତରେ ଯଥାକ୍ରମରେ ହୁଏ। ତାହା ସ୍ଥିର ଅର୍ଥାତ୍ ବିଳମ୍ବିତ, ମଧ୍ୟ ଓ ଦ୍ରୁତ ଲୟଯୁକ୍ତ ସ୍ରୋତଗତିପରି ଦ୍ୱିତୀୟଟି ବିଳମ୍ବ ଓ ମଧ୍ୟଲୟରେ ଯୁକ୍ତ। ଦ୍ରୁତ ମଧ୍ୟ ଓ ବିଳମ୍ବରେ ଗୋପୁଚ୍ଛ ହୁଏ-ସେଥିରେ ଦ୍ରୁତ ଓ ମଧ୍ୟ ଲୟ ହୁଏ। ଗୋପୁଚ୍ଛ ସ୍ରୋତଗତିର ବିପରୀତ ଅର୍ଥରେ ହୁଏ-ମଧ୍ୟ ଓ ବିଳମ୍ବିତ ଲୟ ଯୁକ୍ତ ହୁଏ।

### ଯତିମାହ

**ଲୟପ୍ରବୃତ୍ତିନିୟମୋ ଯତିରିତ୍ୟଭିଧୀୟତେ ।**
**ସମାସ୍ରୋତୋବହା ଗୋପୁଚ୍ଛିକା ଚେତି ତ୍ରିଧାମତା ।। ୩୧ ।।**
**ଆଦିମଧ୍ୟାବସାନେଷୁ କ୍ରମେଣ ଯଚ୍ଚଗୀୟତେ ।**
**ଚିରମଧ୍ୟା ଦ୍ରୁତଲୟାସ୍ତଦାସ୍ରୋତୋ ବହାମତା ।**
**ଲୟୋ ଗୋପୁଚ୍ଛିକା ପ୍ରୋକ୍ତା ଦ୍ରୁତମଧ୍ୟବିଲମ୍ବିତୈଃ ।। ୩୨ ।।**

(ଗୀ.ପ୍ର.)

ଲୟ-ପ୍ରବୃତ୍ତି ନିୟମକୁ ଯତି କୁହାଯାଏ । ତାହା ତିନି ପ୍ରକାର-ସମ, ସ୍ରୋତବହା ଓ ଗୋପୁଚ୍ଛିକା । ଆଦି, ମଧ୍ୟ ଓ ଶେଷରେ କ୍ରମ ରେ ସମଭାବରେ ଗାନ କରାଯାଏ । ସ୍ରୋତବହା-ପ୍ରଥମରେ ବିଳମ୍ବ, ମଧ୍ୟ ଓ ଦ୍ରୁତ, ମଧ୍ୟ ଓ ବିଳମ୍ବରେ ହୁଏ । ଗୋପୁଚ୍ଛା-ଦ୍ରୁତ, ମଧ୍ୟ ଓ ବିଳମ୍ବଲୟରେ ହୁଏ । ଏହା ସ୍ରୋତବିହାର ବିପରୀତ ।

### ଅଥ ଗ୍ରହାନ୍‌ଲକ୍ଷୟତି

**ସମୋଽତୀତୋଽନାଗତଶ୍ଚ ଗ୍ରହସ୍ଥାନେ ତ୍ରିଧାମତଃ -।**
**ଗୀତାଦି ସମକାଳସ୍ତୁ ସମପାଣିଃ ସମଗ୍ରହଃ ।। ୩୩ ।।**

ତାଳରେ ସମ, ଅତୀତ ଓ ଅନାଗତ ତିନି ଗୋଟି ଗ୍ରହ । ଗୀତ,ବାଦ୍ୟ ଓ ନୃତ୍ୟ ତାଳରେ ସମାନ ଗତି ରହିବ ଓ ସମ ତାଳରେ ଗ୍ରହ ହେବ । ଅକ୍ଷର ସହ ମାତ୍ରା ଗତି ସମାନ ରହିବ ।

**ସୋଽବପାଣିରତୀତଃ ସ୍ୟାଦ୍‌ଦ୍ୱୌ ଗୀତାଦୌ ପ୍ରବର୍ତ୍ତତେ ।**
**ଅନାଗତଃ ପ୍ରାକବୃତ୍ତଃ ସଏବୋପରିପାଣିକଃ ।। ୩୪ ।।**

(ସଂ. ର)

ଗୀତ, ବାଦ୍ୟ ଓ ନୃତ୍ୟରେ ଯଦି ଆଗେ ଗୀତାଦିର ଅକ୍ଷର ବୋଲା ପରେ ତାଳ ପକାଇବାକୁ ହେଲେ ଅତୀତ,ଆଗେ ତାଳ ପଡି ପରେ ଗୀତାଦି ହେଲେ ଅନାଗତ ହୁଏ-ଅର୍ଥାତ୍ ଗୀତାଦିର ପ୍ରାରମ୍ଭ କାଳ ନ ହୋଇ ପ୍ରଥମରେ ତାଳପକାଇବାକୁ ଅନାଗତ କହନ୍ତି।

ଲକ୍ଷଣମ୍

**ଦ୍ରୁତୋଽତିଶୀଘ୍ରୋ ମଧ୍ୟସ୍ତୁ ବିଶ୍ରାନ୍ତିର୍ହୀଗୁଣାଂ ତତଃ।**
**ବିଶ୍ରାନ୍ତି ଦ୍ୱିଗୁଣାସ୍ତସ୍ମାଲ୍ଲୟଃ ପ୍ରୋକ୍ତୋ ବିଳମ୍ବିତଃ ।। ୩୬ ।।**

(ଗୀତ ପ୍ରକାଶ)

ଦ୍ରୁତ, ମଧ୍ୟ, ବିଳମ୍ବିତ-ଏହି ତିନି ପ୍ରକାରେ ଲୟ ପ୍ରସିଦ୍ଧ ଅଟେ। ବିଳମ୍ବିତର ଦୁଇ ଗୁଣ ମଧ୍ୟ, ମଧ୍ୟର ଦୁଇ ଗୁଣ ଦ୍ରୁତ ହୁଏ।

ମାନମାହ

ତାଳବିଶ୍ରାମ କାରିତ୍ୱାନ୍ମାନ ତାଳସମାପ୍ତି କୃତ୍।

ତାଳର ବିଶ୍ରାମକୁ ମାନ କହନ୍ତି। ତହିଁରେ ତାଳ ସମାପ୍ତି କରାଯାଏ। ଅର୍ଥାତ୍ ଯାହାକୁ ସଂଗୀତ ପଣ୍ଡିତମାନେ ବର୍ତ୍ତମାନ ଚଳନ ଅନୁସାରେ ତିହାଇ କହନ୍ତି। (ଗୀତପ୍ରକାଶ)

ସଂଗୀତରେ ସଂସ୍କୃତ ମୂଳ ଶାସ୍ତ୍ରମାନଙ୍କ ନିୟମ ଅନୁସାରେ ପ୍ରତ୍ୟେକ ତାଳ ଲଘୁ, ଗୁରୁ, ପ୍ଲୁତ, ଦ୍ରୁତ ବରାମ ନାମ ଅନୁସାରେ ମାତ୍ରାସଂଖ୍ୟା ବ୍ୟବସ୍ଥା ଅଛି। ସେହି ମାତ୍ରାସଂଖ୍ୟା ଅନୁସାରେ ତାଳ ପକାଇବା ବା ଆଘାତ ଦିଆଯାଏ, ମାତ୍ର ସମସ୍ତ ତାଳମାନଙ୍କରେ ମାତ୍ରା ଗତି ସମାନ ଲୟବିଶିଷ୍ଟ ଅଟେ। ସେହି ତାଳମାନଙ୍କୁ ପକାଇ କାର୍ଯ୍ୟରେ ଦେଖାଇବା ସମୟେ ଯେଉଁ ତାଳ ଗୋଟିକ

ବହୁ ମାତ୍ରାଯୁକ୍ତ ଥିବ, ତାହାର ମାତ୍ରାସଂଖ୍ୟା ଓ ଗତିକୁ ଠିକ୍ ରଖିବା ନିମନ୍ତେ ସେହି ତାଳ ମଧ୍ୟରେ ଥିବା ଅନ୍ୟ ତାଳସଂଖ୍ୟା ଓ ଗତିକୁ ସମାନ ରଖି ଅକ୍ଷୁର୍ଣ୍ଣଭାବରେ ଗତି କରିବା ନିମନ୍ତେ ଅଭ୍ୟାସଗତ ଅନୁସାରେ ବହୁ ମାତ୍ରିକ ତାଳରେ ଥିବା ମାତ୍ରା ମଧ୍ୟରେ ଅନାଘାତ ବା ତାଳି ନ ଦେଇ ଖାଲି ବା ଶୂନ୍ୟ ତାଳର ରୂପ ଦେଖାଇ ତାଳ ଠିକ୍ ରଖି ଗାୟନ ବାଦନ କରାଯାଇଥାଏ। ସେହି ଅନୁସାରେ ତାଳ ମଧ୍ୟରେ ଖାଲି ସ୍ଥାନକୁ (୦) ଏହିପରି ଦେଖାଇ ଦିଆଯାଇଅଛି ଏବଂ ତାଳର ଆରମ୍ଭକୁ ସମ କହନ୍ତି। ତାହା(+) ଏହି ଚିହ୍ନରୁ ବୁଝାଯିବ ଏବଂ ତାଳର ଗତି ଅନୁସାରେ ଯେଉଁ ତାଳରେ ଯେତେ ଗୋଟି ତାଳ ବା ଆଘାତ ଦିଆଯିବ, ତାହା ୨, ୩, ୪-ଏହିପରି ଅଙ୍କସଂଖ୍ୟା ଲେଖାଯାଇଅଛି। ବାଦ୍ୟାକ୍ଷର ମଧ୍ୟରେ ଯେଉଁଠାରେ ବାଦ୍ୟାକ୍ଷର ଲେଖା ନ ଥିବ, ସେହିଠାରେ ତାହା ମାତ୍ରାଦ୍ୱାରା କାଳ ପୂରଣ କରିବା ନିମନ୍ତେ (।) ଏହିପରି ଦଣ୍ଡାୟମାନ ରେଖା ଲେଖାଯାଇଅଛି ଏବଂ ଗୋଟିଏ ମାତ୍ରାର ବାଦ୍ୟାକ୍ଷର ସ୍ଥାନରେ ଏକ ବା ତତୋଧିକ ବାଦ୍ୟାକ୍ଷର ଲେଖାଥିଲେ ତାହା ଏକମାତ୍ରାରେ ଗଣ୍ୟ ହେବ। ଏଠାରେ ଉଦାହରଣ ସ୍ୱରୂପ ୧୬ ମାତ୍ରାବିଶିଷ୍ଟ ଆଦିତାଳ ଲେଖାଗଲା। ଏଥିରେ ତିନିଗୋଟି ଆଘାତ ବା ତାଳ ହୁଏ। ଚାରିଗୋଟି ମାତ୍ରା ଲେଖାଏଁ ଦୁଇଗୋଟି ଲେଖାଏଁ ସମାନ ଅନୁସାରେ ୩ଗୋଟି ତାଳକୁ ୧୨ ମାତ୍ରା ଦେଉଅଛି; ଅବଶିଷ୍ଟ ୪ ମାତ୍ରା ଗତି ସମତା ରକ୍ଷା କରିବା ନିମନ୍ତେ ଅନାଘାତ ବା ଖାଲି ଅଭ୍ୟାସ ଅନୁକ୍ରମେ ଦେଖାଇଲେ ତାହା ଦୂଷଣୀୟ ନୁହେଁ। ତାହା ଜ୍ଞାନୀମାନେ ଗ୍ରହଣ କରି କାର୍ଯ୍ୟ ସମାଧାନ କରୁଅଛନ୍ତି।

## ଆଦିତାଳ

+ ୨ ୦ ୩

୧-୨ ୩-୪ ୫-୬ ୭-୮ ୯-୧୦ ୧୧-୧୨ ୧୩-୧୪ ୧୫-୧୬

**ଆଦୌ-ଆଦିତାଳଃ**

**ଯତିଂ ନିଃସାରିକ ମଣ୍ଠାନାଂ ଯଥାକ୍ରମଂ ଗାନଂ ଅନ୍ତେ-ଏକତାଲ୍ୟା ଇତି ନିୟମଃ। ମତାନ୍ତରମାହ- କେଚିଦ୍ କୁଢ଼କକଂ ଉପାଢ଼ଢ଼ଂ ଚାତ୍ର ଭାଷନ୍ତେ ନସର୍ବେ। ଅତ୍ର ସୂଡେ। ଅର୍ଥଃ ଏକାଦଶପଳାତ୍ମକୋ ଭବତି। ଦ୍ୱିତୀୟୋ କୁଢ଼)କୋ ମଣ୍ଠକାକ୍ଷଃ ଉପାଢ଼ଢୋ ମଣ୍ଠଲକ୍ଷଣୋ ଧ୍ରୁବ ଲକ୍ଷଣଶ୍ଚ ।**

**(ଗୀତ ପ୍ରକାଶ)**

ଆଦ୍ୟରେ ଆଦିତାଳରେ ଗାନ ଗାଇବ। ତାପରେ କ୍ରମରେ ଯତି-ନିଃସାରିକ ମଣ୍ଠ ଇତ୍ୟାଦି ଯେପରି କ୍ରମ ଅଛି, ସେହି ପରି କ୍ରମରେ ତାଳମାନଙ୍କର ଗାନ କରିବ, ଶେଷରେ ଏକ ତାଳି ତାଳରେ ଗାନ ଗାଇ ସମାପ୍ତି କରିବା ନିୟମ ଅଟେ। ଏହାକୁ ସୂଡ୍ ଅର୍ଥାତ୍ ସର୍ବାଙ୍ଗସୁନ୍ଦର ସଂପୂର୍ଣ୍ଣ-ଲକ୍ଷଣଯୁକ୍ତ ଗାଇବା ବୋଲି କୁହାଯାଏ। ମତାନ୍ତରେ କେହି କେହି କୁଢ଼ୁକ ଉପାଡ୍ ତାଳକୁ କହନ୍ତି ସେ ତାଳମାନ ଉପରୋକ୍ତ ସୂଡ ନିୟବରେ ନାହିଁ; ତାହା ଏକାଦଶ ତାଳ ଅନ୍ତର୍ଗତ ଅଟେ। ଦ୍ୱିତୀୟ ପ୍ରକାରରେ କୁଡ୍ଡୁକ ଉପାଡ୍ଡ ତାଳମାନଙ୍କରେ ମଣ୍ଠଲକ୍ଷଣ ଧ୍ରୁବଲକ୍ଷଣ ହୁଏ। କିନ୍ତୁ ଉପାଡ୍ଡ ତାଳରେ ଉତ୍କଳରେ ଗୀତ ରଚିତ ହେବାର ଦେଖାଯାଏ ନାହିଁ।

## ଆଦିତାଳ

ଲଘ୍ୱାଦିତାଳୋ ଲୋକେଽସୌ ରାସଃ ଇତ୍ୟାଦିଂ ତାଳଃ ।।

(ସଂ:ର:)

ଲଘୁ ୧କୁ ୪ମାତ୍ରା ହୁଏ। ଏହା ଦ୍ୱିତୀୟ ପ୍ରକାର। ଦ୍ରୁତାଦ୍ ଦ୍ରୁତୌ ବିରାମାନ୍ତୌ ତୃତୀୟ ସ୍ୟାତ୍ ।। ୩୬ ।।
ଦୁଇ ଗୋଟି ଦ୍ରୁତ-ଗୋଟିଏ ଦ୍ରୁତ ୨ ମାତ୍ରା ଲେଖାଏଁ ଚାରି ମାତ୍ରା ସାତ ମାତ୍ରା ହୁଏ। ଏହା ୩ୟ ପକାର।

ଲଘୁଦ୍ୱୟଂ ଦ୍ରୁତଶ୍ଚୈକଃ

ଲଘୁ ୨କୁ ୮ମାତ୍ରା, ଦ୍ରୁତ ଏକକୁ ୨ ମାତ୍ରା, ଏରୂପ ୧୦ ମାତ୍ରା ହୁଏ। ଏହା ଚତୁର୍ଥ ପ୍ରକାର।
ପଞ୍ଚମସ୍ତୁ ଦ୍ରୁତ ଦ୍ୱୟମ୍ ଦ୍ରୁତ ଦୁଇକୁ ୪ମାତ୍ରା ହଚୁ,। ଏହା ପଞ୍ଚମ ପ୍ରକାର।
ଅଷ୍ଟୋତ୍ତର ତାଳ ଅନ୍ତର୍ଗତ ୧ ଲଘୁ ୪ ମାତ୍ରାରେ ଏକ ଗୋଟିଏ ତାଳ ହୁଏ, ହିନ୍ଦୁସ୍ଥାନୀ ପଦ୍ଧତି ଅନୁସାରେ-୧୬ମାତ୍ରାରେ ୩ଟି ତାଳାଘାତ ହୁଏ।

ଦକ୍ଷିଣ-ପଦ୍ଧତି ଅନୁସାରେ ଲଘୁ ୧କୁ ୪ ମାତ୍ରା, ଦ୍ରୁତ ୨ ଗୋଟିକୁ ୪ ମାତ୍ରା ଏରୂପ ମାତ୍ରା ହୁଏ। ଉତ୍କଳ ପ୍ରଚଳିତ କୃଷ୍ଣଦାସଙ୍କ ଗୀତପ୍ରକାଶ ଅନୁସାରେ ଏହା ୧୬ ମାତ୍ରା ଓ ୧୪ ମାତ୍ରା ଓ ୮ ମାତ୍ରା ହୁଏ ଏହାର ସ୍ଥାଇ ପାଇବା ବାଦ୍ୟାକ୍ଷର ସହିତ ତାଳାଘାତ ଲେଖାଗଲା।

ଦୀର୍ଘ ୮ ମାତ୍ରାକୁ-୧୬ ମାତ୍ରାବିଶିଷ୍ଟ ଆଦିତାଳ ଏଥିରେ ଉକ୍ତ ପ୍ରକାର ଗୁରୁଲଘୁ ଅନୁସାରେ ୩ଟି ତାଳାଘାତ ହୁଏ।
ମର୍ଦ୍ଦଳ ବାଦ୍ୟାକ୍ଷର (୧ମ ପ୍ରକାର)-

| + | | | | ୨ | | | |
|---|---|---|---|---|---|---|---|
| ଧା | ଧିଂ | ଧିଂ | ଧା | ତ୍ରିକିଟି | ତାକ | ଧିଂ | |
| ୧ | ୨ | ୩ | ୪ | ୫ | ୬ | ୭ | ୮ |

| ୦ | | | | | | | |
|---|---|---|---|---|---|---|---|
| ଧା | ତିଂ | ତିଂ | ତା | ତା | ତ୍ରକିଟି | ତାକ୍ | ଧିଂ |
| ୯ | ୧୦ | ୧୧ | ୧୨ | ୧୩ | ୧୪ | ୧୫ | ୧୬ |

ଦ୍ୱିତୀୟ ପ୍ରକାର-

| ଧାଂ | ତିଂ | ତିଂ | ତା | ତା | ତ୍ରିକିଟି | ତାକ୍ | ଧିଂ |
|---|---|---|---|---|---|---|---|
| କ | ତେ | ଟେ | ତେ | ଟିରି | କଟ୍ | ତାଦି | ଘିନା |

ହ୍ରସ୍ୱ ୧୪ ମାତ୍ରାବିଶିଷ୍ଟ ଆଦିତାଳ, ଯାହା ସଂଗୀତ ରତ୍ନାକର ୭ଗୋଟି ଦୀର୍ଘ ମାତ୍ରା ଅଟେ। ଏଥିରେ ୩ ଗୋଟି ତାଳାଘାତ ହୁଏ। ଏହା ସଂଗୀତ ରତ୍ନାକର ରାଜମାର୍ତଣ୍ଡ ତାଳ ସହିତ ସମାନ ଅଟେ। ଏହାକୁ ଓଡ଼ିଶାରେ ସରିମାନ କହନ୍ତି।

ଯଥା-ଗୁରୁର୍ଲଘୁ ଦ୍ରୁତସ୍ତଳେ ରାଜମାର୍ତଣ୍ଡ ସଂଜ୍ଞାକ।

ସଂ. ର.

ମର୍ଦ୍ଦଳ ବାଦ୍ୟାକ୍ଷର-

| + | | | | ୨ | | |
|---|---|---|---|---|---|---|
| ଧା | ଧା | ତରକିଟ | | ଧା | ଧା | ଧାଗେ ତରକିଟ |
| ୧ | ୨ | ୩ | ୪ | ୫ | ୬ | ୭ |
| ୦ | | | | ୩ | | |
| ତା | ତା | ରକିଟ | | ଧା | ଧା | ଧାଗେ ତରକିଟ |
| ୮ | ୯ | ୧୦ | | ୧୧ | ୧୨ | ୧୩ ୧୪ |

୮ ମାତ୍ରାବିଶିଷ୍ଟ ଆଦିତାଳ। ଏହାକୁ ଓଡ଼ିଶାରେ ପଡିତାଳ କହନ୍ତି। ସଂଗୀତ ରତ୍ନାକରରେ ତାଳାଧ୍ୟାୟରେ ଏହାର ନାମ ପ୍ରତିତାଳ ଲେଖାଅଛି। ଏଥିରେ ଲଘ ୧କୁ ୪ ମାତ୍ରା ଓ ଦ୍ରୁତ ୨କୁ ୪ ମାତ୍ରା-ଏରୂପ ୮ ମାତାର ତାଳ। ଏଥିରେ ଲଘୁ ୧କୁ

୪ମାତ୍ରା ଓ ଦ୍ରୁତ ୨କୁ ୪ମାତ୍ରା-ଏରୂପ ୮ମାତ୍ରାର ତାଳ। ଏଥିରେ ତିନୋଟି ତାଳାଘାତ ଓ ଗୋଟିଏ ଅନାଘାତ ହୁଏ ଏବଂ ଏହା ଅଷ୍ଟୋଉର ତାଳ ଅନୁସାରେ ଅନୁମୋଦିଦ ଓ ଓଡ଼ିଶା ଗୀତ ପ୍ରକାଶରେ ଏହିପରି ଅଟେ

ଯଥା-ଲୌ ଦ୍ରୁତୌ ପ୍ରତିକାଳଃ ସ୍ୟାତ୍। ସଂ.ର.

ଘାୟୀ ବାଦ୍ୟାକ୍ଷର-

| | + | | ୨ | | ୦ | | ୩ | |
|---|---|---|---|---|---|---|---|---|
| ମର୍ଦ୍ଦଳ- | ଧା | ।ଥି | ନାକ | ଥିଂ | ତା | ।ଧି | ନାକ | ଧିଂ |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| ଖଣ୍ଡମର୍ଦ୍ଦଳ ବା- | + | | ୨ | ୦ | | ୩ | | |
| ତୁବିତବୋଲା- | ଧା ଧି | ନାକ୍ ଧିନ୍ | ତା | ।ଥି | ନକ୍ | ଧିନ | | |

ଦ୍ୱିତୀୟପ୍ରକାର-

| + | | ୨ | | ୦ | | ୩ | |
|---|---|---|---|---|---|---|---|
| ଧାଧିଂ | ତାକ୍ଧିଂ | ତାଧିଂ | ତାକଧିଂ | ଧାତିଂ | ତାକତିଂ | ତାଧିଂ | ତାକଧିଂ |
| ୧ | ୨ | ୩ | ୪ | ୫ | ୬ | ୭ | ୮ |

## ଯତିତାଳ

ଏହାର ଅନ୍ୟ ନାମ ଯତ୍। ଉତ୍କଳର ପ୍ରାଚୀନ ଶାସ୍ତ୍ର କୃଷ୍ଣଦାସଙ୍କ ଗୀତପ୍ରକାଶ ଅନୁସ୍ୱାରେ ଏହା ୧୪ ମାତ୍ରାର ତାଳ। ଏଥିରେ ୩ ଗୋଟି ତାଳ ଥାଏ। ଗୋଟିଏ ଅନାଘାତ ହୁଏ। ଏହା ସଂଗୀତ ରତ୍ନାକରର ତାଳାଧ୍ୟାୟ ୫୩ ନମ୍ବର ତାଳବର୍ଣ୍ଣିତ ସମତାଳ ମାତ୍ରା ସହିତ ସମାନ ଅଟେ; ଅର୍ଥାତ୍ ଲଘୁ ଦୁଇକୁ ୮ମାତ୍ରା, ଦ୍ରୁତ ବିରାମ ଦୁଇକୁ ୬ ମାତ୍ରା-ଏରୂପ ୧୪ ମାତ୍ରା ଅଟେ।

ସ୍ଥାୟୀ ବାଦ୍ୟାକ୍ଷର ମର୍ଦ୍ଦଳ-

| + | | | २ | | | |
|---|---|---|---|---|---|---|
| ଧା | ଧି | । | ଧା | ଧା | ଧିଂ | । |
| ୧ | ୨ | ୩ | ୪ | ୫ | ୬ | ୭ |
| ୦ | | | ୩ | | | |
| ତା | ତିଂ | । | ଧା | ଧା | ଧିଂ | । |
| ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

ଖଣ୍ଡମର୍ଦ୍ଦଳ ବା ତୁବିତବଲା-

| + | | | ୨ | | | |
|---|---|---|---|---|---|---|
| ଧା | ଧି | ନ୍ | ଧା | ଗେ | ଦି | ନ୍ |
| ୧ | ୨ | ୩ | ୪ | ୫ | ୬ | ୭ |
| ୦ | | | ୩ | | | |
| ତା | ତି | ନ୍ | ଧା | ଗେ | ଧି | ନ୍ |
| ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

ତାଳ- ନିସାରୁ ବା ନିସାରି

ଓଡ଼ିଶାର କୃଷ୍ଣଦାସଙ୍କ ଗୀତପ୍ରକାଶ ଓ ସଂଗୀତ ମୁକ୍ତାବଳି ଅନୁସାରେ ନିସାରୁ ତାଳ ୧୪ ମାତ୍ରା ଓ ଖଣ୍ଡଯତି ଅର୍ଥାତ୍ ଭାଗ ୧୦ ମାତ୍ରା ଓ ୬ ମାତ୍ରା ବିଶିଷ୍ଟ ହୁଏ ଏବଂ ଅଷ୍ଟୋତ୍ତର ଶତତାଳ ଗ୍ରନ୍ଥରେ ଲଘୁ ୨୦ମାତ୍ରା, ଯାହା ଦୀର୍ଘ ୧୦ ମାତ୍ରା ଅଟେ। ତାଳାଘାତ, ଅନାଘାତ ୨ଗୋଟି ହୁଏ ଏବଂ ୬ ଗୋଟି ମାତ୍ରାବିଶିଷ୍ଟ ତାଳକୁ ତ୍ରିତାଳ ଚଣ୍ଡ ନିସାରୁକ ନାମ ଲେଖାଯାଅଛି ତାହା ଲେଖାଗଲା।

## ୧୪ ମାତ୍ରା ହିସାବରୁ

ଏହା ସଂଗୀତ ରତ୍ନାକରର ଚତୁସ୍ତାଳି ସହିତ ସମାନ, ଯଥା'ଚତୁସ୍ତାଳୋଗୁରୋଃ ପରେ ତ୍ରୟୋଦ୍ରୁତା'ଅର୍ଥାତ୍ ଏକଗୋଟି ଗୁରୁକୁ ଆଠମାତ୍ରା ଓ ତନିନିଗୋଟି ଦ୍ରୁତକୁ ୬ମାତ୍ରା। ଏରୂପ ୧୪ ମାତ୍ରା ଅଟେ, ଏଥିରେ ତାଳାଘାତ ୪ ଅନାଘାତ ୩ ହୁଏ।

ସ୍ଥାୟୀ ବାଦ୍ୟାର୍ଥରେ-

| | | | | | | | |
|---|---|---|---|---|---|---|---|
| ମର୍ଦ୍ଦଳ—+ | ୨ | | ୦ | ୩ | | | |
| ଧିଂ | ଟରକିଟ | ଧିଂ | ତା | ତିଂ | ତା | କି | ଟା |
| ୧ | ୨ | ୩ | ୪ | ୫ | ୬ | ୭ | ୮ |
| ୦ | | ୪ | | ୦ | | | |
| ଟରକିଟ | ଧିଂ | ତା | ଧିଂ | ଧିଂ | ତା | | |
| ୯ | ୧୦ | ୧୧ | ୧୨ | ୧୩ | ୧୪ | | |
| + | ୨ | | ୦ | ୩ | | | |
| ଖଣ୍ଡମର୍ଦ୍ଦଳ | ଟିରିକିଟ | ଧି | ନା | ନା | କ | ତା | |
| ୧ | ୨ | ୩ | ୪ | ୫ | ୬ | ୭ | ୮ |
| ୦ | ୪ | | | ୦ | | | |
| | | ଟିରିକିଟ | ଧି | ନା | ଧି | ଧି | ନା |
| | | ୯ | ୧୦ | ୧୧ | ୧୨ | ୧୩ | ୧୪ |

## ହ୍ରସ୍ୱ ୨୦ ମାତ୍ରାକୁ ଦୀର୍ଘ ୧୦ ମାତ୍ରା ହିସାବରୁ ତାଳ

ଏହା- ସଂ-ର- ଅନୁସାରେ ୧୦ ମାତ୍ରା

ଯଥା-ବିରାମାନ୍ତୌ ଲଘୁ ନିଃସରୁକୋମତଃ

ଅର୍ଥାତ୍ ବିରାମାନ୍ତୌ ଲଘୁ ୨ ଗୋଟିକୁ ୧୦ ମାତ୍ରା।

ଏଥିରେ ୩ ଗୋଟି ଆଘାତ ଓ ୨ଗୋଟି ଅନାଘାତ ହୁଏ। କିନ୍ତୁ କେହି କେହି ୨ ଗୋଟି ଆଘାତ ଦେଇଥାନ୍ତି; ମାତ୍ର ୩ ଗୋଟି ଆଘାତରେ ତାଳର ଗିତ ଠିକ୍ ରହିବାରେ ସୁବିଧା ହୁଏ।

ସ୍ଥାୟୀ ବାଦ୍ୟାକ୍ଷର-

| | + | | ୦ | | ୨ | | ୦ | | ୩ | | |
|---|---|---|---|---|---|---|---|---|---|---|---|
| ମର୍ଦ୍ଦଳ | ଧା | ଧା | ଧିନ୍ | ତାଖେ | ଧା | | ଧା | ଧିନ୍ | | ଡ଼ିଖେଖେଖେ | |
| | ୧ | ୨ | ୩ | ୪ | ୫ | | ୬ | ୭ | | ୮୯୧୦ | |

୬ମାତ୍ରା ବିଶିଷ୍ଟ ନିସାରୁତାଳ

ବା କ୍ରିଡା ଚଣ୍ଡ ନିମାରୁକ (ଝୁଲା)

ସଂଗୀତ ରତ୍ନାକର ଅନୁସାରେ-

''କ୍ରୀଡା ଦ୍ରୁତୈ ବିରାଭାନ୍ତୌ ତଣ୍ଡନିଃସାରୁକଣ୍ଠ ସଃ''।

ଅର୍ଥାତ୍ ୬ ମାତ୍ରା ଅଟେ। ଏହା ଓଡ଼ିଶାର ଝୁଲା ତାଳ ସହିତ ସମାନ। ଏଥିରେ ୨ ଗୋଟି ତାଳାଘାତ ହୁଏ। ପ୍ରଥମ ତାଳକୁ ସମ କହନ୍ତି।

| | + | | | ୨ | |
|---|---|---|---|---|---|
| ସ୍ଥାୟୀ ବାଦ୍ୟା'ର ମର୍ଦ୍ଦଳ—ଧାଧିନ୍ତା। | ତାତା | ତାଥିନ୍ | ଧା। | ଧାଧାଥା | |
| | ୧ ୨ ୩ | | ୪ | ୫ | ୬ |

## ଆଡ୍ଡତାଳ

ଏହା ଓଡ଼ିଶା ଗୀତପ୍ରକାଶ ଅନୁସାରେ ହ୍ରସ୍ୱ ୨୦ ମାତ୍ରାକୁ ଦୀର୍ଘ ୧୦ ମାତ୍ରା ଅଟେ। ଭଙ୍ଗି ବା ଯତିପାତ ଭାଗ ଅନୁସାରେ ୫ ମାତ୍ରା ହୁଏ ଏବଂ ସଂଗୀତ ରତ୍ନାକରର ତାଳାଧ୍ୟାୟରେ ୧୦

ମାତ୍ରାକୁ ୨ ଗୋଟି ଲଘୁ ତାଳ ଓ ଗୋଟିଏ ଦ୍ରୁତ ତାଳ-ଏରୂପ ୩ ଗୋଟି ଦୀର୍ଘ ତାଳ ମାତ୍ରା ଅନୁସାରେ ବାଦ୍ୟାକ୍ଷର ଲେଖାଗଲା। ତାହାଦ୍ୱାରା ସମସ୍ତ ପ୍ରକାର ମାତ୍ରା ପୂରଣ ହେଉଅଛି।

ସଂ. ର, ଶ୍ଳୋକ ଯଥା-ଅଡ୍‌ଡତାଳାଦୋଲଘୁଦ୍ୱୟ।
ଇମମେବଚେରେତାଳଂ କେଚିତ ତ୍ରିପୁଟସଂଜ୍ଞୟା।

ସ୍ଥାୟୀ ବାଦ୍ୟାକ୍ଷର ମର୍ଦ୍ଦଳ-

| | + | | ୨ | |
|---|---|---|---|---|
| ଧି | ତରକିଟ | ଧି | । | ଧା |
| ୧ | ୨ | ୩ | ୪ | ୫ |
| ତିଂ | ତରକିଟ | ଧି | । | ଧା |
| ୬ | ୭ | ୮ | ୯ | ୧୦ |

### ତ୍ରିପୁଟା ବା ତ୍ରିପଟା ତାଳ

ଏହା ଓଡ଼ିଶାର ଗୀତପ୍ରକାଶ ଅନୁସାରେ ୧୪ ମାତ୍ରା ଅଟେ। ସଂଗୀତ ରତ୍ନାକର ୯୫ ତାଳ ସଂଖ୍ୟାରେ ଏହା ଅନ୍ତରକ୍ରୀଡାଳ ସହିତ ସମାନ ଅଟେ। ଅନ୍ତକ୍ରିଡ଼ର ତାଳ ଦୀର୍ଘ କ୍ରମାତ୍ରାକୁ ହ୍ରସ୍ୱ ୧୪ ମାତ୍ରା ଅଟେ। ଏଥିରେ ୩ ଗୋଟି ତାଳାଘାତ ହୁଏ।
ଯଥା-ଦ୍ରୁତ ତ୍ରୟଂ ବିରାମାନ୍ତମ୍। ସଂ. ର.

ସ୍ଥାୟୀ ବାଦ୍ୟାକ୍ଷର ମର୍ଦ୍ଦଳ-

| + | ୨ | ୩ | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ଧେକିଟ | ଧେତା | କି | ଟା | ତା | ଧି | ନା | କ | ତା | ଧି | ନା | କ | | |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

୭ ମାତ୍ରାର-

| | + | | ୨ | | ୩ |
|---|---|---|---|---|---|
| ଧା | ଧିଂ ତା | ତାଗି | ଖିଟା | ଗଦି | ଘେନେ |

୧ ୨ ୩ ୪ ୫ ୬ ୭

୨ୟ ପ୍ରକାର-

+ ୨ ୩

ଧା । ଧି ନ ତା ଖେଦ୍ ନ ତା ଖେ ଧି ନ୍ ତା ଖେ

୧ ୨ ୩ ୪ ୫ ୬ ୭ ୮ ୯ ୧୦ ୧୧ ୧୨ ୧୩ ୧୪

## ରୂପକ ତାଳ

ଓଡ଼ିଶାର ଗୀତପ୍ରକାଶ ଅନୁସାରେ ଏହା ୧୨ ଗୋଟି ମାତ୍ରାର ତାଳ ଏବଂ ମଧ ଏହା ଯାତିରୂପରେ ହୋଇତାଏ। ଯତି ରୂପ ହେଲେ ୧୪ ମାତ୍ରା ଅନୁସାରେ ହୁଏ।

୧୨ ମାତ୍ରା ହ୍ରସ୍ୱକୁ ଦୀର୍ଘ ୬ ମାତ୍ରାର ରୂପକତାଳ-ଏହା ସଂଗୀତ ରତ୍ନାକରର ତାଳାଧାୟ ୧୭ ନମ୍ୱର ତାଳ ଯତି ଲଗ୍ନ ସଙ୍ଗେ ସମାନ ମିଳୁଅଛି; ଯଥା-ଯତି ଲଗ୍ନୌ ଦ୍ରୁଦୌ-ଲଘୁ, ଅର୍ଥାତ୍ ଗୋଟିଏ ଦ୍ରୁତ ତାଳକୁ ୨ ମାତ୍ରା ଓ ଗୋଟିଏ ଲଘୁତାଳକୁ ୪ ମାତ୍ରା- ଏରୂପ ୬ ମାତ୍ରା ହୁଏ।

ବାଦ୍ୟାକ୍ଷର-

୧ ୦ ୨

ମର୍ଦ୍ଦଳ-

ଧିଂ । ତା କ ତିଂ । ତା । ଧିଂ । ତା କ୍

୧ ୨ ୩ ୪ ୫ ୬ ୭ ୮ ୯ ୧୦ ୧୧ ୧୨

ମର୍ଦ୍ଦଳ- ଝୁଂ ଝାକ୍ ଝଂ ଝା ଝବଂ ଝାକ

ହ୍ରସ୍ୱ ୧୪ ମାତ୍ରା, ଦୀର୍ଘ ୭ ମାତ୍ରାର ରୂପକ ତାଳ-ଏହା ତ୍ରିପୁଟାର ପ୍ରକାର ଭେଦ। ଏଥିରେ ଦ୍ରୁତ ବିରାମ ଗୋଟିଏ ତାଳକୁ ୩ ମାତ୍ରା ଓ ଦ୍ରୁତ ୨ଟି ତାଳକୁ ୪ ମାତ୍ରା, ଏରୂପ ୭ମାତ୍ରା

୩ଟି ତାଳାଘାତ ହୁଏ। ମାତ୍ରପ୍ରଚଳିତମତେ ୨ଟି ତାଳାଘାତ ଲେଖାଗଲା।

ମର୍ଦ୍ଦଳ-କେବଳ ଦୀର୍ଘ ୭ ମାତ୍ରାର ଲେଖାଗଲା-

| ୨ | ୩ | | | ୦ | |
|---|---|---|---|---|---|
| ଧିଂ | ଧିଂ | ତିଧିଂତିଂ | | ଝେଣ୍ଣ | |
| ୧ | ୨ | ୬୩ | ୭ | ୪ | ୫ |

## ଝମ୍ପା ତାଳ

ଓଡ଼ିଶାର ଗୀତପ୍ରକାଶ ଅନୁସାରେ ଏହା ହ୍ରସ୍ୱ ୨୦ ମାତ୍ରାକୁ ଦୀର୍ଘ ୧୦ ମାତ୍ରା ଅଟେ। ସଂଗୀତ ରତ୍ନାକରର ୭୬ ନମ୍ବର ଝମ୍ପାତାଳ ବର୍ଣ୍ଣନା ଅନୁସାରେ ଏହା ୧୦ ମାତ୍ରାର ତାଳ; ଯଥା-ଝମ୍ପା-ତାଳୋ ବିରାମନ୍ତଦ୍ରୁତଦ୍ୱନ୍ଦଂ ଲଘୁସ୍ତଥା। ଅର୍ଥାତ୍ ଦ୍ରୁତ ବିରାବ ୧ ଗୋଟି ୬ମାତ୍ରା, ଲଘୁ ୧ ଗୋଟିକୁ୪ ମାତ୍ରା-ଏରୂପ ୧୦ ମାତ୍ରା ଏଥିରେ ୩ ଗୋଟି ତାଳାଘାତ ହୁଏ।

ସ୍ଥାୟୀ ବାଦ୍ୟାକ୍ଷର-

| + | | ୨ | | ୦ | | ୩ | | |
|---|---|---|---|---|---|---|---|---|
| ମର୍ଦ୍ଦଳ | ଧିଂ | ତରଗଦ୍ | ଧି | ଧି | ନା | ତିଂ | ତରଗଦ୍ | ଧିଧି ନା |
| | ୧ | ୨ | ୩ | ୪ | ୫ | ୬ | ୭ | ୯୮୧୦ |

## ଗଜଝମ୍ପା

୧୫ ମାତ୍ରାବିଶିଷ୍ଟ ଝମ୍ପାକୁ ଗଜଝମ୍ପା କୁହାଯାଏ। ଏହା ୧୫ ମାତ୍ରା ତାଳ। ସଂ. ର, ୭୬ ନମ୍ବର ତାଳ- ଗଜଝମ୍ପୌ ଗରୋରୂର୍ଦ୍ଧ୍ୱଂ ବିରମାନ୍ତଂ ଦ୍ରୁତଂ ତ୍ରୟଂ ଇତି ଗଜଝମ୍ପା ଏହା ସଂ. ପ୍ରଭାକର, ସଂ. ର. ଅନୁସାରେ ବାଦ୍ୟାକ୍ଷର ଲେଖାଗଲା। ଏଥିରେ ୪ଗୋଟି ଆଘାତ ଓଗୋଟିଏ ଅନାଘାତ ତଏ। ଏହାକୁ ସୱାରି ମଧ୍ୟ କହନ୍ତି।

+ ୦

ମର୍ଦ୍ଦଳବାଦ୍ୟାକ୍ଷର- ଧା । ଧଗେ କ ଦି ଘ ନ

୧ ୨ ୩୪ ୫ ୬ ୭ ୮

୨ ୩ ୪

ଧୃ ମ କି ଟ ଦି ଗ ନ

୯ ୧୦ ୧୧ ୧୨ ୧୩ ୧୪ ୧୫

ଓଡ଼ିଶାର ଗୀତପ୍ରକାଶ ଓ ସଂଗୀତ ମୁକ୍ତାବଳି ଅନୁସାରେ ଏହା ୨୦ ମାତ୍ରା ଟେ ଏବଂ ସଂଗୀତ ରତ୍ନାକର ଅନୁସାରେ ଏହା ୧୦ ମାତ୍ରା ଅଟେ ହ୍ରସ୍ୱ ୨୦ ମାତ୍ରା, ଦୀର୍ଘ ୧୦ ମାତ୍ରା ଅଟେ। ଏଂରେ ସେହି ୧୦ ମାତ୍ରାର ବାଦ୍ୟାକ୍ଷର ଲେଖାଗଲା। ମଣ୍ଠୋ ଲଘୁଯୁଗଂ ଗୁରୁ ଏକ ୮ ମାତ୍ରା, ବିରାମ ଚାରିଗୋଟିକୁ ୪ ମାତ୍ରା-ମୋଟରେ ୨୦ ମାତ୍ରା ହ୍ରସ୍ୱ ଅଟେ।

## ୧୦ ମାତ୍ରାର ମଠ ତାଳ

ସଂଗୀତ ରତ୍ନାକରର ତାଳାଧ୍ୟୟ ଯତା-ବିରାମାଦି ଦ୍ରୁତୌ ଦୌ ତ ମଣ୍ଠିକର ପରିକୀର୍ତ୍ତିତା। ଅର୍ଥାତଥ ବିରାମ ଓ ୨ ଗୋଟି ଦ୍ରୁତ ମିଶି ୫ ମାତ୍ରା ଦୀର୍ଘକୁ ହ୍ରସ୍ୱ ୧୦ ମାତ୍ରାର ତାଳ ଅଟେ। ଏଥିରେ ୩ ଗୋଟି ତାଳାଘାତ ଓ ଦୁଇଗୋଟି ଅନାଘାତ ହୁଏ।

ସ୍ଥାୟୀ ବାଦ୍ୟାକ୍ଷର-

+ ୦ ୨ ୩

ଖଣ୍ଡମର୍ଦ୍ଦଳ ଧେ ତ୍ରିକ ଧିଂ ତା ଧେ ତ୍ରିକ ଧିଂ ତିଂତା ତା

୧ ୨ ୩ ୪ ୫ ୬ ୭ ୯୮୧୦

+ ୦ ୨ ୩ ୦

ମର୍ଦ୍ଦଳ ଧା ଧିନ ତାଖେ ଧି ଧିନ ତାଖେ ଧେ ଧିନ୍ତତାଖେ

## ଏକତାଳ

ଓଡ଼ିଶା ଗୀତପ୍ରକାଶ ଅନୁସାରେ "ଦ୍ରୁତୈର୍ନୈକେନୈକତାଳୀ।" ଅର୍ଥାତ୍ ଦ୍ରୁତ ଏକକୁ ଦୀର୍ଘ ୨ ମାତ୍ର, ତାହା ହ୍ରସ୍ୱ ୪ମାତ୍ରା ଓ ତହିଁରୁ ୧୬ ମାତ୍ରା ହୋଇଥାଏ-ଏହା ସମମାତ୍ରିକ ତାଳ ଅଟେ। ଏଥିରେ ଗୋଟିଏ ତାଳାଘାତ ହୁଏ। ସଂଗୀତ ରତ୍ନାକରର ତାଳାଧ୍ୟାୟ ୬୬ ସଂଖ୍ୟା ତାଳ ବିବରଣ ଅନୁସାରେ ଯଥା- ଦ୍ରୁତେନ ତ୍ୱେକତାଳିକା। ଅର୍ଥାତ୍ ୧ଗୋଟି ଦ୍ରୁତରେ ୨ ମାତ୍ରାରେ ଏକତାଳି ହୁଏ। ଏହିପରି ଚାରିପଦ ବା ଖଣ୍ଡଯୁକ୍ତରେ ସମ୍ପୂର୍ଣ୍ଣ ଛନ୍ଦ ହୋଇ ୧୬ ମାତ୍ରାର ତାଳ ହୁଏ। ୧୬ ମାତ୍ରାର ତ୍ରିତାଳ ବାଦ୍ୟାକ୍ଷର ପୃଥକ୍ ଲେଖାଅଛି। ତଦନୁସାରେ ହେବ। ଏଠାରେ ୪ ମାତ୍ରାର ବାଦ୍ୟାକ୍ଷର ଲେଖାଗଲା।

ସ୍ଥାୟୀ ବାଦ୍ୟାକ୍ଷର—

| | + | | | |
|---|---|---|---|---|
| ମର୍ଦ୍ଦଳ— | ତାଧି | ତାକି | ତାକ | ଧିଂ |
| | ୧ | ୨ | ୩ | ୪ |
| ଖଣ୍ଡମର୍ଦ୍ଦଳ— | ତାଧି | ନାଧି | ନାକ୍ | ଧିଂ |
| | ୧ | ୨ | ୩ | ୪ |

## ପହପଟ ତାଳ

ଏହା ଏକତାଳର ପ୍ରକାରଭେଦ। ଏଥିରେ ଏକ ଗୋଟିଏ ତାଳାଘାତ ହୁଏ। କେହି କେହି ହ୍ରସ୍ୱ ୨ଗୋଟି ମଧ ତାଳାଘାତ ଦେଇଥାନ୍ତି। ଏଥିରେ ୧୬ଗୋଟି ଦ୍ରୁତ ବାଦ୍ୟାକ୍ଷର ହୁଏ। ଏହାକେବଳ ଦ୍ରୁତରେ ଗତିକରେ ଓ ବ୍ୟବହୃତ ହୁଏ। ଏହାର ସ୍ୱାତନ୍ତ୍ୟ ବ୍ୟବହାରରେ ପ୍ରାୟ ଦେଖାଯାଏ ନାହିଁ।

**ସ୍ଥାୟୀ ବାଦ୍ୟାକ୍ଷର**

| + | | | | | | | | ୦ | | | | | |
|---|---|---|---|---|---|---|---|---|---|---|---|---|---|
| ଘେ ।ଟ | ଧି | ନ | ଧି | ନା | ଡଟମଣ | ଟ | ଧି | ନ | ଧି | ନା | ଵ | | |
| ୧ ୨ ୩ | ୪ | ୫ | ୬ | ୭ | ୮ ୯ ୧୦ ୧୧ | ୧୨ | ୧୩ | ୧୪ | ୧୫ | ୧୬ | | | |

## ଆଠ ତାଳ

ଏହା ଚୌଦ ମାତ୍ରାବିଶିଷ୍ଟ ତାଳ। ଏଥିରେ ୩ ଗୋଟି ଆଘାତ ଓ ଗୋଟିଏ ଅନାଘାତ ଥାଏ। ଏହା ଯତି ତାଳତୁଲ୍ୟ ଅଟେ।

ସ୍ଥାୟୀ ବାଦ୍ୟାକ୍ଷର

| + | | ୨ | | | ୦ | | ୩ | | | | | | |
|---|---|---|---|---|---|---|---|---|---|---|---|---|---|

ମର୍ଦ୍ଦଳ—

| ଧା | ଧି | ନ୍ | ଧି | ନ୍ | ତା | ତା | କ୍ | ତା | ଥି | ନ୍ଧା | ଧା | ଧି | ନ୍ |
|---|---|---|---|---|---|---|---|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

## କୁଡୁକ ତାଳ

ଓଡ଼ିଶାର କୃଷ୍ଣଦାସଙ୍କ ଗୀତ ପ୍ରକାଶ ଅନୁସାରେ ଏହା ୧୬ ମାତ୍ରାର ତାଳ ଏହା ଆଦିତାଳ ସମ୍ବନ୍ଧୀୟ ଏଥିରେ ୩ ଗୋଟି ତାଳାଘାତ ହୁଏ ଏକ ଗୋଟି ଅନାଘାତ ହୁଏ ଏବଂ ସଙ୍ଗୀତ ରତ୍ନାକର ତାଳାଧ୍ୟାୟ ୩୨ ସଂଖ୍ୟା ତାଳ ବର୍ଣ୍ଣନା ଅନୁସାରେ 'କୁଡୁକୋଦୌ ଦ୍ରୁତୌ ଲୌ ଦୌ ଇତି କୁଡୁକ' ଅର୍ଥାତ୍ ଦୁଇକୁ ୨ ଗୋଟି ତାଳକୁ ୪ ମାତ୍ରା ଓ ଲଘୁତାଳ ୨ ଗୋଟିକୁ ୮ ମାତ୍ରା ଏରୂପ ୧୨ ମାତ୍ରା ହୁଏ; ଏବଂ ତାଳାଘାତ ୪ ଗୋଟି ଓ ଅନାଘାତ ଦୁଇ ଗୋଟି ହୁଏ ଏବଂ ଅଷ୍ଟୋତ୍ତର ଶତତାଳ

ଗ୍ରନ୍ଥରେ ମଧ ଏହା ୧୨ ମାତ୍ରାକୁ ୪ଟି ତାଳାଘାତ ଅଟେ ।

୧୬ ମାତ୍ରାର ବାଦ୍ୟାକ୍ଷର

| | | | | | | | | |
|---|---|---|---|---|---|---|---|---|
| | + | | | ୨ | | | | |
| ମର୍ଦ୍ଦଳ | ଧା | ତ୍ରିକଟ | ଧିଂ | ଧିଂ | ତିଧିଂ | ଧା | ଧା | ତିଂ |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| | ୦ | | | ୩ | | | | |
| | ତା | ତ୍ରିକଟ | ଧି | ଧିଂ | ଧା | ଧା | ଧିଂ | ଧିଂ |
| | ୯ | ୧୦ | ୧୧ | ୧୨ | ୧୩ | ୧୪ | ୧୫ | ୧୬ |

ଏହା ସଙ୍ଗୀତ ରତ୍ନାକରର ତାଳାଧାୟର ୫୭ ତାଳ ଦୀକ୍ଷଣ ସହିତ ସମାନ ଅଟେ ଯତା- ଲୌ ଦୌ ଗୁରୁଦୀକ୍ଷଣ, ଅର୍ଥାତ୍ ଲଘୁ ୨କୁ ୮ ମାତ୍ରା ଗୁରୁ ୧କୁ ୮ ମାତ୍ରା ଏରୂପ ୧୬ ମାତ୍ରାକୁ ୩ ଗୋଟି ତାଳାଘାତ ଲେଖାଗଲା ।

୧୨ ମାତ୍ରା ବିଶିଷ୍ଟ କୁଡୁକ ତାଳ

| | | | | | | | | |
|---|---|---|---|---|---|---|---|---|
| | + | ୦ | ୨ | ୦ | | | | |
| ମର୍ଦ୍ଦଳ | ଧିଂ | ଧିଂ | ଧିଂ | ତାକ୍ | ତାକ | ଧିଂ | ଧିଂ | ତାକ |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| | ୩ | ୪ | | | | | | |
| | ତାରି | ଖିଟା | ଗଦି | ଘିନା | | | | |
| | ୯ | ୧୦ | ୧୨ | ୧୨ | ୧୩ | ୧୪ | | |

## ଅଟତାଳ

ଅଷ୍ଟୋତ୍ତର, ଶତତାଳ ଅନ୍ତର୍ଗତ ଆଠତାଳ, ଏହା ୧୨ ମାତ୍ରାକୁ ଲଘୁ ୧କୁ ୪ ମାତ୍ରାର ଗୋଟିଏ ତାଳ ଓ ଦ୍ରୁତ

ଦୁଇ ଗୋଟି ତାଳକୁ ୪ ମାତ୍ରା ଓ ପୁଣି ଲଘୁ ୧ ଗୋଟି ତାଳକୁ ୪ ମାତ୍ରା ଏପରି ହୁଏ। ତାଳାଘାତ ୪ ଗୋଟି ଓ ଅନାଘାତ ୨ଗୋଟି ହୁଏ। ଏହା ସଙ୍ଗୀତ ରତ୍ନାକର ଦର୍ପଣ ତାଳ ସମାନ ଦେଖାଯାଏ, ଯଥା- ଦର୍ପଣେ ଦହୟଂ ଗଣ୍ଣ ଅର୍ଥାତ୍ ଦ୍ରୁତ ଦୁଇକୁ ୪ ମାତ୍ରା ଗୁରୁ ଏକକୁ ଆଠମାତ୍ରା ଏପରି ୧୨ ମାତ୍ରା ସ୍ଥାୟୀ ବାଦ୍ୟାକ୍ଷର

ସ୍ଥାୟୀ ବାଦ୍ୟାକ୍ଷର

| | | | | | | | | |
|---|---|---|---|---|---|---|---|---|
| | + | ० | ୨ | | | ० | | |
| | ଧିଂ | ଧିଂ | ଧା | ଗି | ଦିଂତା | ତିର | କିଟ | ଧିଂ |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| | ୩ | | | ୪ | | | | |
| | ତେରେ | | କେଟେ | | ଧିଂ | | ତା | |
| | ୯ | | ୧୦ | | ୧୧ | | ୧୨ | |
| ମର୍ଦ୍ଦଳ- | ଧି | ଧିଂ | ଧାଗ | ତିରକିଟି | ଡିଂ | ତା | କି | ଟ |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| | ଧାଗି | ତିରିକିଟି | | ଧିଂ | ତା | | | |
| | ୯ | ୧୦ | ୧୧ | ୧୨ | | | | |

୧୪ ମାତ୍ରାର ଅଟତାଳ- ଏହା ସଙ୍ଗୀତ ରତ୍ନାକର ତାଳାଧାୟରେ ଚଣ୍ଡତାଳ ସହିତ ସମାନ ଅଟେ, ଯଥା ଦ୍ରୁତ ଲୟଂ ଲଘୁ ଦ୍ରୁଂ ଦ୍ରୁଂ ଚଣ୍ଡତାଳେ ବଭାଶିରେ। ଅର୍ଥାତ୍ ଦ୍ରୁତ ତିନିକୁ ୬ ମାତ୍ରା ଲଘୁ ଦୁଇକୁ ୮ ମାତ୍ରା ଏରୂପ ୧୪ ମାତ୍ରାକୁ ସରଳ ଅନୁସାରେ ତାଳାଘାତ ୩ ଅନାଘାତ ୩ ହୁଏ।

ସ୍ଥାୟୀ ବାଦ୍ୟାକ୍ଷର-

| | | | | | | | |
|---|---|---|---|---|---|---|---|
| | + | | ୦ | ୨ | | | |
| ମର୍ଦ୍ଦଳ- | ଧା | ତେ | ଟେ | ଧେ- | ଟେ | ଧେ | ନେ |
| | ୧ | ୨ | ୩ | ୪ | ୫ | ୬ | ୭ |
| | ୦ | | ୩ | ୦ | | | |
| | ଧା | ତେ | ଟେ | ତେ | ଟେ | ତେ | ନେ |
| | ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

## ଚୌତାଳ

ପ୍ରଚଳିତ ଅନୁସାରେ ଏହା ୧୨ ମାତ୍ରାର ତାଳ ଏଥିରେ ୪ଟି ତାଳାଘାତ ଓ ଦୁଇଟି ଅନାଘାତ ହୁଏ। ସଂଗୀତ ରତ୍ନାକର ବର୍ଣ୍ଣଯତି ତାଳ ସହିତ ସମାନ ଦେଖାଯାଏ; ଯଥା-ଲୌ ଦୌ ବର୍ଣ୍ଣଯତିର୍ଭବେତ୍। ଅର୍ଥାତ୍ ଲଘୁ ୨କୁ ୮ ମାତ୍ରା ଦ୍ରୁତ ଦୁଇକୁ ୪ ମାତ୍ରା ଏରୂପ ୧୨ ମାତ୍ରାକୁ ୪ ଆଘାତ ୨ ଅନାଘାତ ହୁଏ।

ସ୍ଥାୟୀ ବାଦ୍ୟାକ୍ଷର-

| | | | | | | | | |
|---|---|---|---|---|---|---|---|---|
| | + | | | ୨ | | ୦ | | |
| ମର୍ଦ୍ଦଳ- | ଧା | ଧା | ଦିଂ | ତା | କିଟ | ଧା | ଦିଂ | ତା |
| | ୧ | ୨ | ୩ | ୪ | ୫ | ୬ | ୭ | ୮ |
| | ୩ | | ୪ | | | | | |
| | ତିଟ | ତକ | ଗଦି | ଘନ | | | | |
| ୯ | ୧୦ | ୧୧ | ୧୨ | | | | | |

## ଧମାର ତାଳ

ପ୍ରଚଳିତ ଅନୁସାରେ ଏହା ଚୌଦ ଗୋଟି ମାତ୍ରାର ତାଳ ଏଥିରେ ୩ଟି ତାଳ ଆଘାତ କେହି କେହି ଗୋଟିଏ ବା ଦୁଇଟି ଅନାଘାତ କରିଥାନ୍ତି।

ସ୍ଥାୟୀ ବାଦ୍ୟାକ୍ଷର-

| | | | | | | | |
|---|---|---|---|---|---|---|---|
| + | | | ୨ | | | | |
| ମର୍ଦ୍ଦଳ-କ | ଧି | ଟ | ଧି | ଟ | ଧା | । | |
| | ୧ | ୨ | ୩ | ୪ | ୫ | ୬ | ୭ |
| | ୦ | | ୩ | | | | |
| | ଗ | ଦି | ନ | ଦି | ନ | ତା | । |
| ୧ | ୨ | ୩ | ୪ | ୫ | ୬ | ୭ | |
| | ୦ | | ୩ | | | | |
| | ଗ | ଦି | ନ | ଦି | ନ | ତା | । |
| | ୮ | ୯ | ୧୦ | ୧୧ | ୧୨ | ୧୩ | ୧୪ |

## ତେ-ତାଳ (ତ୍ରିତାଳ)

ପ୍ରଚଳିତ ଅନୁସାରେ ଏହା ୧୬ଗୋଟି ମାତ୍ରାର ତାଳ ଏଥିରେ ୩ ଗୋଟି ତାଳାଘାତ ଓ ଏକ ଗୋଟି ଅନାଘାତ ଥାଏ।

ସ୍ଥାୟୀ ବାଦ୍ୟାକ୍ଷର-

ଖଣ୍ଡ ମର୍ଦ୍ଦଳ ବା ତବଲା-

| | | | | | | | |
|---|---|---|---|---|---|---|---|
| + | | | ୨ | | | | |
| ତା | ଧିଂ | ଧିଂ | ଧା | ତା | ଧିଂ | ଧିଂ | ଧା |

| ୧ | ୨ | ୩ | ୪ | ୫ | ୬ | ୭ | ୮ |
|---|---|---|---|---|---|---|---|
| ୦ | | | ୩ | | | | |
| ଧା | ଢିଂ | ଢିଂ | ତା | ତା | ଧିଂ | ଧିଂ | ଧା |
| ୯ | ୧୦ | ୧୧ | ୧୨ | ୧୩ | ୧୪ | ୧୫ | ୧୬ |
| | + | | ୨ | ୩ | ୦ | | |

ଅନ୍ୟପ୍ରକାର-ଧା ଧିକ୍ ଧା, ଧା ଧିକ୍ ଧା, ଧା ତିକ୍ ତା, ତା ଧିକ୍ ଧା

| | + | | | ୨ | | | |
|---|---|---|---|---|---|---|---|
| ମର୍ଦ୍ଦଳ-ଧା | ଧି | ଟ | ଧା | ଖି | ଧି | ଟ | ଧା |
| | ୦ | | | ୩ | | | |
| | କ | ତି | ଟ | ତା | ତେଟେ କେଟେ ଗଦି | ଘେନେ | |

## କହରବା

ଏହା ଆଠ ମାତ୍ରାର ତାଳ ଏଥିରେ ୨ଗୋଟି ତାଳାଘାତ ହୁଏ ।

ସ୍ଥାୟୀ ବାଦ୍ୟାକ୍ଷର

ଖଣ୍ଡ ମର୍ଦ୍ଦଳ ବା ତବଲା-

| + | | | ୨ | | | | |
|---|---|---|---|---|---|---|---|
| ତା | ଧି | ନା | ଧି | ନା | କ | ଧି | ନ |
| ୧ | ୨ | ୩ | ୪ | ୫ | ୬ | ୭ | ୮ |

## ଖେମଟା ତାଳ

ପ୍ରଚଳିତ ଅନୁସାରେ ଏହା ୧୨ ଗୋଟି ହ୍ରସ୍ୱ ମାତ୍ରାର ତାଳ ଏଥିରେ ୩ ଗୋଟି ତାଳାଘାତ ଓ ଏକ ଗୋଟି ଅନାଘାତ

ହୁଏ । କେହି କେହି ୬ ଗୋଟି ମାତ୍ରାରେ ଗୋଟିଏ ଲେଖାଏଁ ତାଳାଘାତ ୨ ଗୋଟି ଦେଇଥାନ୍ତି ।

ସ୍ଥାୟୀ ବାଦ୍ୟାକ୍ଷର-

| | | | | | | |
|---|---|---|---|---|---|---|
| | + | | ୨ | | | |
| ଖଣ୍ଡମର୍ଦ୍ଦଳ | ଧା | କେ | ଟେ | ତା | କେ | ଟେ |
| | ୧ | ୨ | ୩ | ୪ | ୫ | ୬ |
| | ୦ | | ୨ | | | |
| | ୭ | ୮ | ୯ | ୧୦ | ୧୧ | ୧୨ |

# ଉତ୍କଳର ପ୍ରଚଳିତ ତାଳ ସହିତ ମେଳଥିବା ଶାସ୍ତ୍ରୀୟ ତାଳ ଓ ଦେଶ ଭେଦେ ପ୍ରଚଳିତ ତାଳମାନଙ୍କର ନାମ

| କ୍ର.ନ. | ଓଡ଼ିଆ ତାଳ ନାମ ତାଳର ନାମ | ମାତ୍ରା ସଂଖ୍ୟା | ହିନ୍ଦୁସ୍ଥାନି ତାଳର ନାମ | ବଙ୍ଗଦେଶ ତାଳର ନାମ | କର୍ଣ୍ଣାଟକି ତାଳର ନାମ | ଶାସ୍ତ୍ରୀୟ ନାମ | ମନ୍ତବ୍ୟ |
|---|---|---|---|---|---|---|---|
| (୧) | (୨) | (୩) | (୪) | (୫) | (୬) | (୭) | (୮) |
| ୧। | ଆଦି | ୧୬ | ତ୍ରିତାଳ ଓ ପଞ୍ଜାବି | ଧିମା ତେତାଲା ଓ ମଧ୍ୟମାନ | ଚତୁରସ୍ର ତ୍ରିପୁଟାର ପ୍ରକାର ଭେଦ (ଆଦି) ଏହା ୮ ମାତ୍ରା | ରାଜ ବିଦ୍ୟାଧର | ସଂ.ଭ. |
| ୨। | ଆଦି ସରିମାନ | ୧୪ | ଝୁମୁରା | ତେଓଟ | ତ୍ରିପୁଟାର ପ୍ରକାର ଭେଦ | ରାଜ ମର୍ତ୍ତଣ୍ଡ | ,, |
| ୩। | ପଡ଼ିତାଳ | ୮ | ପଟତାଳ | ପଟତାଳ | ଆଦି(ଚତୁରସ୍ର ତ୍ରିପୁଟା) | ପ୍ରତିତାଳ | ,, |
| ୪। | ଯତି | ୧୪ | ଦୀପଚନ୍ଦି | ଯତ୍ | ଚତୁରସ୍ର ଝମ୍ପା (ମଧୁର) | ସସ: | ,, |
| ୫। | ନିସାରି | ୧୪ | ଅଡ଼ା ଚୌତାଳ | ଅଡ଼ା ଚୌତାଳ | ଧ୍ରୁବ | ଚତୁସ୍ତାଳ | ,, |

| (୧) | (୨) | (୩) | (୪) | (୫) | (୬) | (୭) | (୮) |
|---|---|---|---|---|---|---|---|
| ୬। | ନିସାରି | ୨୦ ବା୧୦ | ନିସାରୁ | ସୁରପାକ ତାଳର | ମଠାର ପ୍ରକାର ଭେଦ | ନିସାରୁ | ,, |
| ୭। | (ଝୁଲା) କ୍ରୀଡ଼ାତାଳ ଚଣ୍ଡ ନିସା ରୁକ | ୬ | ଦାଦରା | ଖେମଟା | ତିସ୍ର ଝମ୍ପା (ଢଦୟ) | କ୍ରିଡ଼ା ତାଳ ଚଣ୍ଡ ନିସାରୁ | ,, |
| ୮। | ଅଡ଼୍ଡ୍ | ୧୦ | ଝମ୍ପର ପ୍ରକାର | ଝମ୍ପର ପ୍ରକାର | ତିସ୍ର ଜାତି ଅଟ ଗୁପ୍ତ | ଅଦ୍ଧତ | ,, |
| ୯। | ତ୍ରିପୁଟା | ୧୪ | ତେଓରା (ତ୍ରିପୁଟା) | ତେଓରା | ତିସ୍ର ଜାତି ତ୍ରିପୁଟ (ଶଙ୍ଖ) | ଅନ୍ତର କ୍ରିଡ଼ା ପ୍ରକାର ଭେଦ | ,, |
| ୧୦। | ରୂପକ | ୬ | ଦାଦରାର ପ୍ରକାର ଭେଦ | ଖେମଟାର ପ୍ରକାର ଭେଦ | ଚତୁରସ୍ର ରୂପକ ଜାତି | ଯତିଲଗ୍ନ | ,, |
| ୧୧। | ରୂପକ | ୧୪ | ରୂପକ | ରୂପକ | ଖଣ୍ଡଜାତି ରୂପକ (ରାଜ) | ଅନ୍ତର କ୍ରୀଡ଼ା | ,, |
| ୧୨। | ଝମ୍ପା | ୧୦ | ଝମ୍ପ | ଝମ୍ପ | ଝମ୍ପା | ସଂର. | ,, |
| ୧୩। | ଗଜଝମ୍ପା | ୧୫ | ସବାରି | ପଞ୍ଚମ ସବାରି | (ରତ) ୫ମାତ୍ରା ଖଣ୍ଡ ଜାତି ଏକତାଳର ପ୍ରକାର ଭେଦ | ଗଜଝମ୍ପା | ,, |
| ୧୪। | ମଣ୍ଠ | ୧୦ | ଶୁକ | ସୁରଫାକ | ମଠା | ମଣ୍ଠିକା | |
| ୧୫। | ଏକତାଳ | ୪ବା୨ | ଚହରବା | ଢେପକା ଓ କହରବା | ଚତୁରସ୍ର ଏକତାଳ (ମାନ) | ଏକତାଳିକା | |

| (୧) | (୨) | (୩) | (୪) | (୫) | (୬) | (୭) | (୮) |
|---|---|---|---|---|---|---|---|
| ୧୬। | ,, | ୧୬ | ତ୍ରିତାଳ | ତ୍ରିତାଳ | ଚତୁରସ୍ର ଆଦି ପ୍ରକାର ଭେଦ | ରାଜ ବିଦ୍ୟାଧର | ,, |
| ୧୭। | ପହପଟ | ୧୬ | କହରବା | ଛେପବା | ଏକତାଳ ପ୍ରକାର ଭେଦ | ଏକ ତାଳିକା | ,, |
| ୧୮। | ଆଠତାଳ | ୧୪ | ଦୀପ ଚଣ୍ଡି ପ୍ରକାର | ଯତ୍ ପ୍ରକାର | ଚତୁରସ୍ର ଝମ୍ପ ପ୍ରକାର | ସମ | ,, |
| ୧୯। | କୁଡୁକ | ୧୬ | ତିଲିବାଡ଼ା | ଆଡ଼ା | ଆଦିତାଳର ପ୍ରକାର ଭେଦ | ଦକ୍ଷିଣ | ,, |
| ୨୦। | ,, | ୧୨ | ଚୌତାଳ ପ୍ରକାର | ଚୌତାଳ ପ୍ରକାର | ଚତୁରସ୍ର ଅଟର ପ୍ରକାର ଭେଦ | କୁଡୁକ | ,, |
| ୨୧ | ଅଟତାଳ | ୧୨ | ଏକତାଳ | ଏକତାଳ | ଚତୁରସ୍ର ଅଟ (ଲେଖ) | ଅଟ | ଅଷ୍ଟୋତ୍ତର ଶତ ତାଳ |
| ୨୨। | ,, | ୧୪ | ଧମାର | ଧମାର | ଖଣ୍ଡ ଜାତି ଅଟ (ବିଦଳ) | ଚଣ୍ଡ | ସଂ.ର. |
| ୨୩। | ଚୌତାଳ | ୧୨ | ଚୌତାଳ | ଚୌତାଳ | ଚତୁରସ୍ର ଅଟର ପ୍ରକାର ଭେଦ | ବର୍ଣ୍ଣ ଜାତି | ,, |
| ୨୪। | ଧମାର | ୧୪ | ଧମାର | ଧମାର | ଖଣ୍ଡ ଜାତି ଅଟ(ବିଦଳ) | ଚଣ୍ଡ | ,, |
| ୨୫। | ତେତାଳ | ୧୬ | ତ୍ରିତାଳ | ତେତାଲା | ଆଦି ତାଳ ପ୍ରକାର ଭେଦ | ଚାରି ବିଦ୍ୟାଧର | ,, |